# ଭାଗବତ କଥା

( ଚତ୍ୱାରିଂଶ ଖଣ୍ଡ )


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ପଣ୍ଡିତ ଉପେନ୍ଦ୍ର ନାଥ ହୋତା



ପ୍ରକାଶକ



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

ଚତ୍ୱାରିଂଶ ଖଣ୍ଡ

ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ ୭୫୩୦୦୨

ପ୍ରକାଶନ ଉପଦେଷ୍ଟା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୧୯୯୧

ପ୍ରଚ୍ଛଦ :

ଅସିତ୍ ମୁଖାର୍ଜୀ

ମୁଦ୍ରଣ :

କଲ୍ୟାଣୀ ପ୍ରିଣ୍ଟର୍ସ

ପିଠାପୁର, କଟକ-୧

ମୂଲ୍ୟ :

ସାଦା—୨୧-୦୦

ବନ୍ଧାଇ—୨୪-୦୦

# BHAGABAT KATHA

( Fortieth Part )

**Sri Prabhudatta Brahmachari**

Publisher :

**Smt. Annapurna Mishra**

Cuttack Students' Store,
Balubazar, Cuttack-753002

Publication Adviser

**Dr. K. P. Mishra**

First Edition : 1991

Price :

**Popular—Rs. 21-00**

**Deluxe— Rs. 24-00**

# ସୂଚୀ

# ବୃନ୍ଦାବନ-ବିହାରୀଙ୍କ ବେଣୁ

## ( ଭୂମିକା )

ଅକ୍ଷଣ୍ୱତାଂ ଫଳମିଦଂ ନ ପରଂ ବିଦାମଃ
ସଖ୍ୟଃ ପଶୂନନୁବିବେଶୟତୋର୍ବୟସ୍ୟୈଃ ।
ବକ୍ତ୍ରଂ ବ୍ରଜେଶସୁତୟୋରନୁବେଣୁ ଜୁଷ୍ଟମ୍
ଯୈର୍ବା ନିପୀତମନୁରକ୍ତକଟାକ୍ଷମୋକ୍ଷମ୍ ॥

(ଶ୍ରୀ ଭା: ୧୦ ସ୍କ, ୨୧ ଅ, ୭ ଶ୍ଳୋକ)

### ଛପ୍‌ପୟ

କାହ୍ନୁ ! ବଦନେ ଯବ କାନ ଗାନ ନିଜ ବେନୁ ସୁନାଓ ।
ଜଗକେ କରକସ ଶବ୍ଦ କୃଷ୍ଣ ! ନୟନନ ନ ଭରାଓ ॥
ସବ୍ ଥଳ ପେଖୁଁ ତୁମହୁଁ ପଗନନ୍ତୈଂ ତବ ଥଳ ଜାଉଁ ।
ସବ କନ୍ଥୁ ତୁମ ହିତ କରୁଁ ଜୀଭନ୍ତେଂ ତବ ଯଶ ଗାଉଁ ॥
ବିହବେ ମୋଇ ବନାଇ ଦେ, ବ୍ରଜକେଂ ନାତେ ଜୋଇକେଂ ।
ଅପର ଶବଦ କବହୂଁ ନ ସୁନୂଁ, ମୁରଲୀ ଧୂନିକୂଁ ଛୋଡ଼କେଂ ॥

ସଂସାରର ଅବସ୍ଥିତି କେବଳ ଦ୍ୱନ୍ଦ୍ୱ ଉପରେ ହିଁ ଅବଲମ୍ବିତ । ଯେ ପର୍ଯ୍ୟନ୍ତ ସଂସାର ଅଛି, ସେ ପର୍ଯ୍ୟନ୍ତ ସର୍ବାସ୍ୱଭାବରେ ଶୁଦ୍ଧ ସୁଖ କେବେହେଲେ ମିଳି ପାରିବ ନାହିଁ । ଅଧିକାଂଶ ଦାର୍ଶନିକ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ଏ ସଂସାର ଦୁଃଖ ପ୍ରଧାନ । ସୁଖ-ଦୁଃଖ ଦ୍ୱୟ ଏ ସଂସାରରେ ଏପରି ଭାବରେ ମିଶି ରହିଛି ଯେ, ଅଧିକାଂଶ ଲୋକ ଦୁଃଖକୁ ସୁଖ ବୋଲି ଭାବି ତାହାର ପ୍ରାପ୍ତି ପାଇଁ ସତତ ପ୍ରଯତ୍ନ କରୁଥିଛନ୍ତି ଓ ଶେଷରେ ଦୁଃଖ ଭୋଗ ହିଁ ସାର ହେଉଛି । ବସନ୍ତ ଋତୁ ଆରମ୍ଭ ହେଲେ ଶିମିଳି ଗଛରେ ବଡ଼ ବଡ଼ ଲାଲ ରଙ୍ଗର ଫୁଲ ହସିଉଠେ । ପୁନଶ୍ଚ ଆମ୍ର ଶାଖାରେ ମଧ୍ୟ ବଉଳ ଭରିଯାଏ । ଏଥିରେ ଅବଶ୍ୟ ଏକପ୍ରକାର ସୁବାସ ରହେ ; କିନ୍ତୁ ଶିମିଳି ଫୁଲ ସଦୃଶ ଶୋଭା ଓ ଚକଚକ୍ୟ ଏଥିରେ ନ ଥାଏ । ଏଥିପାଇଁ ସବୁ ପ୍ରଥମେ ଶୁକପକ୍ଷୀ ଶିମିଳି ଗଛରେ ବସି ଚିନ୍ତାକରେ—

"ଅହା ! ଏହାର ପୁଷ୍ପ ଯେତେବେଳେ ଏତେ ଚିତ୍ତାକର୍ଷକ ତେବେ ଏଥିରେ ଯେତେବେଳେ ଫଳ ଫଳିବ, କେତେ ଯେ ରସାଳ ମଧୁର ଓ ସୁନ୍ଦର ନ ହୋଇଥିବ, ତାହା କହି ହେଉ ନାହିଁ । ଏହି ଆଶାରେ ସେ ଶିମିଳି ଗଛର ପ୍ରଶଂସା କରୁଥାଏ । ଧୀରେ ଧୀରେ ସେହି ଫୁଲ ସ୍ଥାନରେ ଫଳ ଆସେ । ତାହା ଅତି ମୃଦୁଳ ସାମାନ୍ୟ ଲମ୍ବ ଓ ଚକ୍‌ଚକ ଦେଖାଯାଏ । ଏହା ଦେଖି ଶୁକପକ୍ଷୀଟି ଅଧିକ ସୁଖ ଲାଭର ଆଶା ରଖେ ଓ ଅଧିକ ଉତ୍ସାହିତ ହୁଏ । ଜ୍ୟେଷ୍ଠ ମାସରେ ସେହି ଶିମିଳି ଫଳ ପକ୍ୱ ହୋଇ ଯାଇ ଶୁକପକ୍ଷୀର ଆଶାକୁ ଘନୀଭୂତ କରେ । ତାହାର ସୁଖପ୍ରାପ୍ତି ଆଶାର ଘନୀଭୂତ କେନ୍ଦ୍ର ଏହି ଫଳରେ ସେ ଯେତେବେଳେ ଥଣ୍ଟମାରେ, ତାହା ଫାଟିଯାଇ ସେଥିରୁ ଶିମିଳି ତୁଳା ଉଡ଼ିଯାଏ । ସେ ହତାଶ ହୁଏ, ହାତମଳେ ସେ ଗଛକୁ ଦୋଷ ଦିଏ ଓ ସେଠାରୁ ଉଡ଼ିଯାଇ ଆମ୍ବଗଛ ଉପରେ ବସେ । ସେତେବେଳକୁ ଆମ୍ବ ମଧ୍ୟ ପାଚିଥାଏ । ହଳଦୀ ବର୍ଣ୍ଣର ପାଚିଲା ଆମ୍ବରେ ସେ ଯେତେବେଳେ ଥଣ୍ଟ ମାରେ ତାକୁ ତାହା ଖୁବ୍ ମିଠା ଲାଗେ । ସେଥିରୁ ସେ ମଧୁର ରସ ଆସ୍ୱାଦନ କରେ । ସେ ଏବେ ଚିନ୍ତା କରେ, "ଆମ୍ବ ହିଁ ହେଉଛି ପ୍ରକୃତ ସୁଖଦାତା, ମୁଁ ଆଉ ଶିମିଳି ଫଳ ସେବନ କରିବାକୁ ଯିବି ନାହିଁ ।" କିନ୍ତୁ ଯେତେବେଳେ ଆମ୍ବ ଶେଷ ହୋଇ ଯାଏ ଓ ପୁନଶ୍ଚ ବସନ୍ତ ଋତୁ ଆସେ, ତାକୁ ପ୍ରଥମେ ସେହି ନାଲି ଟୁକୁ ଟୁକୁ ଶିମିଳି ଫୁଲ ଆକର୍ଷିତ କରେ । ସେ ପୁଣି ସେହି ଶିମିଳି ଗଛରେ ଯାଇ ବସି ଫୁଲର ପ୍ରଶଂସା କରେ । ଏହା ହିଁ ମାୟାର ଆବର୍ତ୍ତ । ମନୁଷ୍ୟ ଏହା ଜାଣେ ଯେ, ସଂସାରର ସମସ୍ତ ସୁନ୍ଦର ବସ୍ତୁଦ୍ୱାରା ଆଜି ପର୍ଯ୍ୟନ୍ତ କେହି ସୁଖୀ ହୋଇ ପାରି ନାହାନ୍ତି । ବେଶ୍ୟାମାନଙ୍କ ପାଖକୁ କେତେ କେତେ ସୁନ୍ଦର ସୁନ୍ଦର ଯୁବକ ନ ଯାଉଛନ୍ତି, ସେମାନଙ୍କର ନିଜର ସର୍ବସ୍ୱ ବେଶ୍ୟାମାନଙ୍କୁ ସମର୍ପଣ ନ କରୁଛନ୍ତି, ସେମାନଙ୍କର ସର୍ବଥା ଅଧୀନ ନ ହେଉଛନ୍ତି, ତଥାପି କେଉଁ ବେଶ୍ୟା କେବେ କହିଥିବାର ଶୁଣାଅଛୁ କି ତାହାର ତୃପ୍ତି ହୋଇଛି ବୋଲି ? ରାଜାଙ୍କ ନିକଟରେ କେତେ କେତେ ସୁନ୍ଦରୀ ଯୁବତୀ ଓ ରାଣୀ ନ ରହନ୍ତି, କୌଣସି କାମୀ ରାଜା କେବେ କହିବାର ଶୁଣା ଅଛୁ କି ତାଙ୍କର କାମ ବାସନା ପୂର୍ଣ୍ଣ ହୋଇ ଯାଇଛି ବୋଲି ? ପ୍ରତ୍ୟେକଙ୍କୁ ଏହା ଭଲଭାବରେ ଜଣା ଅଛି ଯେ, କାମ ସେବନ ଦ୍ୱାରା କାମ ବାସନା ବଢ଼ି ବଢ଼ି ଚାଲେ । ସାଂସାରିକ ଇଚ୍ଛା ପୂର୍ଣ୍ଣ ହେବାରେ ଇଚ୍ଛା ଆହୁରି ଅଧିକ ପ୍ରବଳ ହୋଇ ଉଠେ । ଏହି କଥା ସମସ୍ତେ ଜାଣିଥିଲେ ସୁଦ୍ଧା କେହି ହେଲେ ସଂସାରର ଆକର୍ଷଣରୁ ବିରତ ହୁଅନ୍ତି ନାହିଁ । ସେଥିରେ ସମସ୍ତେ ଅଧିକରୁ ଅଧିକ ଅନୁରକ୍ତ ହୁଅନ୍ତି । ସର୍ବସୁଖଧାମ ରାମଚନ୍ଦ୍ରଙ୍କୁ ପାଇ କରି ମଧ୍ୟ ସୁଗ୍ରୀବ ତାଙ୍କର ସତ୍ସଙ୍ଗ କଲେ ନାହିଁ । ରାମଙ୍କ ନିକଟରେ ରହି ମଧ୍ୟ ସେ ତାଙ୍କୁ ଦର୍ଶନ କରିବାକୁ ଗଲେ ନାହିଁ । ଯେଉଁ ସୁଗ୍ରୀବ ରାମଙ୍କ କୃପାରୁ ପୂର୍ଣ୍ଣ ସଂସାର ସୁଖ ପ୍ରାପ୍ତ ହୋଇ ଥିଲେ, ସେ ତାଙ୍କର ବଶବର୍ତ୍ତୀ ନ ହୋଇ ମଦିରା ଓ ମଦିରେକ୍ଷଣୀଙ୍କର ବଶୀଭୂତ ହୋଇଗଲେ । ଶତ୍ରୁନାଶକ ସର୍ବସୁଖଦାତା ରାମଙ୍କୁ ପ୍ରବଳ ପରାକ୍ରମୀ ବୋଲି ଜାଣିସୁଦ୍ଧା

ତାଙ୍କୁ ଭୁଲି ଯାଇଥିଲି । ଏଥିରେ ସେ ବିଚାରୀର କିଛି ଦୋଷ ନାହିଁ । ଭଗବାନ ନିଜ ମାୟାକୁ ଏତେ ମୁକ୍ତି ଦେଇଛନ୍ତି ଯେ, ସେ ଭଗବାନଙ୍କ ଭଳି ଅନେକ ରୂପ ଧାରଣ କରିଥାଏ । ଜୀବ ତାହାର ଚକ୍ରଚକ୍ୟରେ ଆକର୍ଷିତ ହୋଇ ତା' ଫାନ୍ଦରେ ପଡ଼ିଯାଏ । ସମ୍ମୁଖରେ ବାଂସୁରୀ ବଜାଉଥିବା ବଂଶୀଧାରୀଙ୍କୁ ସେ ଦେଖି ପାରେ ନାହିଁ । ତାଙ୍କଠାରୁ ବିମୁଖ ହୁଏ । ଅନ୍ୟ ଆଡ଼େ କର୍ଣ୍ଣପାତ କରେ, ତେଣୁ ସମ୍ମୁଖରେ ବଂଶୀ ବଜାଉଥିବା ବଂଶୀଧାରୀଙ୍କ ବଂଶୀ ସ୍ୱନକୁ କର୍ଣ୍ଣପାତ ବି କରେ ନାହିଁ ।

ଯାହାର ଚିତ୍ତ ସ୍ଥିର ନୁହେଁ, ତାକୁ କୌଣସି ବସ୍ତୁ ସ୍ୱାଦ ଲାଗେ ନାହିଁ । ସେହିପରି ଯାହାର କର୍ଣ୍ଣ ବିଷୟବାର୍ତ୍ତା ଶୁଣିବାରେ ମଜ୍ଜି ଯାଇଛି, ତାକୁ ବୃନ୍ଦାବନ-ବିହାରୀଙ୍କର ବେଣୁ ସ୍ୱନ ଶୁଣାଯାଏ ନାହିଁ । କୋଳାହଳ ମଧ୍ୟରେ ମଧୁର ବେଣୁସ୍ୱନ ଅବା ସେ କିପରି ଶୁଣି ପାରନ୍ତା ? ନଗରମାନଙ୍କରେ, ଯେଉଁଠାରେ କି ହଜାର ହଜାର, ଲକ୍ଷ ଲକ୍ଷ ନରନାରୀ ନିରନ୍ତର ବିଷୟ ବାର୍ତ୍ତାରେ ସମୟ କଟାଉଛନ୍ତି, ସେଠାରେ ବୃନ୍ଦାବନ-ବିହାରୀ ନରୂବା ବିଷ୍ଣୁ ସ୍ୱୟଂ ତ ଆହ୍ୱାନ କରୁଛନ୍ତି ; କିନ୍ତୁ ତାହା ଶ୍ରବଣ ନ କରୁଥିବା ସାଧିକା ମଧ୍ୟ ଶୁଣି ପାରନ୍ତି । ବିଷ୍ଣୁଙ୍କ ଆହ୍ୱାନକୁ ଶୁଣିବା ପାଇଁ ସ୍ଥାନ, କାଳ, ପାତ୍ର, ବେଶଭୂଷା ଆଦି ସ୍ୱତନ୍ତ୍ର ହେବା ଆବଶ୍ୟକ । ବାଙ୍କବିହାରୀ ବୃନ୍ଦାବନରେ ହିଁ ବିହାର କରନ୍ତି । ବନ ତ ବନ, ବୃନ୍ଦାବନ । ଅନେ ବାକେ ବନ ନୁହେଁ । ଯେଉଁଠାରେ ବାସ କଲେ କି ନରକ ପ୍ରାପ୍ତିର ଆଦୌ ପ୍ରଶ୍ନ ଉଠେ ନାହିଁ ।

ବୃନ୍ଦାଙ୍କୁ କୃତାର୍ଥ କରିବା ପାଇଁ ଶ୍ରୀକୃଷ୍ଣ ସବୁକିଛି କରି ପାରନ୍ତି । ମୁନି, ଋଷି, ତ୍ୟାଗୀ, ତପସ୍ୱୀ ଆଦି କୃଷ୍ଣଙ୍କୁ ପାଇବା ପାଇଁ କେତେ ଜପ ତପ ଯଜ୍ଞାନୁଷ୍ଠାନ ଓ ପୁଣ୍ୟ ନ କରନ୍ତି ? କିନ୍ତୁ କୃଷ୍ଣ ସେଥିରେ ଏତେ ବିଚଳିତ ହୁଅନ୍ତି ନାହିଁ । ସେମାନଙ୍କ ପାଇଁ ସେ କର୍ମ ବିଧାନ ପ୍ରସ୍ତୁତ କରି ଦିଅନ୍ତି, ସେମାନଙ୍କୁ ସ୍ୱର୍ଗାଦି ବର ପ୍ରଦାନ କରି ମୁକ୍ତ କରନ୍ତି । ପୁଣ୍ୟର ଫଳ ହିଁ ସୁଖ । ଶ୍ରୀକୃଷ୍ଣ ପୁଣ୍ୟକର୍ମପ୍ରିୟ ସତ ; କିନ୍ତୁ ପୁଣ୍ୟକାରୀ ବ୍ୟକ୍ତିଗଣଙ୍କୁ ସେ କେବଳ ନିଜର କରି ନିଅନ୍ତି, ତାହା ନୁହେଁ, ଯାହାଙ୍କୁ ସେ ନିଜର କରି ନିଅନ୍ତି । ତାଙ୍କର ପୁଣ୍ୟ, ପାପାଦି ସମସ୍ତ କର୍ମକୁ ମଧ୍ୟ ନାଶ କରି ଦିଅନ୍ତି । ତାଙ୍କୁ ଅକର୍ମଣ୍ୟ କରି ଦିଅନ୍ତି । ବୃନ୍ଦାଙ୍କୁ ସେ ଆପଣାର କରି ନେବାକୁ ଚାହିଁଥିଲେ; କିନ୍ତୁ ବୃନ୍ଦାଙ୍କର ଧର୍ମରେ ଆବଦ୍ଧ ଥିଲି । ସେ ତାଙ୍କର ଅସୁରୀଭାବ ସମ୍ପନ୍ନ ପତିଙ୍କଠାରେ ହିଁ ଅନୁରକ୍ତ ଥିଲେ । ପ୍ରଭୁ ନିଜେ ଅସୁରରୂପ ପରିଗ୍ରହ କରିନେଲେ । ସେ ବୃନ୍ଦାଙ୍କୁ ଆପଣାର କରିନେବା ପାଇଁ ନିଜେ ଜଳନ୍ଧର ହୋଇଥିଲେ । ସେ ସବୁକିଛି ହୋଇ ପାରନ୍ତି, ତାଙ୍କପକ୍ଷେ କିଛି ଅସମ୍ଭବ ନୁହେଁ । ସେ ଚିନ୍ତା କଲେ, ବୃନ୍ଦା ମୋର ମଧୁରାତି ମଧୁର ରୂପକୁ ଭୁଲି ଯାଇଛନ୍ତି । ଆଗ୍ରହବଶତଃ ସେ ଅସୁରଠାରେ ମୋ' ଭାବ କରି ନେଇଛନ୍ତି । ଏଥିରେ କିଛି ଯାଏ ଆସେ ନାହିଁ । ମୁଁ

ତାଙ୍କୁ ଅପଣାର କରି ନେବ ଓ ତାହାଙ୍କର ମାୟା ମୋହ ଛୁଟାଇ ତାଙ୍କୁ ନିଜର ସହିତଙ୍କୁ କରିନେବ । ତାଙ୍କୁ ନିଜ ଅଙ୍ଗରେ ଯୁକ୍ତକରି ନେବ । ଭଗବାନ୍ ତ ଧର୍ମ, ଅଧର୍ମ ଏ ଉଭୟର ଊର୍ଦ୍ଧ୍ୱରେ, ସେ ଜୀବର ଧର୍ମ ଅଧର୍ମ ଉଭୟର ଆଗ୍ରହକୁ ପରିତ୍ୟାଗ କରାଇ ନିର୍ଦ୍ୱନ୍ଦ୍ୱ କରନ୍ତି । ତେବେ ଯାଇ ନିଜର କରି ନିଅନ୍ତି । ପ୍ରଥମେ ବ୍ରଜକୁମାରୀଙ୍କ ମନରେ ଦ୍ୱୈଧୀଭାବ ଥିଲା । ତାଙ୍କ ବସ୍ତ୍ର ଅପହରଣ କରି ସେ ସେମାନଙ୍କୁ ନଗ୍ନ କରାଇ, ସେମାନଙ୍କର ଅଜ୍ଞାନ ଯବନିକାକୁ ହଟାଇ ଦେଇଥିଲେ । ଏପରି ଅଜ୍ଞାନକୁ ଦୂର କରି ମାୟାମୁକ୍ତ କରାଇଥିବାରୁ ସେ ସେମାନଙ୍କୁ ରାସରେ ନିଜ କଣ୍ଠରେ ଲଗାଇଥିଲେ । ସେହିପରି ସେ ବୃନ୍ଦାଦେବୀଙ୍କର ଧର୍ମଭ୍ରଷ୍ଟ କରିଥିଲେ ।

"ଧର୍ମ ସ୍ୱରୂପ ଭଗବାନ ଧର୍ମାଚରଣ କରୁଥିବା ସତୀଙ୍କୁ କାହିଁକି ଧର୍ମଭ୍ରଷ୍ଟ କରାଇଥିଲେ ?" କାରଣ, ଯେଉଁ ସ୍ୱଧର୍ମୀମାନେ ଆମ୍ଭମାନଙ୍କୁ ପ୍ରଭୁଙ୍କଠାରୁ ବିମୁଖ କରାଇ ଆସୁରୀଭାବ ଆଡ଼କୁ ଟାଣି ନିଅନ୍ତି, ସେମାନଙ୍କୁ ତ ସ୍ୱତଃ ପରିତ୍ୟାଗ କରନ୍ତି । ନନ୍ଦଗୋପାଙ୍କ ଇନ୍ଦ୍ରଯାଗ କରିବା ଦ୍ୱାରା କୌଣସି ମନ୍ଦ କାର୍ଯ୍ୟ କରି ନ ଥିଲେ ; କିନ୍ତୁ ସେହି ଦୁରାଗ୍ରହ କାରଣରୁ ସେମାନେ ଇନ୍ଦ୍ରଙ୍କର ଯେ ଭଗବାନ ତାଙ୍କ ଭୁଲି ଇନ୍ଦ୍ରଙ୍କୁ ହିଁ ସବୁକିଛି ବୋଲି ଧରି ନେଇଥିଲେ । ପୁନଶ୍ଚ ଏଣେ ଇନ୍ଦ୍ରଙ୍କର ମଧ୍ୟ ଅଭିମାନ ହୋଇ ଯାଇଥିଲା । ଇନ୍ଦ୍ର ଯଜ୍ଞ ଭଳି ପୁଣ୍ୟକର୍ମକୁ ବନ୍ଦ କରାଇ ଭଗବାନ ଉଭୟଙ୍କର କଲ୍ୟାଣ କରିଥିଲେ । ବୃନ୍ଦା ଅସୁରଠାରେ ଅନୁରକ୍ତ ଥିବାରୁ ଯୁଗ ଯୁଗଧରି ସେହି ଅସୁରର ପତ୍ନୀରୂପେ ରହି-ଥାଆନ୍ତେ, ଭଗବାନଙ୍କର ନିକଟର ସ୍ପର୍ଶ ପାଇଥାଆନ୍ତେ କିପରି ? ଭଗବାନ ନିଜର ନିତ୍ୟ ସ୍ୱରୂପରେ ତାଙ୍କୁ କିପରି ମିଳିତ କରାଇଥାଆନ୍ତେ ? ସେଥିପାଇଁ ଭଗବାନ ତାଙ୍କ ସହିତ କପଟାଚରଣ କରିଥିଲେ । ତାଙ୍କୁ ମିଥ୍ୟା ସତୀତ୍ୱରୁ ବିଚଳିତ କରିଥିଲେ । ତାଙ୍କୁ ତ ଦୁରାଗ୍ରହ ହୋଇ ଯାଇଥିଲା, ଯଥାର୍ଥ ଭେଦଜ୍ଞାନ ହେବାରୁ ସେ ଭଗବାନଙ୍କୁ ଶାପ ଦେଲେ ଓ କହିଲେ—"ବିଷ୍ଣୁ ! ତୁମେ ମୋର ଧର୍ମ ନଷ୍ଟ କଲ, ତେଣୁ ତୁମେ ପାଷାଣ ହୋଇଯାଅ ।"

ଭଗବାନ କହିଲେ—"ବୃନ୍ଦେ ! ମୁଁ ସବୁକିଛି ହୋଇପାରେ ; କିନ୍ତୁ ମୁଁ ତୁମକୁ ମୋର ଅନ୍ତରଙ୍ଗ କରିନେବାକୁ ଚାହେଁ । ତୁମେ ତୁଳସୀ ହୋଇଯାଅ ଓ ସର୍ବଦା ମୋ' ଅଙ୍ଗରେ ଜଡ଼ିତ ହୁଅ । ଯେଉଁବ୍ୟକ୍ତି କେବେ ମୋତେ ତୁମଠାରୁ ପୃଥକ୍ କରିବେ, ତାଙ୍କର ଘୋର ପାପ ହେବ ।" ଏହା କହି ଭଗବାନ ଶାଳଗ୍ରାମ ଶିଳାରେ ପରିଣତ ହେଲେ ଓ ବୃନ୍ଦା ତୁଳସୀ ହୋଇଗଲେ । ଏଥିପାଇଁ ଶାଳଗ୍ରାମ ଭଗବାନଙ୍କୁ କେବେହେଲେ ତୁଳସୀ ବିହୀନ କରାଯାଏ ନାହିଁ । ସ୍ନାନ କରାଇଲାବେଳେ ମଧ୍ୟ ତୁଳସୀ ପକାଯାଏ ଓ ସ୍ନାନପରେ ନୂତନ ତୁଳସୀ ଚଢ଼ାଯାଏ । ନୂତନ ନ ମିଳିଲେ ପୁରୁଣା ତୁଳସୀକୁ ଧୋଇକରି ଚଢ଼ାଇ ଦେବାକୁ ହୁଏ । ବୃନ୍ଦାଙ୍କଠାରୁ ବିଷ୍ଣୁଙ୍କୁ କେତେବେଳେ ହେଲେ ପୃଥକ୍ କରି ନ ଯାଇ

ସର୍ବଦା ତାଙ୍କୁ ଧାରଣ କରାଇବା ଉଚିତ୍ । ତାଙ୍କର ବନରେ ବଂଶୀ ବାଦନ କରିବାକୁ ବିଷ୍ଣୁ ସର୍ବଦା ଆଗ୍ରହୀ । ବୃନ୍ଦାବନ ଶ୍ୟାମସୁନ୍ଦରଙ୍କର ଅତିପ୍ରିୟ ସ୍ଥଳୀ ହୋଇଥିବାରୁ ସେ ବୃନ୍ଦାବନ ଛାଡ଼ି ଅନ୍ୟତ୍ର ଯାଆନ୍ତି ନାହିଁ । ଅନ୍ୟ ସ୍ଥାନରେ ବଂଶୀ ବଜାନ୍ତି ନାହିଁ ।

ଏହି ବୃନ୍ଦାଙ୍କର ବନରେ ବନମାଳୀ ସଦା ବିହାର କରନ୍ତି । ବିହାର କାହାକୁ କହନ୍ତି ?

ଆତ୍ମତୋଷ ପାଇଁ ଯାହା କରାଯାଏ, ଆମୋଦପ୍ରମୋଦ ପାଇଁ ଓ ସୁଖ ସନ୍ତୋଷ ପାଇଁ ଯାହା କରାଯାଏ, ତାହା ହିଁ ବିହାର । ସାଂସାରିକ ବିଷୟୀ ବିହାର ସମ୍ବନ୍ଧରେ କ'ଣ ଜାଣେ ? ବିହାର କରିବା ରହସ୍ୟ ହିଁ ବିହାରୀଙ୍କୁ ଜଣା । ଅଖିଳ ବ୍ରହ୍ମାଣ୍ଡ ହେଉଛି ତାଙ୍କର ବିହାର ସ୍ଥଳୀ । ସେଥିରେ ବିହାରୀ ବିହାର କରୁଛନ୍ତି । ତାଙ୍କର ପ୍ରତି ଲୋମରେ ଅଗଣିତ ବ୍ରହ୍ମାଣ୍ଡ ବ୍ୟାପ୍ତ । ସେ ସ୍ୱୟଂ ବୃନ୍ଦାବନରେ ବିହାର କରନ୍ତି । ତାଙ୍କର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏ ତିନିରୂପ ତ ଜଗତର ସୃଷ୍ଟି, ସ୍ଥିତି ଓ ସଂହାରର ହେତୁ । ଶ୍ରୀକୃଷ୍ଣ ସ୍ୱୟଂ ସର୍ବଗତ, ସର୍ବଜ୍ଞ ସେହି ରୂପକୁ ତ ସେ ମାୟାର ଅନ୍ତରାଳ ନେଇ ରଖିଛନ୍ତି । ଯେ ଉପରି ରୂପରେ ବା ବାହ୍ୟ ରୂପରେ ଆକୃଷ୍ଟ ହୋଇ ସେଥିରେ ମଜ୍ଜି ରହେ, ସେ ଶ୍ରୀକୃଷ୍ଣଙ୍କୁ ପାଇ ପାରେ ନାହିଁ । ବାହ୍ୟବସ୍ତୁ ଦର୍ଶନ କରିବା ଦ୍ୱାରା ସେ କେବଳ ମାୟାର ପସରାକୁ ହିଁ ଦେଖେ । ଚକ୍ଷୁ ବନ୍ଦ କଲାମାତ୍ରେ ସଂସାର ଅଡୁ ଦୃଷ୍ଟି ହଟାଇ ଅଣିବାମାତ୍ରେ ତାଙ୍କୁ ଶ୍ରୀକୃଷ୍ଣଙ୍କର ମୁରଲୀ ଧ୍ୱନି ଶୁଣାଯାଏ ।

ରାଜା ଅଶ୍ୱଶିରା ବଡ଼ ବଡ଼ ଯାଗଯଜ୍ଞ କରି ଅପର୍ଯ୍ୟାପ୍ତ ଦାନ ଦେଇଥିଲେ । ସେ ଶୁଭକର୍ମ କରିଥିଲେ ସତ ; କିନ୍ତୁ ବିଷ୍ଣୁ ଦର୍ଶନ କରିପାରି ନ ଥିଲେ । ଦିନକର କଥା, ମନ୍ତ୍ରୀ, ପୁରୋହିତ ଓ ସଭାସଦ୍‌ଙ୍କ ସହିତ ନିଜ ରାଜସଭାରେ ବସିଥିବା ସମୟରେ ସେଠାରେ ମହର୍ଷି କପିଳ ଓ ଜୈଗୀଷବ୍ୟ ଏ ଦୁଇ ମୁନି ଆସି ପହଞ୍ଚିଲେ । ରାଜା ଉଭୟ ମୁନିଙ୍କର ବିଧିବତ୍ ସ୍ୱାଗତସତ୍କାର କଲେ ଓ ହାତଯୋଡ଼ି କହିଲେ—"ଭଗବନ୍ ! ଆପଣ ମୋତେ କୃପାକରି କହନ୍ତୁ, ମୁଁ କିପରି ବିଷ୍ଣୁ ଭଗବାନଙ୍କୁ ଆରାଧନା କଲେ, ତାଙ୍କ ଦର୍ଶନ ପାଇବି ?"

ଏହା ଶୁଣି ମୁନିଦ୍ୱୟ କହିଲେ—"ରାଜନ୍ ! ତୁମେ ବିଷ୍ଣୁଙ୍କୁ କେଉଁଠି ଖୋଜିବ ? ଆମେ ଦୁଇଜଣ ତ ବିଷ୍ଣୁ, ଆମକୁ ହିଁ ଦର୍ଶନ କର, ଆମର ପୂଜା କର ସବୁ କାର୍ଯ୍ୟ ସଫଳ ହେବ ।"

ରାଜା ବିନୀତ ଭାବରେ କହିଲେ—"ମହର୍ଷେ ! ଆପଣ ତପସ୍ୱୀ ଅଟନ୍ତି, ଯୋଗୀ ଅଟନ୍ତି, ଜ୍ଞାନୀ ଅଟନ୍ତି, ନିଷ୍ପାପ ଅଟନ୍ତି, ପୂଜନୀୟ ଅଟନ୍ତି ଓ ମାନନୀୟ ଅଟନ୍ତି ; କିନ୍ତୁ ଆପଣ କିପରି ବିଷ୍ଣୁ ହୋଇ ପାରିବେ ? ଭଗବାନ ବିଷ୍ଣୁ ତ ଚତୁର୍ଭୁଜ । ଶଙ୍ଖ, ଚକ୍ର, ଗଦା, ପଦ୍ମ

ସେ ଧାରଣ କରିଛନ୍ତି, ତାଙ୍କର ବାହନ ଗରୁଡ଼ । ମୁଁ ସେହି ବିଷ୍ଣୁଙ୍କୁ ଦର୍ଶନ କରିବାକୁ ଇଚ୍ଛା କରୁଛି ।"

ଏହା ଶୁଣି ମହର୍ଷି କପିଳ ସେହି ମୁହୂର୍ତ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରୀ ବିଷ୍ଣୁ ହୋଇଗଲେ । ଜୈଗୀଶବ୍ୟ ମୁନି ଗରୁଡ଼ ହୋଇଗଲେ ଓ ବିଷ୍ଣୁ ହୋଇଥିବା କପିଳ ତାଙ୍କ ଉପରେ ବସି କହିଲେ—"ରାଜନ୍ ! ଏବେ ଆପଣ ଗରୁଡ଼ାରୂଢ଼ ଚତୁର୍ଭୁଜ ବିଷ୍ଣୁଙ୍କୁ ଦର୍ଶନ କରନ୍ତୁ ।"

ଏହା ଶୁଣି ରାଜା କହିଲେ—"ଭଗବାନ୍ ! ଆପଣ ତ ଏହି ରୂପ ମାୟାରେ ସୃଷ୍ଟି କଲେ ; କିନ୍ତୁ ଆପଣ ତ ବିଷ୍ଣୁ ନୁହନ୍ତି । ମୁଁ ସେହି ବିଷ୍ଣୁଙ୍କୁ ଦର୍ଶନ କରିବାକୁ ଚାହେଁ, ଯାହାଙ୍କ ନାଭିଦେଶରୁ କମଳ ଉତ୍ପନ୍ନ ହୋଇଛି ଓ ସେହି କମଳରୁ ଚତୁର୍ମୁଖ ବ୍ରହ୍ମା ଉତ୍ପତ୍ତି ହୋଇଛନ୍ତି ।"

ଏହା ଶୁଣିବାକ୍ଷଣି ମହର୍ଷି କପିଳ ସଙ୍ଗେ ସଙ୍ଗେ ପଦ୍ମନାଭ ବିଷ୍ଣୁ ହୋଇଗଲେ । ବିଷ୍ଣୁ ହୋଇଯିବାକ୍ଷଣି କପିଳ ମହର୍ଷିଙ୍କର ନାଭି ଦେଶରୁ ଏକ କମଳ ସୃଷ୍ଟି ହେଲା ଓ ତା' ଉପରେ ଚତୁର୍ମୁଖ ରୂପ ଧାରଣ କରି ଜୈଗୀଶବ୍ୟ ମୁନି ବସିଗଲେ । ସେତେବେଳେ କପିଳ ମୁନି କହିଲେ—"ରାଜନ୍ ! ଆପଣ ପଦ୍ମନାଭ ବିଷ୍ଣୁଙ୍କୁ ଦର୍ଶନ କରନ୍ତୁ ।"

ଏହା ଶୁଣି ରାଜା ବିସ୍ମିତ ହୋଇ କହିଲେ—"ମହାରାଜ ! ଆପଣ ଉଭୟେ ଏହି ରୂପ ମଧ୍ୟ ମାୟାରେ ସୃଷ୍ଟି କରି ଅଛନ୍ତି । ବିଷ୍ଣୁ ଭଗବାନ୍ ତ ସର୍ବ ବ୍ୟାପକ ଅଟନ୍ତି । ସେ ସମସ୍ତଙ୍କଠାରେ ବିରାଜମାନ କରିଛନ୍ତି । ସମସ୍ତଙ୍କ ଅନ୍ତଃକରଣରେ ବିହାର କରୁଛନ୍ତି ।"

ରାଜା ଏତିକି କହିବା ମାତ୍ରେ ସେଠାରେ ଥିବା ରାଜବାଟିକାରେ ତାଙ୍କୁ ନାନା ଜାତିର ଅସଂଖ୍ୟ ଜୀବଜନ୍ତୁ ଦେଖା ଦେଲେ । ରାଜା ପଚାରିଲେ—"ଭଗବନ୍ ! ଏ ସବୁ କିଏ ?"

ମହର୍ଷି କପିଳ କହିଲେ—"ରାଜନ୍ ! ଏମାନଙ୍କ ମଧ୍ୟରେ ସର୍ବାତ୍ମା ଶ୍ରୀହରି ବିରାଜମାନ କରିଛନ୍ତି । ସେ କାମରୂପ ଅଟନ୍ତି । ତାଙ୍କୁ ଖୋଜିବା ପାଇଁ ବାହାରକୁ ଯିବାକୁ ପଡ଼େ ନାହିଁ । ସେ ସମସ୍ତଙ୍କର ସମୀପରେ ଅଛନ୍ତି । ଚିତ୍ତବୃତ୍ତିକୁ ଏକାଗ୍ର କରିବା ଦ୍ୱାରା ସେ ଆପେ ଆପେ ଦର୍ଶନ ଦିଅନ୍ତି ।

କାମରୂପୀ କୃଷ୍ଣଙ୍କୁ କେହି ଯଦି ବାହାରେ କେଉଁଠି ଖୋଜନ୍ତି, ତେବେ ସେ ମିଳନ୍ତି ନାହିଁ । ବୃନ୍ଦାବନ ବାହାରକୁ ସେ କେବେହେଲେ ଯାଆନ୍ତି ନାହିଁ । ସେ ତ ଗୋଷ୍ଠ (ଶରୀର) ଅଭ୍ୟନ୍ତରରେ ଥିବା ବୃନ୍ଦାବନରେ (ହୃଦସ୍ଥ କମଳ ମଧ୍ୟରେ) ବଂଶୀ ବଜାଉ

ଅଛନ୍ତି । ତାଙ୍କ ବଂଶୀ ସ୍ୱନ ମାଦକତା ପୂର୍ଣ୍ଣ । ଯେଉଁ ବ୍ୟକ୍ତି ଏକାଗ୍ର ଚିତ୍ତରେ ତାହା ଥରେ ଶୁଣି ପାରିଛି, ସେ ଆଉ ସ୍ଥିର ହୋଇ ରହିପାରି ନାହିଁ । ଦେହ, ଘରଦ୍ୱାର ଆଦର ମମତା ତାକୁ ବାନ୍ଧି ରଖିପାରି ନାହିଁ । ଯେ ପର୍ଯ୍ୟନ୍ତ ମନୁଷ୍ୟର ଦେହାଭିମାନ ରହିଛି ଯେ, ମୁଁ କୁଳୀନ, ମୁଁ ଶ୍ରେଷ୍ଠ ମୁଁ ବିଦ୍ୱାନ୍, ମୁଁ ସୁନ୍ଦର ତଥା ମୁଁ ଜଣେ ଏପରି ଲୋକ, ସେ ପର୍ଯ୍ୟନ୍ତ ମୋହନଙ୍କର ମନୋହାରିଣୀ ମୁରଲୀ ସ୍ୱନ କିପରି ତାକୁ ଶୁଣାଯିବ ? ସେହି କାମ ରୂପୀ କାମୀଙ୍କର କମନୀୟ କାମକ୍ରୀଡ଼ାମାନ ତାକୁ କିପରି ଦେଖିବାକୁ ମିଳିବ ? କାମୀ କୃଷ୍ଣଙ୍କ ସହିତ କାମିନୀଗଣ (ଗୋପୀଗଣ) ହିଁ ମିଳିତ ହୋଇ ପାରନ୍ତି । ସେହିମାନେ ହିଁ ତାଙ୍କ ମୁରଲୀ ଧ୍ୱନିକୁ ଶୁଣି ତାଙ୍କ ରାସ ବିଳାସରେ ସମ୍ମିଳିତ ହୋଇ ପାରନ୍ତି । ବାହ୍ୟ-ଦୃଷ୍ଟି ସମ୍ପନ୍ନ ବ୍ୟକ୍ତିଙ୍କର ସେଠାକୁ ପ୍ରବେଶ କରିବାର କ୍ଷମତା ନାହିଁ ।

ବଂଶୀ ସ୍ୱନ ଶୁଣିବାର ଯୋଗ୍ୟତା ମଧ୍ୟ ସମସ୍ତଙ୍କଠାରେ ନାହିଁ । ଯାହାଙ୍କର ହୃଦୟ ସରସ ନ ହୋଇ କଠୋର ହୋଇ ଯାଇଛି, ସେ ବଂଶୀସ୍ୱନ ଶୁଣିବାର ଅଧିକାରୀ ନୁହନ୍ତି । ମହିଁଷି ଆଗରେ ବୀଣା ବଜାଅ, ସେ ଠିଆ ହୋଇ ସେ ଆଡ଼େ କାନ ଦେବ । ଯାହାଙ୍କର ହୃଦୟ କୋମଳ, ସରସ, ଆର୍ଦ୍ର, ରାଗରଞ୍ଜିତ, ଅନୁରାଗଭରା, ଭକ୍ତି ଭାବରେ ବିହ୍ୱଳିତ, ପ୍ରେମପ୍ଳାବିତ, ମାଧୁରୀବିଜଡ଼ିତ, ଉତ୍କଣ୍ଠାନୁସ୍ୟୂତ, ପ୍ରତ୍ୟକ୍ଷମାଣ, ଲାଳସା ବିଜଡ଼ିତ (ଲୌଳ୍ୟ ଭାବ ବିଜଡ଼ିତ) ଓ ପ୍ରେମ ପରିପୂର୍ଣ୍ଣ, ତାଙ୍କୁ ବୃନ୍ଦାବନ ବିହାରୀଙ୍କର ବେଣୁ ସ୍ୱନ ଶୁଣାଯାଏ । ଯାହାଙ୍କର ପୁରୁଷପଣର ଅଭିମାନ କିମ୍ବା ଯେଉଁ ସ୍ତ୍ରୀ ନିଜକୁ ଶାଶୁ ମନେ କରି ଅନ୍ୟ ସ୍ତ୍ରୀମାନଙ୍କୁ ଶାସନ କରିବାକୁ ଚାହେଁ, ସେମାନଙ୍କୁ ବଂଶୀଧ୍ୱନି ଶୁଣାଯାଏ ନାହିଁ । ସେଥିପାଇଁ ବନମାଳୀଙ୍କର ବଂଶୀଧ୍ୱନି ଗୋପୀମାନଙ୍କୁ ଶୁଣାଯାଉ ନ ଥିଲା କିମ୍ବା ବୃଦ୍ଧା ଗୋପାଙ୍ଗନୀମାନଙ୍କୁ ଶୁଣାଯାଉ ନ ଥିଲା । ସେହି ସୁମଧୁର ସ୍ୱର କେବଳ ଯୁବତୀ ଗୋପୀମାନଙ୍କୁ ଶ୍ରବଣ ହେଉଥିଲା । ତାହା ଶ୍ରବଣ କରି ସେମାନେ ଘରଦ୍ୱାର ଗୃହ, ଗୋଷ୍ଠ ଛାଡ଼ି ବନ ଆଡ଼କୁ ଯିବାପାଇଁ ବ୍ୟସ୍ତ ହୋଇ ପଡ଼ୁଥିଲେ ।

ବନ ଆଡ଼କୁ ସେମାନେ ଯିବାର କାରଣ ହେଉଛି ଏହା ନିର୍ଜନ ସ୍ଥାନ । ପ୍ରେମାଳାପ ଏକାନ୍ତ ସ୍ଥାନରେ ହୋଇଥାଏ । ସମସ୍ତଙ୍କ ସମୀପରେ ପ୍ରେମଲୀଳା ପ୍ରଦର୍ଶିତ ହୁଏନାହିଁ । ପ୍ରେମିକଙ୍କ ସହିତ ନିର୍ଜନ ସ୍ଥାନରେ ହିଁ ଭେଟିବାକୁ ପଡ଼ିଥାଏ । ସେହି ବଂଶୀ ସ୍ୱନ ଶ୍ରବଣ କରି ଏପରି କୌଣସି ବ୍ୟକ୍ତି ନାହିଁ ଯେ କି ବସିଥିବା ସ୍ଥାନରୁ ଉଠି ସେ ଆଡ଼େ ନ ଧାଇଁବ ? ତାଙ୍କୁ ବଂଶୀଧ୍ୱନି ଆସୁଥିବା ସ୍ଥାନ ଶ୍ୟାମସୁନ୍ଦରଙ୍କ ସମୀପକୁ ହିଁ ଯିବାକୁ ପଡ଼ିବ । ଯଦି ତାଙ୍କର ଭୌତିକ ଶରୀରକୁ କେହି ଅଟକାଇ ଦିଏ, ତେବେ ତାଙ୍କର ଦିବ୍ୟ ଶରୀରରେ ହିଁ ଶ୍ୟାମସୁନ୍ଦରଙ୍କ ସହିତ ମିଳିତ ହେବାକୁ ହେବ । ମିଳିତ ନ ହେବା ପର୍ଯ୍ୟନ୍ତ ସେ ସ୍ଥିର ହୋଇ ରହି ପାରିବେ ନାହିଁ ।

ଶ୍ୟାମସୁନ୍ଦରଙ୍କର ବେଣୁ ଅହରହ ବାଜୁଅଛି । ତାହା ବାଜିବା ପାଇଁ କୌଣସି ସମୟ ନିର୍ଦ୍ଧାରିତ ହୋଇନାହିଁ । ତାହା ଦିବାରାତ୍ର ଅହରହ ବାଜୁଅଛି । ରାତ୍ରକାଳରେ ତାହା ଅଧିକ ମୋହକ । କ୍ଷଣ କ୍ଷଣକେ ତାହାର ମଧୁରତା, ଉନ୍ମାଦକତା, ସରସତା ତଥା ପ୍ରିୟତା ବୃଦ୍ଧି ପାଇଥାଏ । ଗୋପାଙ୍ଗନାଗଣ ତାହା ଶୁଣନ୍ତି, ବିକଳ ହୁଅନ୍ତି, ବିବଶ ହୁଅନ୍ତି, ପୁନଶ୍ଚ ଅଗ୍ରସର ହୁଅନ୍ତି । ବେଣୁ ଧ୍ୱନି ଆସୁଥିବା ସ୍ଥାନ ଅନ୍ୱେଷଣ କରିବା ପାଇଁ ସେ ଚଞ୍ଚଳ ହୋଇ ଉଠନ୍ତି । ସେ ପର୍ଯ୍ୟନ୍ତ ସେହି ସ୍ଥାନ ଖୋଜି ନ ପାଇ ଥାଆନ୍ତି, ସେ ପର୍ଯ୍ୟନ୍ତ ସେମାନଙ୍କୁ ଧାଇଁବାକୁ ପଡ଼ିଥାଏ । ତାହା ମିଳିସିବାକ୍ଷଣି ସେମାନେ ଦୂରେଇ ଦୂରେଇ ରହନ୍ତି ଓ ମୁରଲୀ ସହିତ ମୋହକ ବାର୍ତ୍ତାଳାପ କରନ୍ତି । ଅଧିକ ଅନୁରକ୍ତ କରିବା ପାଇଁ, ପୂର୍ଣ୍ଣମାତ୍ରାରେ ନିଜର କରିନେବା ପାଇଁ, ସେମାନଙ୍କ ସହିତ ଶ୍ରୀକୃଷ୍ଣ ପ୍ରଥମେ ଦୟା ନ ଦେଖାଇ ନିଷ୍ଠୁର ବ୍ୟବହାର କରନ୍ତି । ନିଜେ ମୁରଲୀ ବଜାଇ ପ୍ରତ୍ୟେକଙ୍କୁ ନିଜ ନିଜ ନାମରେ ସ୍ୱନ ମାଧ୍ୟମରେ ଡାକନ୍ତି, ଅଥଚ ଗୋପାଙ୍ଗନାମାନେ ଆସିସିବାକ୍ଷଣି ସେମାନଙ୍କୁ କହନ୍ତି କାହିଁ ! ମୁଁ ତ ତୁମ୍ଭମାନଙ୍କୁ ଏଠାକୁ ଡାକି ନାହିଁ । ଯାଅ ପଳାଅ, ତେଣେ ତୁମକୁ ଘରେ ତୁମର ସ୍ୱାମୀ, ଶାଶୁ, ଶ୍ୱଶୁର ଖୋଜୁଥିବେ । ଏ ରାତ୍ର କାଳରେ ତୁମ୍ଭେମାନେ ଏକା ଏକା ଏଠାକୁ ଆସିବାକୁ କିପରି ସାହସ କଲ ? ଏହିପରି ଭାବରେ କୃଷ୍ଣ ସେମାନଙ୍କୁ ଠୋକର ଦିଅନ୍ତି । ସେମାନେ କହନ୍ତି, କେଡ଼େ ନିଷ୍ଠୁର ହେ ତୁମେ ମୁରଲୀଧାରୀ ! ଯେତେ କହିଲେ ମଧ୍ୟ ସେମାନେ କୃଷ୍ଣଙ୍କର କଥା ଶୁଣନ୍ତି ନାହିଁ କିମ୍ବା ଆଉ ଘରକୁ ଫେରନ୍ତି ନାହିଁ । ସେମାନେ କୃଷ୍ଣଙ୍କ ସମ୍ମୁଖରେ ଅଶ୍ରୁ ବିସର୍ଜନ କରନ୍ତି । ତାଙ୍କୁ ନିଜର ସର୍ବସ୍ୱ ବୋଲି କହନ୍ତି । ତାଙ୍କ ସମ୍ମୁଖରେ ଭୂମିରେ ଲେଟି ଯାଆନ୍ତି । ପୀନତାର ସହିତ ନିଜ ନିଜର ଦୁଃଖ ଜଣାନ୍ତି ଓ ତାଙ୍କ ଅରୁଣଚରଣ ଯୁଗଳ ତଳେ ପଡ଼ିଯାଆନ୍ତି । କାନ୍ଦି କାନ୍ଦି ତାଙ୍କୁ ନିଜ ନିଜର ଦୁଃଖ ବିବଶତା ଜଣାନ୍ତି ଏବଂ ଶରଣାଗତଙ୍କୁ ତ୍ୟାଗ କରିବା ଦ୍ୱାରା ଯାହା ଅନିଷ୍ଟ ଘଟେ, ସେହି ଭୟ ଦେଖାନ୍ତି । ଶ୍ୟାମସୁନ୍ଦର ସମସ୍ତ କଥା ଶୁଣି ମନ୍ଦ ମନ୍ଦ ହସୁ ଥାଆନ୍ତି ।

ସେ ମନ୍ଦ ମନ୍ଦ ହସିବାର କାରଣ ଏହି ଯେ ତାଙ୍କ ମୁରଲୀ ସ୍ୱନ କି ମନୋହର, କି ମଧୁର । ତାହା ସମସ୍ତ ଗୋପୀଙ୍କଠୁ ନିଜ ନିଜ ନାମରେ ଡାକି ଆଣିଛି ଓ ନୀରବ ହୋଇ ଯାଇଛି । ଏହି ମୁରଲୀ ସକାଶେ ମୋତେ କେତେ ସୁଖ ମିଳୁଛି । ମୁଁ ଯାହାକୁ ଯେତେବେଳେ ଚାହୁଁଛି, ମୁରଲୀ ଦ୍ୱାରା ହିଁ ତାଙ୍କୁ ଆହ୍ୱାନ କରୁଛି । ଏହି କଥାକୁ ବାରମ୍ବାର ଭାବି ଶ୍ୟାମସୁନ୍ଦର ମନ୍ଦ ମନ୍ଦ ହସୁ ଥାଆନ୍ତି । ସେ ହସିବାରେ ଲାଗି ଥାଆନ୍ତି; କିନ୍ତୁ ଗୋପାଙ୍ଗନାଗଣଙ୍କୁ ବିରହ ବେଦନାରେ ବ୍ୟଥିତ କରାଇ କନ୍ଦାଉ ଥାଆନ୍ତି ।

ଗୋପିକାମାନେ କାନ୍ଦିବାର କାରଣ ହେଉଛି, ସେମାନେ ଚିନ୍ତା କରୁଥିଲେ ଯେ, ମୁରଲୀ ଆନନ୍ଦସାଗରର ପରପାରେ ବାଜୁଛି ଓ ଆମ୍ଭମାନଙ୍କର ଚିତ୍ତବୃତ୍ତି ରୂପକ ନୌକା

ଶୁଷ୍କ ସ୍ଥାନରେ ଅଟକ ଯାଇଛୁ । ଯଦ କେଉଁଆଡ଼ୁ ପାଣି ଆସିଯାଏ ଓ ଶୁଷ୍କସ୍ଥାନ ଜଳମୟ ହୋଇଯାଏ, ତେବେ ଆମ ନୌକା ଭସିଯାଇ ଆରପାଖରେ ଲାଗିବ । ମୁରଲୀ ଧ୍ୱନି ଯେଉଁଠାରୁ ଆସୁଛି, ସେଠାରେ ଯାଇ ପହଞ୍ଚି ଯିବ । ଉଦ୍‌ଗମ ସ୍ଥାନରେ ପହଞ୍ଚି ଆମେ ତାହାର ଉତ୍ତାଳ ଲହରୀର ତାଳେ ତାଳେ ଆମେ ନୃତ୍ୟ କରିବୁ । ତାଳେ ତାଳେ ନାଚ ରାସ ରଚିବୁ । ଏମାନେ ଏହା ଚିନ୍ତା କରି ମୁରଲୀ ସହିତ ଦ୍ୱେଷ କରୁଥାଆନ୍ତି।

ପ୍ରେମରେ ଦ୍ୱେଷ କରିବାର କ'ଣ ଅଛି । ଗୋପୀକାଗଣ ମୁରଲୀ ସହିତ ଦ୍ୱେଷ କରିବାର କାରଣ ହେଲା, ଏହା ଶତ୍ରୁତା ଜନିତ ଦ୍ୱେଷ ନୁହେଁ । ପ୍ରେମଯୁକ୍ତ ଦ୍ୱେଷ, ପ୍ରଣୟ ସମ୍ମିଶ୍ରିତ କୋପ । ଏହା ତ ପ୍ରେମ ବୃଦ୍ଧିରେ ବାଧକ ନ ହୋଇ ବରଂ ସାଧକ ହେବାର ଲକ୍ଷଣ । ପ୍ରତ୍ୟେକ ମୁରଲୀ ହୋଇଯିବାକୁ ଇଚ୍ଛା କଲେ । ପ୍ରତ୍ୟେକ ଶ୍ୟାମସୁନ୍ଦରଙ୍କ ଅଧର ମଧୁ ଆସ୍ୱାଦନ କରିବାକୁ କାମନା କଲେ । ପ୍ରତ୍ୟେକେ ତାଙ୍କର କର-କମଳର ସ୍ପର୍ଶଦ୍ୱାରା ଆହ୍ଲାଦିତ ହୋଇ କୋମଳ ଶଯ୍ୟାରେ ଶୟନ କରିବାକୁ ଚାହିଁଲେ । ଏହା ଥିଲା ସେହି ବାଂଶୋରୀର ଗର୍ବ, ଏହା ତାର ଉଜ୍ଜ୍ୱଳ ଭାଗ୍ୟ । ଏହାଦ୍ୱାରା ବେଣୁର ବିଜୟ ସ୍ୱୀକୃତ ହୋଇଛି । ଶ୍ୟାମସୁନ୍ଦରଙ୍କ ସହିତ କିଏ ଅବା ପ୍ରେମ ନ କରିବ ? ସେ ତ ସାକ୍ଷାତ୍ ମନ୍ମଥର ମନକୁ ମନ୍ଥନ କଲାବାଲା । ସେ ଯଦି ଗୋପାଙ୍ଗନାମାନଙ୍କର ମନକୁ ମନ୍ଥନ କରୁଥାଆନ୍ତି, ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? କମନୀୟ କୃଷ୍ଣଙ୍କୁ ଦର୍ଶନ କରି କାମିନୀଗଣଙ୍କର ମନରେ କାମଭାବର ଉଦୟ ହେବା ତ ସ୍ୱାଭାବିକ କଥା ।

କାମଭାବ କ'ଣ ଏତେଟା ମନ୍ଦ ଭାବ ? ତେବେ ଗୋପୀମାନଙ୍କ ମନରେ କାମଭାବର ଉଦୟ ହେଲା କାହିଁକି ? କାମ ଭାବ କାହିଁକି ମନରେ ଉଦୟ ହୁଏ ତାହା କାମଦେବ ହିଁ ଜାଣନ୍ତି ଓ କାମଦେବଙ୍କ ବାପା ବି ଜାଣନ୍ତି ; କିନ୍ତୁ କାମ ଭଲ ବା ମନ୍ଦ ତାହା ତ ଶାସ୍ତ୍ର ନିର୍ଣ୍ଣୟ କରେ । ଏ ସାରା ବିଶ୍ୱ କାମଦ୍ୱାରା ହିଁ ସଞ୍ଚାଳିତ । କାମ ନ ଥିଲେ ସୃଷ୍ଟି ବୃଦ୍ଧି ହୁଅନ୍ତା ନାହିଁ । ସଂସାରର ରକ୍ଷା ନ କରି ତାରକ ହିଁ ପ୍ରଜା ଭକ୍ଷକରେ ପରିଣତ ହୁଅନ୍ତି, ନିଷ୍କାମ ଶିବଙ୍କ ମନରେ କାମ ଭାବ ଉତ୍ପନ୍ନ କରାଇବା ପାଇଁ ବ୍ରହ୍ମାଦି ଦେବତାଗଣ କେତେ ଚେଷ୍ଟା ନ କରିଛନ୍ତି ? ସଂସାରର ଲୋକମାନେ ନିରନ୍ତର କାମରେ ହିଁ ମଗ୍ନ ରହିଛନ୍ତି । ଯଦି କାହାରିକୁ ପଚରାଯାଏ ଯେ, "ବାବୁ ! ତୁମେ କେଉଁଠାକୁ ଯାଉଅଛ ?" ସେ ସଙ୍ଗେ ସଙ୍ଗେ କହିବ—"ଗୋଟାଏ କାମରେ ଯାଉଛି ।" କାହାକୁ ଯଦି କୁହାଯାଏ—"ଅଳ୍ପ ଟିକିଏ ବସନ୍ତୁ," ସେ ସଙ୍ଗେ ସଙ୍ଗେ କହିବେ—"କିପରି ବା ବସିବି, ମୋର ବହୁତ କାମ ଅଛି ।" ଯଦି କୌଣସି ପିଲା କାମ ନ କରେ, ତେବେ ତା'ର ଅଭିଭାବକ କହନ୍ତି—"କାମ ନ କରିବୁ ତ ଖାଇବୁ କାହିଁକି ?" ସାର କଥା ଏହି ଯେ, ଚରାଚର ବିଶ୍ୱର ସଞ୍ଚାଳନ

କାମକୁ ହିଁ ହେଉ ଅଛି । କାମରେ ବନ୍ଧ ଓ ମୋକ୍ଷ ଉଭୟ ଅଛି ; କିନ୍ତୁ ଏହି କାମରେ କୌଣସି ପ୍ରଭେଦ ରହିଛି । କାମନାକୁ ସାଧାରଣତଃ କାମ ବୋଲି ବୁଝାଯାଏ । କୌଣସି କାମନା ନ କରି ସଂସାରରେ କିଛି କରାଯାଇ ପାରେ ନାହିଁ । ଆମ୍ଭମାନଙ୍କର ଜୀବନ କାମନା ହୋଇଥିବାରୁ ଆମ୍ଭେମାନେ ଶ୍ୱାସ ନେଉ । ଆମର ପରସ୍ପରର କାମନା ରହିଛି । ଏଥିପାଇଁ ଆମେ ପର୍ବତ ବୃକ୍ଷ ଓ ମନୁଷ୍ୟ, ପଶୁ, ପକ୍ଷୀ ବୃକ୍ଷ ଲତା ଆଦି ଚାହୁଁ । ଆମର ଶରୀର ପୋଷଣର କାମନାଥିବାରୁ ଆମେ ଖାଉ । ଆମେ ସଂସାର ବୃଦ୍ଧି କରିବାକୁ କାମନା କରୁଥିବାରୁ ସନ୍ତାନୋତ୍ପତ୍ତି କରୁ କେବଳ ଏହି ସାଂସାରିକ କାମନା ହିଁ ଆମକୁ ବାରମ୍ବାର ଜନ୍ମମୃତ୍ୟୁ ଚକ୍ରରେ ପକାଏ ; କିନ୍ତୁ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧୀୟ କାମନା ଆମ୍ଭମାନଙ୍କୁ ହଠାତ୍ ସଂସାରରୁ ଟାଣିନେଇ ବୃନ୍ଦାବନ ଆଡ଼କୁ ଅଗ୍ରସର କରାଏ । ସଂସାରର କାର୍ଯ୍ୟ କଳାପ ଆମକୁ ବନ୍ଧନରେ ପକାଏ ଓ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧୀୟ କାମ ଆମ୍ଭମାନଙ୍କୁ ସଂସାରରୁ ମୁକ୍ତ କରାଏ । କାମ ଯଦି ଏକା ହୋଇ ବଳ ସଞ୍ଚୟ କରି ଶଙ୍କରଙ୍କ ସମୀପକୁ ଯାଏ ତେବେ ସଙ୍ଗେ ସଙ୍ଗେ ଭସ୍ମ ହୋଇ ଯିବ । ସେହି କାମ ହିଁ ଶ୍ରୀକୃଷ୍ଣଙ୍କର ପୁତ୍ର ପ୍ରଦ୍ୟୁମ୍ନ (ପରମ ପ୍ରକାଶବାନ୍) ସେ ଯଦି ପରମ ପ୍ରକାଶବାନ୍ ହୋଇଯିବ, ତେବେ ସମ୍ବର (ପରମ ମୋହକ)କୁ ମାରି ଫେରି ଆସିବ । ଏଥିପାଇଁ ଭଗବାନ ନିଜର ସୁହୃଦ୍ ସଖା ଅର୍ଜ୍ଜୁନଙ୍କୁ କହିଥିଲେ—"ଧର୍ମାବିରୁଦ୍ଧୋଭୂତେଷୁ କାମୋଽସ୍ମି ଭରତର୍ଷଭ ।" ଏ ଭରତ-କୁଳରେ ଶ୍ରେଷ୍ଠ ପ୍ରାଣୀମାନଙ୍କ ମଧ୍ୟରେ ଧର୍ମ ସହିତ ଅବିରୁଦ୍ଧ ଯେଉଁ କାମ ବିଦ୍ୟମାନ, ସେ ଅନ୍ୟ କେହି ନୁହେଁ ମୁଁ ସ୍ୱୟଂ । ଧର୍ମବିରୁଦ୍ଧ କାମ ହିଁ ସଂସାର ବନ୍ଧନର କାରଣ ଓ ସ୍ୱର୍ଗ-ନର୍କ ଆଦିକୁ ସେ ନେଇଯାଏ । ଯେଉଁ କାମ କୃଷ୍ଣଙ୍କ ସମୀପକୁ ନେଇଯାଏ, ସଂସାର କାମନାରୁ ନିବୃତ୍ତ କରାଏ, କୃଷ୍ଣ ଓ ସେହି କାମ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେ ଏପରି କାମକୁ ହୃଦୟରେ ଉତ୍ପନ୍ନ କରି ଦିଅନ୍ତି, ସେ ହେଉଛନ୍ତି ସଦ୍‌ଗୁରୁ ।

ବୃନ୍ଦାବନ-ବିହାରୀଙ୍କର ବେଣୁ ବାଜିବା ମାତ୍ରେ ଶ୍ରୀକୃଷ୍ଣ ବିଷୟକ କାମନା ହୃଦୟରେ ଉତ୍ପନ୍ନ କରିଦିଏ । ମନକୁ ମନ୍ଥନ କରି ତାହା ସାଂସାରିକ କାମନାଗୁଡ଼ିକୁ ଛଡ଼ାଇ ଦିଏ । ଗୋପାଙ୍ଗନାଗଣ ଯେତେବେଳେ ସେହି ଧ୍ୱନିକୁ ଶ୍ରବଣ କରନ୍ତି, ସେତେବେଳେ କାମନାଶୂନ୍ୟ ହୋଇ ଯାଆନ୍ତି । ଦୁଗ୍ଧ ଦୋହନ, ଦୁଗ୍ଧ ସିଝାଇବା, ଚକିରେ ଶସ୍ୟ ଚି ପେଷଣ, ଅଟା ପେଷଣ, ଗୃହର ପରିଷ୍କାର ପରିଚ୍ଛନ୍ନ କର୍ମ, ଲିପା ପୋଛା କର୍ମ, ଅଟା ଚଲେଇବା କର୍ମ, ଅଟା ଚକଟି ରୁଟି କରିବା କର୍ମ, ଧାନ କୁଟିବା କର୍ମ, ଧାନ ପାଛୁଡ଼ିବା କର୍ମ, ବାସନ ମଜାମଜି କର୍ମ, ରନ୍ଧନ ଓ ପରିବେଷଣ କର୍ମ, ମୂତ୍ତିକ (ଚୌକା) ପକାଇବା, ସୂତା କାଟିବା, ବସ୍ତ୍ର ସିଲେଇ କରିବା, ପିଲାଙ୍କୁଆଙ୍କ ଖବର ବୁଝିବା, ପିଲାଙ୍କୁ କ୍ଷୀର ଦେବା, ବେଶ ପୋଷାକ ହେବା, ମୁଣ୍ଡ କୁଣ୍ଡାଇ ଗଣ୍ଠି ଆଦି ସଜାଇବା, ବିଛଣା ପକାଇବା, ସ୍ୱାମୀଙ୍କର ସେବା କରିବା ଓ ସମସ୍ତ ପ୍ରକାର ଗୃହକର୍ମ କରିବା ଛାଡ଼ି ସେମାନେ ମୁରଲୀ

ସ୍ୱନ ଭାସି ଆସୁଥିବା ସ୍ଥାନକୁ ଦଉଡ଼ନ୍ତି । ଏହି ଧ୍ୱନି ସମସ୍ତେ ଶୁଣି ପାରନ୍ତି ନାହିଁ । କେବଳ କେତେକ ଭାଗ୍ୟବାନ ଗୋପାଙ୍ଗନାମାନଙ୍କୁ ହିଁ ଏହା ଶୁଣାଯାଏ । ଯେଉଁମାନେ ତାହା ଶୁଣି ପାରନ୍ତି, ସେମାନେ ଧନ୍ୟ, ସେମାନଙ୍କ ଜୀବନ କୃତାର୍ଥ । ସେମାନେ ସଂସାର ମୁକ୍ତ । ତେଣୁ ଏହି ବେଣୁ ସମସ୍ତଙ୍କର ଗୁରୁ । ସମସ୍ତଙ୍କୁ ଶ୍ରୀକୃଷ୍ଣଙ୍କ ଚରଣରେ ପହଞ୍ଚାଇବାବାଲା । ଆମ୍ଭେମାନେ କ'ଣ ସମସ୍ତ ସାଂସାରିକ କର୍ମ ଯଥା ଅର୍ଥଚନ୍ତା, ଲେଖାପଢ଼ା, ଛପାଛପି, ସଂଶୋଧନ, ବକ୍ତାପନ, ବଳାସ ସାମଗ୍ରୀ ସଂଗ୍ରହ, ଲୋକ ସଂଗ୍ରହ, ଲୋକ ସଂଗଠନ, ଅହଙ୍କାର, ଅନ୍ୟମାନଙ୍କୁ ନିଜର ଅଧୀନ; କୂଟ ଚକ୍ରାନ୍ତ ଓ ସ୍ୱାର୍ଥସାଧନ କରିବା ଆଦିକୁ ଭୁଲି ମନ-ମୋହନଙ୍କର ମୁରଲୀ ଧ୍ୱନି ଶୁଣି ପାରିବା ? ବୃନ୍ଦାବନ-ବହାରୀଙ୍କର ବେଣୁ ଧ୍ୱନି ଶୁଣି ପ୍ରତ୍ୟେକ କାର୍ଯ୍ୟ ଅଧାପନ୍ତରିଆ ଛାଡ଼ି ଦେଇ କ'ଣ କେବେ ଚହ୍ଳଳ ହୋଇ, ଅସ୍ଥିର ହୋଇ, ପାଗଳଙ୍କ ପରି ପଡ଼ି ଉଠି ଧାଇଁ ଖୁବ୍ ଶୀଘ୍ର ବାଙ୍କବହାରୀଙ୍କ ଚରଣ କମଳ ନିକଟରେ ପହଞ୍ଚି ପାରିବା ? ମୁରଲୀ ଦେବି ! "ତୁମକୁ ବାରମ୍ବାର ପ୍ରଣାମ," ଏହା କହି କହି ଆମ୍ଭେମାନେ କ'ଣ ତାଙ୍କୁ ଡାକି ପାରିବା ? ସେ କ'ଣ କେବେ ଆମ୍ଭମାନଙ୍କ ନାମ ଧରି ଜଣ ଜଣ କରି ଆମକୁ ଡାକିବେ ? ଆମ୍ଭମାନଙ୍କ କର୍ଣ୍ଣକୁହରରେ କ'ଣ କେବେ ସେହି ଧ୍ୱନିମନ୍ତ୍ର ପଡ଼ିବ ? ସେ କ'ଣ କେବେହେଲେ ଆମ୍ଭମାନଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିବେ ? ହେ ଦେବି ! ଆମ୍ଭେମାନେ ଶକ୍ତିହୀନ, ଓ ସାଧନ ହୀନ ଅଟୁଁ । ପ୍ରତିଜ୍ଞା କରି ଆମେ ତାହା ପାଳନ କରି ପାରିବାକୁ ଅସମର୍ଥ । କୌଣସି ନିୟମ ପାଳନ କରିବାରେ ଅକ୍ଷମ । ମନକୁ ବଶ କରିବାରେ ଅକ୍ଷମ । ଶ୍ରୀକୃଷ୍ଣଙ୍କୁ ଡାକିବାରେ ଅସମର୍ଥ । ସବୁ ଦିଗରୁ ଆମ୍ଭେମାନେ ନିରାଶ ହେଲୁଣି । ଆମ୍ଭମାନଙ୍କର ପୁରୁଷାର୍ଥ ଅଭିମାନ ଚୂର୍ଣ୍ଣ ହୋଇ ଯାଇଛି । ହେ ଦେବି ! ଏବେ ତୁମେ ହିଁ ଭରସା । ତୁମେ କୃଷ୍ଣଙ୍କ ମୁଖରେ ସର୍ବଦା ଲାଗି ରହିଥାଅ । ପାଖ ଲୋକ ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରାଇ ନେଇ ପାରେ । ତୁମେ ଥରେ ହେଲେ ଆମ୍ଭମାନଙ୍କର ନାମ ଜଣ ଜଣ କରି ଡାକ । ହେ ମୁରଲୀ ! ତୁମେ କାହିଁକି ଆମ୍ଭମାନଙ୍କର ଦାଢ଼ି ଦେଖି ଡରି ଯାଉଛ ? ଏ ତ ସବୁ ବାହ୍ୟ ଚହ୍ନ ମାତ୍ର । ତୁମେ ଯେତେବେଳେ ଆମ୍ଭମାନଙ୍କୁ ଡାକିବ ନା, ସେତେବେଳେ ଏ ବାହ୍ୟ ଚହ୍ନ ସବୁ କୁଆଡ଼େ ଉଡ଼ିଯିବ । ଗୁରୁଦେବଙ୍କ ମନ୍ତ୍ର ଆମ୍ଭମାନଙ୍କ କର୍ଣ୍ଣରେ ପଡ଼ିବା ମାତ୍ରେ ହିଁ ଆମ୍ଭମାନଙ୍କର ଶରୀର ଚନ୍ମୟ ହୋଇଯିବ । ଆମ୍ଭମାନଙ୍କୁ ଥରେ ସେହି ମୋହନୀ ମନ୍ତ୍ର ଶୁଣାଅ । ତଦ୍ୱାରା ମଦନ-ମୋହନଙ୍କର ମାଧୁରୀ ମୂର୍ତ୍ତିକୁ ମନରେ ବସାଇ ତାଙ୍କ ଚରଣରେ ଆମ୍ଭେମାନେ ଲୋଟି ଯାଉଁ । ବୃନ୍ଦାବନର ନିଭୃତ ନିକୁଞ୍ଜରେ ତାଙ୍କ ସହିତ ଯେପରି ବହାର କରିପାରୁଁ । ରାସବଳାସ ସୁଖ ଅନୁଭବ କରିପାରୁଁ । ହୃଦୟ କଳୁଷିତ ହେବା ଦ୍ୱାରା ତୁମ ଶବ୍ଦରେ ମଧ୍ୟ ସଂସାର କାମନା ଆମ୍ଭମାନଙ୍କୁ ବଚଳିତ କରୁଅଛି । ଏହା କି ବଡ଼ମ୍ବନା ! ହେ ଦେବି ! ଆମ୍ଭମାନଙ୍କ ପ୍ରତି ଦୟାକର । ହେ ଦୟାମୟୀ ବେଣୁ ରାଣୀ ! ଆମ୍ଭମାନଙ୍କୁ ନିଜର କରି

ଛଅ । ଅନ୍ତର ବାଜ, ଯେଉଁ ପ୍ରକାର ଧ୍ୱନିରେ ବାଜୁଛ ବାଜିଯାଅ । ଜଗର ମିଠା ମିଠା ମଧୁର ମଧୁର ମଙ୍ଗଳକାମ ତାନ ଅନ୍ତର ଶୁଣାଅ ।

### ଛପପଦ୍ୟ

ମୁରଲୀ ! କରୁଁ ପ୍ରଣାମ ସରସ-ସୀ ତାନ ସୁନାଓ ।
ବଂଶୀ ! ବଂଶୀ ବନୋ ଶ୍ୟାମ ଜଗମାନ୍ହୁଁ ଫଁସାଓ ।।
ବେଣୁ ! ରେଣୁ ବ୍ରଜଭୂମି ଅଂଗ ମେରେ ଲପଟାଓ ।
ବଂଶ ବାଁସୁରୀ ! ବୀର ବିପିନ ବୃନ୍ଦା ବୁଲବାଓ ।।
ସମ୍ମୋହନ ! ଆକର୍ଷିନୀ, ପ୍ୟାରୀ ପ୍ରିୟ-ଆନନ୍ଦିନୀ ।
ନନ୍ଦନନ୍ଦନ ରବତେ ଭରୌ, ହେ ଅଧରାମୃତବର୍ଦ୍ଧିନୀ ।।



## ବାଲ୍ୟାବସ୍ଥାର କେତେକ କମନୀୟ କ୍ରୀଡ଼ା

ଏବଂ ନିଗୂଢ଼ାତ୍ମଗତିଃ ସ୍ୱମାୟୟା
ଗୋପାତ୍ମଜତ୍ୱଂ ଚରିତୈର୍ବିଡମ୍ବୟନ୍ ।
ରେମେ ରମାଲାଲିତପାଦପଲ୍ଲବୋ
ଗ୍ରାମ୍ୟୈଃ ସମଂ ଗ୍ରାମ୍ୟବଦୀଶଚେଷ୍ଟିତଃ ।

(ଶ୍ରୀ ଭା ୧୦ ସ୍କ, ୧୫ ଅ, ୧୯ ଶ୍ଳୋକ)

### ଛପ୍ପୟ

ଖେଳଂ କର ବଲକୀ ବନମେଁ ବନନ ବହୁତେରଂ ବନବାରୀ ।
ଶିଶୁ ସମ କ୍ରୀଡ଼ା କରେଂ ସରସ ସୁନ୍ଦର ଶୁଭ ପ୍ୟାରୀ ।।

ହଂସନିକୀ ଚଲ ଗ୍ୱଲ କୂଜିକେଂ ହଂସେ ହସାବେଂ ।
ମୋରନିକେ ସଁଗ ନାଚ ସଖନିକୁଁ ଶ୍ୟାମ ରଝାବେଂ ॥
ଧୌରୀ ଧୂମର ଧୂସରୀ, ଧେନୁନକେ ଲୈ ନାମ ହର ।
ଟେର ବୁଲବେଂ ଦୂରତେଂ, ଛୁଏଁ ଖୁଜାବେଂ ପ୍ୟାର କର ॥

ବାଲ୍ୟକାଳର ସେହିସବୁ ସୁନ୍ଦର ସୁନ୍ଦର ଖେଳ ଚିରଦିନ ପାଇଁ ଆମଠାରୁ ଦୂରେଇ ଯାଏ ; କିନ୍ତୁ ଦୂରେଇ ଯାଉ ଯାଉ ହୃଦୟରେ ତାହାର ସ୍ଥାୟୀ ଛାପ ପକାଇ ଚାଲିଯାଏ। ତାହାର ସୁଖଦାୟକ ସ୍ମୃତିଚିହ୍ନକ କେଉଁ ସହୃଦୟ ବ୍ୟକ୍ତିଙ୍କ ହୃଦୟରେ ଅବା ବେଦନା ଜାତ ନ କରିବ ? ଶ୍ରୀକୃଷ୍ଣ ଯେତେବେଳେ ରଜା ହୋଇଗଲେ ଓ ଷୋଳ ସହସ୍ର ଏକଶହ ଆଠ ରାଣୀଙ୍କର ପତି ହୋଇ ସୁବର୍ଣ୍ଣ ମହଲରେ ସୁଖରେ ରହିବାକୁ ଲାଗିଲେ, ସେତେବେଳେ ସମସ୍ତ ସମୟରେ ରାଣୀମାନେ ଦେଖିବାକୁ ପାଉଥିଲେ ଯେ ତାଙ୍କ ନେତ୍ରରେ ଜଳ ଭରି ଯାଉଛି ଓ ତାହା ଟପ୍ ଟପ୍ ହୋଇ ନେତ୍ରରୁ ବହିବାକୁ ଲାଗୁଛି । ଦିନେ ଅତି ଆଗ୍ରହରେ ନିଜ ପ୍ରାଣନାଥଙ୍କ କଣ୍ଠରେ ବାହୁଛନ୍ଦି ଶ୍ରୀମତୀ ଭଗବତୀ ରୁକ୍ମିଣୀ ପଚାରିଲେ—"ପ୍ରାଣନାଥ ! ସମସ୍ତ ସମୟରେ ମୁଁ ଆପଣଙ୍କୁ ଏକାନ୍ତରେ ଅଶ୍ରୁବିସର୍ଜନ କରୁଥିବାର ଦେଖୁଛି, କେବେ କେବେ ଆପଣ ଆମ ଆଗରେ ମଧ୍ୟ ଅଶ୍ରୁବିସର୍ଜନ କରୁଛନ୍ତି, ଏହାର କାରଣ କ'ଣ ? ଅବଶ୍ୟ ଆପଣଙ୍କର କୌଣସି ଆନ୍ତରିକ ବ୍ୟଥା ହେବାରୁ ଏପରି ଅଶ୍ରୁ ବିସର୍ଜନ କରୁଛନ୍ତି ବୋଲି ମୁଁ ଭାବୁଛି । ଯଦି ତାହା ପ୍ରକାଶଯୋଗ୍ୟ, ତେବେ ଆମ ଆଗରେ ପ୍ରକାଶ କରନ୍ତୁ । ଆମେ ପ୍ରାଣପଣେ ସେହି ଦୁଃଖ ଦୂର କରିବାପାଇଁ ପ୍ରଯତ୍ନ କରିବୁ । ଏହା ଶୁଣିବାମାତ୍ରେ ଶ୍ୟାମସୁନ୍ଦରଙ୍କର କୋହ ବନ୍ଦ ହୋଇଗଲା ସେ ଅନେକ କାନ୍ଦିଲେ ଓ କାନ୍ଦି କାନ୍ଦି କହିଲେ—"ମୋର ଏପରି ଦୁଃଖ ଅଛି ଯାହାକି ତୁମ୍ଭେମାନେ ଦୂର କରି ପାରିବ ନାହିଁ । ମୋର ବାଲ୍ୟକାଳର ଘଟଣାମାନ ମନେପଡ଼ି ଯାଉଛି । ତାହା ହିଁ ମୋ ହୃଦୟରେ ବେଦନା ଉତ୍ପନ୍ନ କରାଇ ହୃଦୟକୁ ମନ୍ଥନ କରି ପକାଉଛି । ତାହା ଅତ୍ୟନ୍ତ ସୁଖର ଦିନ ଥିଲା । ମୋର କୌଣସି ଚିନ୍ତା ନ ଥିଲା କିମ୍ବା କ୍ଲେଶ ନ ଥିଲା । ସବୁ ଦିଗରୁ ପ୍ରେମଲାଭ କରୁଥିଲି । ପ୍ରାତଃକାଳ ହେବାମାତ୍ରେ ମୁଁ ଗୋ-ଚାରଣ କରାଇବା ପାଇଁ ଯାଉଥିଲି । ଗାଈମାନେ ମୋତେ ଅତ୍ୟନ୍ତ ଭଲ ପାଉଥିଲେ । ମୁଁ ତାଙ୍କ ନାମଧରି ଡାକୁଥିଲି, ମୋ' ଡାକ ଶୁଣିବାମାତ୍ରେ ସେମାନେ ଲାଙ୍ଗୁଡ଼ ଟେକି ମୋ' ନିକଟକୁ ଧାଇଁ ଆସୁଥିଲେ । ମା' ସରଲବଣୀ ଆଣି ମୋ' ପାଖରେ ବସି ଅତି ସ୍ନେହରେ ମୋତେ ଖୁଆଇ ଦେଉଥିଲେ । ସେଥିରେ ମୁଁ ଯେଉଁ ଆନନ୍ଦ ଲାଭ କରୁଥିଲି, ତାହା ଏଠାରେ ହେଉଥିବା ଛପନ ଭୋଗରେ କାହିଁ ? ବ୍ରଜର ସେହି ସରଳ ନିଷ୍ପାପ ବ୍ରଜଯୁବତୀମାନେ ନିଜ ନିଜର ମଇଳା କୋଡ଼ରେ ଗୋବରଲାଗିଥିବା ଶାଢ଼ୀ ପିନ୍ଧି ଆସି ମୋତେ ନିଜ ନିଜ ହୃଦୟରେ ଆଲିଙ୍ଗନ କରୁଥିଲେ ।

ସେମାନଙ୍କର ସ୍ନେହାଲିଙ୍ଗନରେ ଯେଉଁ ସୁଖ ଥିଲା, ତାହା ଏହି କେଶର କସ୍ତୁରି ଓ ନାନା-ପ୍ରକାର ସୁଗନ୍ଧଯୁକ୍ତ ଶାଢ଼ୀରେ କାହିଁ ? ଆମେ ସବୁ ଗୋପାଳ ବାଳକ ମିଳି ପୁଷ୍ପ, ଗଉଗଡ଼, କାଉଁଚ ଓ ପୋହଳା ଆଦିର ମାଳ ପିନ୍ଧୁଥିଲୁ । ତାହା ପିନ୍ଧି ଯେଉଁ ଆନନ୍ଦ ଲାଭ କରୁଥିଲୁ, ତାହା ଏହି ମଣିମାଣିକ୍ୟର ମନୋହର ମାଳାଗୁଡ଼ିକରେ ମିଳିବ କାହୁଁ ? ସଖାଗଣଙ୍କ ସଙ୍ଗେ ଏକାନ୍ତରେ ମଧୁର ଆଳାପ ହେଉଥିଲି ଓ ସେମାନେ ମୋତେ ନିଜ ହାତରେ ଖୁଆଇ ଦେଉଥିଲେ ! ମୁଁ ମଧ୍ୟ ସେମାନଙ୍କୁ ନିଜ ହାତରେ ଖୁଆଇ ଦେଉଥିଲି । ସେମାନଙ୍କ ସଙ୍ଗରେ ଯେଉଁ ସୁଖଥିଲା, ଏଠାରେ ତାହାର ଆଭାସ ବି ନାହିଁ । ଗୋପ ଗୋପାଳଗଣ ଅତି ସ୍ନେହ ଓ ଆଦରରେ ମୋର ସେବା କରୁଥିଲେ, ଏପରି ନିଷ୍କପଟ ନିଶ୍ଛଳ ସ୍ନେହ ଆଜିର ଜୀବନରେ କେଉଁଠାରେ ମିଳିବ ? ମୋର ପିଲାଦିନର କଥା ମୁଁ ମନେ ପକାଇ କାନ୍ଦୁଛି, ସେହି ବ୍ରଜର ଦିନର ସ୍ମୃତି ହିଁ ମୋତେ ଆଜି ବ୍ୟଥିତ କରୁଛି । ଏବେ ଯଦି ମୁଁ ବ୍ରଜପୁରକୁ ଯାଏଁ, ତେବେ ସେଠାରେ ମୋତେ କେହି ହେଲେ ଚିହ୍ନି ପାରିବେ ନାହିଁ । କାରଣ ମୋର ବ୍ରଜରେ ବାଲ୍ୟାବସ୍ଥା ରୂପକ ଯେଉଁ ଧନ ଥିଲା, ତାହା ମୁଁ ହରାଇ ଦେଇଛି । ତାହା ମୋତେ ଛାଡ଼ି ବହୁ ଦୂରକୁ ଚାଲି ଯାଇଛି । ସେଥିପାଇଁ ମୁଁ କାନ୍ଦୁଛି ।" ରୁକ୍ମଣୀ ଆଦି ରାଣୀ ଏହା ଶୁଣି କରି ନୀରବ ହୋଇଗଲେ । ସେମାନେ ଏବେ କିପରି ଅବା ବ୍ରଜର ବାଲ୍ୟବସ୍ଥାକୁ କେଉଁଠାରୁ ଖୋଜି ଫେରାଇ ଆଣି ପାରନ୍ତେ ? ଯଥାର୍ଥରେ ପ୍ରସଙ୍ଗ ଏହା ଥିଲା ଯେ, ଯେଉଁ ଯେଉଁ ଭାବରେ ବାଲ୍ୟକାଳରେ ଲୀଳା ଖେଳା ହେଉଥିଲା, ସେ ପରିସ୍ଥିତି ସବୁ ଏବେ ଆଉ ଫେରି ଆସିବା ସମ୍ଭବ ନୁହେଁ । ଏବେ ସେ ସବୁ ଖେଳ ଖେଳିଲେ ତାହା ଅପ୍ରାକୃତ ହୋଇ ଯିବ । ସେ ଭାବସବୁ ଏବେ କାହିଁ ? ଭାବନା ହିଁ ତ ଆନନ୍ଦ ନିରାନନ୍ଦର ପ୍ରଧାନ କାରଣ । ବାଳକମାନେ ଅନୁକରଣ କରିବାକୁ ଭାରିଭଲ ପାଆନ୍ତି । ଅନୁକରଣ କରିବାରେ ଏକପ୍ରକାର ଆନନ୍ଦ ନିହିତ ଅଛି । ଏଥିରେ ଏକପ୍ରକାର ଆନନ୍ଦ ଅନୁଭୂତ ହୋଇଥାଏ ।

ସୂତ କହୁଛନ୍ତି—"ହେ ମୁନିଗଣ ! ଗୋପାଳ ହୋଇ ଶ୍ୟାମସୁନ୍ଦର ଏବେ ବନ ମଧ୍ୟରେ ବିହାର କରୁ କରୁ କୁମାର ଅବସ୍ଥାର ଭଲି ଭଲି କ୍ରୀଡ଼ା କରିବାକୁ ଲାଗିଲେ । ସେ ଯମୁନା ନଦୀର ପବିତ୍ର ପୁଳିନରେ ଗିରିରାଜ ଗୋବର୍ଦ୍ଧନର ଉଚ୍ଚ ଉପତ୍ୟକାରେ ନିଜର ଗୋ-ଗୋଷ୍ଠ ନେଇ ଚରାଇବାକୁ ଲାଗିଲେ । ତାଙ୍କର ଗୋପାଳ ବେଶ ଅତ୍ୟନ୍ତ ବିଚିତ୍ର ଓ ଚିତ୍ତାକର୍ଷକ ହୋଇଥିଲା । କଣ୍ଠ ଦେଶରେ ସେ ବଡ଼ ବଡ଼ ବନମାଳା ସର୍ବଦା ଧାରଣ କରୁଥିଲେ । ତାହା ହଲି ହଲି ରସିକଙ୍କୁ ଶ୍ରୀକୃଷ୍ଣଙ୍କ ଚରଣ ନିକଟକୁ ଆସିବାକୁ ନିମନ୍ତ୍ରଣ କରୁଥିଲା । ସେ ବଳଦେବଙ୍କ ସହିତ ଏକ ବନରୁ ଅନ୍ୟ ବନକୁ ଗୋ-ଗୋଷ୍ଠକୁ ନେଇ ବିଚରଣ କରୁଥିଲେ । ସେ ଭ୍ରମରଙ୍କୁ ଭାରି ଭଲ ପାଉଥିଲେ । ପ୍ରେମ ତ ଥିଲା ତାଙ୍କର ସ୍ୱାଭାବିକ ଗୁଣ । ନିଜ ଭଳି ପ୍ରେମିକଙ୍କ ସହିତ ତାଙ୍କର ଶୀଘ୍ର ବନ୍ଧୁତା ହୋଇ ଯାଉଥିଲା । ଶ୍ରୀକୃଷ୍ଣ ଥିଲେ ରସପ୍ରିୟ ଓ ଭ୍ରମର ମଧ୍ୟ ରସ ଲୋଲୁପ । ଭ୍ରମର ଯେପରି ଫୁଲକୁ

ରସପାନ କରି ନିଜର ସ୍ୱାର୍ଥ ହାସଲ କରେ ଓ ନିଷ୍ଠୁର ହୋଇଯାଏ, ଏହି ବଙ୍କିମ ଠାଣିରେ ଗୋଡ଼ଭାଙ୍ଗି ଠିଆ ହୋଇଥିବା ଶ୍ରୀକୃଷ୍ଣଙ୍କ ସ୍ୱଭାବ ମଧ୍ୟ ସେହିପରି । ଅନ୍ୟ ହୃଦୟର ପ୍ରେମ ଭାବକୁ ଏ ନିଷ୍ଠୁର କୃଷ୍ଣ ଜାଣନ୍ତି ନାହିଁ । ସେ କେବଳ ନିଜ ସ୍ୱାର୍ଥ ହାସଲ କରନ୍ତି, ଅନ୍ୟ ତେଶିକ ବଞ୍ଚୁ ବା ମରୁ । ସେ ଭାରି ଗାୟନ ପ୍ରିୟ । ଭ୍ରମର ମଧ୍ୟ ଗୁଣୁ ଗୁଣୁ ଶବ୍ଦ କରି ନିରନ୍ତର ଗାନ କରୁଥାଏ । ଭ୍ରମର ମଧୁପାନ କରି ମତୁଆଲା ହୁଏ ଓ ମାଧବ ତ ସବୁବେଳେ ସର୍ବଦା ପ୍ରେମ ପାଗଳ ଅଟନ୍ତି । ଏହି ସବୁ କାରଣରୁ ନଟବରଙ୍କ ସହିତ ଭ୍ରମରର ମିଳିତା । ଯେଉଁଠାରେ ଏହି ଭ୍ରମରଦଳ ଗୁଞ୍ଜନ କରୁଥିବାର ଦେଖନ୍ତି, ଏ ମଧ୍ୟ କାଳବିଳମ୍ବ ନ କରି ସେଠାକୁ ଯାଇ ତାଙ୍କ ପଛରେ ମିଶି ଯାଆନ୍ତି ଓ ତାଙ୍କ ସ୍ୱର ସହିତ ସ୍ୱର ମିଳାଇ ତାଙ୍କ ସଙ୍ଗେ ସଙ୍ଗେ ଚାଲନ୍ତି ।

ସରୋବର ନିକଟରେ ବିଚରଣ କରୁଥିବା ରାଜ-ହଂସଗୁଡ଼ିକୁ ଯଦି ସେ କେବେ ଦେଖନ୍ତି, ତେବେ ତାଙ୍କର ଚାଲିକୁ ଅନୁକରଣ କରିବାକୁ ଲାଗନ୍ତି । ତାଙ୍କ କୂଜନରେ ସ୍ୱର ମିଳାଇ ନିଜେ କୂଜନ କରନ୍ତି ଏବଂ ହସି ହସି ଲୋଟି ଯାଆନ୍ତି । ନିଜେ ହସାନ୍ତି ଓ ସାଥୀମାନଙ୍କୁ ମଧ୍ୟ ହସାନ୍ତି । ଗୋପବାଳକଗଣ ଯେତେବେଳେ ଦୂରକୁ ଚାଲି ଯାଆନ୍ତି, ସେତେବେଳେ ନିଜର ମେଘଗମ୍ଭୀର ବାଣୀରେ ସେମାନଙ୍କର ନାମ ଧରି ଡାକନ୍ତି—"ହେ ତୋକ ! ହେ ଦାମ ! ହେ ସୁଦାମ ! ହେ ସୁବଳ ! ଆସ ଆସ !" ତାଙ୍କର ଗୁରୁଗମ୍ଭୀର ବାଣୀକୁ ଶୁଣି ମୟୂରମାନଙ୍କର ଭ୍ରମ ଜାତ ହୁଏ, ସେମାନେ ମନେ କରନ୍ତି ବୋଧହୁଏ କଳାମେଘ ଏପରି ଗର୍ଜ୍ଜନ କରୁଛି । ତେଣୁ ମେଘ ଗର୍ଜ୍ଜନ କରୁଛି ବୋଲି ମନେକରି ସେମାନେ କୂଜନ କରିବାକୁ ଲାଗନ୍ତି । ପ୍ରେମରେ ନୃତ୍ୟ କରନ୍ତି । ସେତେବେଳେ ଘନଶ୍ୟାମ ନିଜର ପୀତାମ୍ବରକୁ ଦୋଳାଇ ମୟୂରମାନଙ୍କ ନୃତ୍ୟକୁ ଅନୁକରଣ କରି, ଠୁମୁକ୍-ଠୁମୁକ୍ ହୋଇ ନାଚନ୍ତି । ଗୋପାଳ ବାଳକମାନଙ୍କୁ ବିନିଯନ୍ତି । ନିଜେ ସେମାନଙ୍କ ନୃତ୍ୟକୁ 'ସାଧୁ-ସାଧୁ' କହି ପ୍ରଶଂସା କରନ୍ତି ।

କେବେ କେବେ କହନ୍ତି—"ଚକୋରର ବୋଲିକୁ କେଉଁ ଭଲ ବାଳକ ବୋଲି ପାରିବ ? ଚକ୍ରବାକର ସ୍ୱରର ଅନୁକରଣ କେଉଁ ଗୋପବାଳକ କରି ପାରିବ ? ସାରସ ଓ ମୟୂରର ସ୍ୱରରେ କିଏ ସ୍ୱର ମିଳାଇ ପାରିବ ? ସମସ୍ତଙ୍କ ସ୍ୱରକୁ ସେ ଶୁଣନ୍ତି, ପୁନଶ୍ଚ ସ୍ୱୟଂ ସମସ୍ତଙ୍କର ବୋଲିକୁ ଅନୁକରଣ କରି ନିଜେ ବୋଲି ସଖାଗଣଙ୍କୁ ସୁଖୀ କରିବା ପାଇଁ ତାଙ୍କୁ ହସାନ୍ତି । ଇତ୍ୟବସରରେ ସେ ଯଦି କୌଣସି ସିଂହର ଗର୍ଜ୍ଜନ ଶୁଣନ୍ତି, ତେବେ ଭୟଯୁକ୍ତ ଆକୃତି ଧାରଣ କରି ଧାଇଁବାକୁ ଚେଷ୍ଟା କରନ୍ତି ଓ ଚିତ୍କାର କରି କହନ୍ତି—"ଆରେ ସିଂହ ଆସିଲା, ପଳାଇ ଚାଲ ! ଏବେ କହନ୍ତୁ ଦେଖି, ଯାହାଙ୍କ ଭୟରେ ଭୟ ବି ଭୟଭୀତ ହୋଇ ପଳାଇଯାଏ, ତାଙ୍କର ପୁଣି ଭୟ ! ଏହା କେବଳ କ୍ରୀଡ଼ା ନୁହେଁ ତ ଅଛି କ'ଣ ? ଏହାକୁ ଆପଣମାନେ ବିନୋଦିଆଙ୍କର ବିନୋଦ ବ୍ୟତୀତ ଅଛି କ'ଣ ଅବା କହିପାରିବେ ?

ସମୟ ସମୟରେ ସେ କୌଣସି ଅତି ଭାଗ୍ୟବାନ ଗୋପାଳ ବାଳକଙ୍କର କୋଳରେ ମୁଣ୍ଡ ଦେଇ ଶୋଇ ଆରାମ କରନ୍ତି । ପ୍ରଭୁଙ୍କ ସୁଖଦ ସ୍ପର୍ଶ ପାଇ ସେହି ଗୋପବାଳକ ଧନ୍ୟ ହୋଇଯାଏ ଓ ତାଙ୍କ ମସ୍ତକକୁ ନିଜ କୋମଳ ହସ୍ତରେ ଧୀରେ ଧୀରେ ଚିପିବାକୁ ଲାଗେ । ବଳରାମ ଯେବେ କେତେବେଳେ କୌଣସି ଗୋପାଳବାଳକଙ୍କ କୋଳରେ ମୁଣ୍ଡଦେଇ ଶୋଇଯାଆନ୍ତି, ତେବେ ସ୍ୱୟଂ କୃଷ୍ଣ ତାଙ୍କର ଗୌରବର୍ଣ୍ଣ ଚରଣକୁ ନିଜ କୋଳକୁ ଉଠାଇନେଇ ଧୀରେ ଧୀରେ ତାଙ୍କ ଚରଣ ସମ୍ବାହନ କରନ୍ତି । ଯେତେବେଳେ ସେ ବଳରାମଙ୍କ କୋମଳ ପାଦ ତଳିପା ଓ ଗୋଇଠିକୁ ଚିପନ୍ତି, ସେତେବେଳେ ବଳରାମଙ୍କୁ ଅତ୍ୟନ୍ତ ସୁଖ ଲାଗେ । ଆନନ୍ଦରେ ତାଙ୍କ ମୁଖରେ ହସ ଫୁଟି ଉଠେ । ଗୋପ ବାଳକମାନେ ଅନୁଭବ କରନ୍ତି ଯେ ପାଦତଳ ଦବାଇ ଚିପିବା ଦ୍ୱାରା ଅଙ୍ଗୁଳି ତଳର ତଳିପାରେ ସୁଖ ଅନୁଭୂତ ହୁଏ, ଏହା ଦେଖି ସେମାନେ ମଧ୍ୟ ଶ୍ରୀକୃଷ୍ଣଙ୍କର ଚରଣ ସେବା କରିବା ପାଇଁ ଇଚ୍ଛା କରନ୍ତି ।

ଦ୍ୱନ୍ଦ୍ୱ ଯୁଦ୍ଧ କରିବାରେ ତାଙ୍କର ଘୋର ଆଗ୍ରହ । କଳି ତକରାଳ ହେଲେ ସେ ଖୁବ୍ ଆନନ୍ଦିତ ହୁଅନ୍ତି । ପ୍ରତ୍ୟେକ ବନରେ ସେ ମଲ୍ଲଯୁଦ୍ଧ କରିବା ପାଇଁ ଆଖୋଡ଼ା ଘର କରାଇ ଥାଆନ୍ତି । ସେଠାରେ ସେ ଲେଙ୍ଗୁଟି ଭିଡ଼ି ଯାଇ ଦେହୁଁ ଯାଆନ୍ତି । ଦଣ୍ଡ ବୈଠକ କରନ୍ତି ଓ ତାଳ ପକାଇ ସେ ନିଜ ସାଥୀମାନଙ୍କ ସହିତ କୁସ୍ତି କରନ୍ତି । ଅଗ୍ରଜ ମଧ୍ୟ ଗୋପ ବାଳକମାନଙ୍କୁ ନିଜ ନିଜ ମଧ୍ୟରୁ ପୃଥକ୍ କରାନ୍ତି । କେବେ କେବେ ଲଢ଼ୁ ଲଢ଼ୁ ଅଧିକ ବ୍ୟାୟାମ କରିବା ଦ୍ୱାରା ଥକି ପଡ଼ି କୌଣସି ବଡ଼ ଗଛ ତଳେ ବିଶ୍ରାମ ନେଇ ଯାଆନ୍ତି । ସେହି ସମୟରେ କୌଣସି ଭାଗ୍ୟବାନ ଗୋପାଳ ବାଳକ ଦୌଡ଼ିଯାଇ ତାଙ୍କର ଚରଣ-ଦ୍ୱୟକୁ କୋଳରେ ରଖି ପଦସେବା କରନ୍ତି । ଜଙ୍ଘ ଓ ଜାନୁକୁ ମୁଠି ମୁଠି କରି ଚିପନ୍ତି, ପାଦକୁ ଦାବନ୍ତି, ଆଙ୍ଗୁଠି ଫୁଟାଇ ଦିଅନ୍ତି । କେହି କେହି କଅଁଳିଆ ଅମୃତପତ୍ର ଲାଲ ବରପତ୍ର ତୋଳି ଆଣି ତାଙ୍କର ଶେଯ ବିଛାଇ ତାଙ୍କୁ ସେଥିରେ ଶୁଆନ୍ତି । କେହି କେହି ପଦ୍ମପତ୍ର ତୋଳିଆଣି ତହିଁରେ ପଙ୍ଖା ତିଆରି କରି ତାଙ୍କୁ ବିଞ୍ଚି ଦିଅନ୍ତି । କେହି କେହି ବସ୍ତ୍ରରେ ମଧ୍ୟ ବିଞ୍ଚି ଦିଅନ୍ତି । ଶ୍ୟାମସୁନ୍ଦର କୌଣସି କୌଣସି ଗୋପବାଳକ ଆଡ଼କୁ ଚାହିଁ ହସି କରି କହନ୍ତି—"ଭାଇ ! ତୁମ ସ୍ୱର ଖୁବ୍ ମଧୁର, କୌଣସି ଏକ ଗୀତ ଗାଇ ଶୁଣାଅ ତ ଦେଖି ।" ସେତେବେଳେ ସେହି ପରମ ଭାଗ୍ୟଶାଳୀ ଗୋପକୁମାର ସ୍ନେହାର୍ଦ୍ର ଚିତ୍ତରେ ମନ୍ଦ ମଧୁର ସ୍ୱରରେ ଭଗବାନଙ୍କ ଲୀଳାଦିର ଅନୁରୂପ ତାଙ୍କର ଅତ୍ୟନ୍ତ ପ୍ରିୟ ସଙ୍ଗୀତ ଗାନ କରନ୍ତି ।

ସମୟ ସମୟରେ ଦୁଇ ଭାଇ ପ୍ରେମରେ ହାତ ଧରାଧରି ହୋଇ ସାଙ୍ଗ ହୋଇ ବିହାର କରନ୍ତି । କେବେ କେବେ ଶ୍ୟାମସୁନ୍ଦର କାହାରି କାହାରି କାନ୍ଧରେ ହାତ

ପକାଇ ତାଙ୍କ ସାଙ୍ଗରେ ବିହାର କରନ୍ତି । କେବେ କେବେ ନିଜେ ନାଚନ୍ତି ତ କେବେ କେବେ ତାଲସ୍ୱର ସହିତ ବଂଶୀ ବଜାଇ ତହିଁରେ ଗୀତ ଗାଇବା କରି ଦିଅନ୍ତି ।

ଭଗବାନଙ୍କର ସମସ୍ତ ଚେଷ୍ଟା ସରସ ସୁନ୍ଦର ସ୍ନିଗ୍ଧ ତଥା ଭାବମୟ ଥିଲା । ତାଙ୍କଠାରେ ତ ଐଶ୍ୱର୍ଯ୍ୟ ପୂର୍ଣ୍ଣମାତ୍ରାରେ ଥିଲା । ଯେଉଁ ସମସ୍ତ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ ଏକମାତ୍ର ଲକ୍ଷ୍ମୀ, ସେ ସର୍ବଦା ତାଙ୍କ ପଦସେବା କରୁଥିଲେ । ତାଙ୍କର ଅବା କୌଣସି ବସ୍ତୁର ଆକାଙ୍କ୍ଷା ହୁଅନ୍ତା କାହିଁକି ? ସେ ଆପ୍ତକାମ ହୋଇଥିବାରୁ ତାଙ୍କର ସ୍ପୃହା ହିଁ ନ ଥିଲା । କେବଳ ଭକ୍ତଗଣଙ୍କର ସୁଖ ବିଧାନ ପାଇଁ ସାଂସାରିକ ଲୋକଙ୍କ ଦୃଷ୍ଟିରେ ବାସ୍ତବିକ ସ୍ୱରୂପକୁ ଗୋପନ ରଖି ସେ ସାଧାରଣ ଶିଶୁଙ୍କ ଭଳି ସମସ୍ତ ପ୍ରକାର କ୍ରୀଡ଼ା କରୁଥିଲେ । ସେ ନିଜର ଐଶ୍ୱର୍ଯ୍ୟକୁ ଗୋପନ ରଖୁଥିଲେ ମଧ୍ୟ ଅସୁରମାନେ ଆସି ତାଙ୍କୁ ବିବଶ କରିବାକୁ ଚେଷ୍ଟା କରୁଥିବାରୁ ତାଙ୍କ ହାତରେ ମୃତ୍ୟୁ ବରଣ କରୁଥିଲେ । ତାଙ୍କର ଆଉ ସ୍ୱଗ କ'ଣ ସେମାନେ ତ ପୁଣି ତାଙ୍କର ଏକ ପ୍ରକାରର ଭକ୍ତ । ଦ୍ୱେଷ ବୁଦ୍ଧିର ହେଲେ ହିଁ, ସେମାନେ ସର୍ବଦା ତାଙ୍କୁ ଚିନ୍ତା କରୁଥିଲେ । ନିଜେ ଇଚ୍ଛା କରି ସେ ସେମାନଙ୍କୁ ମାରୁଥିଲେ । ଏତେ ବଡ଼ ବଡ଼ ରାକ୍ଷସଙ୍କୁ ସେ ମାରୁଥିବା ଯୋଗୁଁ ସେ ତାଙ୍କ ଐଶ୍ୱର୍ଯ୍ୟକୁ ଯେତେ ଲୁଚାଇବାକୁ ଚେଷ୍ଟା କରୁଥିଲେ ମଧ୍ୟ ତାହା ଲୁଚାଇ ପାରୁ ନ ଥିଲେ । ତାଙ୍କର ଈଶ୍ୱରୀୟ ଲୀଳା ପ୍ରକାଶ ହୋଇ ଯାଉଥିଲା । ଭଗବତ୍ପ୍ରୀତିର ଆସ୍ୱାଦ ଲୋକମାନେ ପାଇ ପାରୁଥିଲେ ।

ସୂତ କହୁଛନ୍ତି—"ମୁନିଗଣ ! ଭଗବାନ ଏହିପରି ପିଲାଳିଆ ଭାବ ଭଙ୍ଗୀ ପ୍ରଦର୍ଶନ କରି ବନରେ ବିହାର କରୁଥିଲେ । ସେହି ସମୟରେ ବଳରାମ ଧେନୁକ ନାମକ ଏକ ଅସୁରକୁ ମାରିଥିଲେ ।"

ଶୌନକ ପଚାରିଲେ—"ଅଚ୍ଛା ସୂତଜୀ ! ଧେନୁକ କିଏ ଥିଲା ଓ ବଳରାମ ତାକୁ କପରି ମାରିଲେ ? ଦୟା କରି କହନ୍ତୁ ତ ।"

ସୂତ କହିଲେ—"ଭଗବନ୍ ! ଧେନୁକାସୁର ଗଧ ରୂପ ଧାରଣ କରି ରହୁଥିଲା । ବଳଦେବ ଯେପରି ତାକୁ ମାରିଲେ, ତାହା ମୁଁ ପ୍ରସଙ୍ଗକ୍ରମେ କହୁଅଛି ।"

### ଛପ୍ପୟ

କବହୁଁ ବଲକେ କରେଂ ପାଦ, ସଂବାହନ ସ୍ୱାମୀ ।
କବହୁଁ ଓଢ଼କେଂ ଭଙ୍ଗେ ଗ୍ୱାଲ ସଗ ଅନ୍ତର୍ଯ୍ୟାମୀ ।।
ମଲ୍ଲଯୁଦ୍ଧ କର କବହୁଁ ସଖାନକୁଁ ପକର ପଛାରେଂ ।
କବହୁଁ ଜାବେଂ ଜୀତ, କବହୁଁ ଗୋପନତେଂ ହରେ ।।
ବ୍ରଜ ଐଶ୍ୱର୍ଯ୍ୟ ଛୁପାଇକେଂ, ତ୍ରିଭୁବନପତି ହରି ରମାପତି ।
ବାଲସୁଲଭ କ୍ରୀଡ଼ା କରହିଁ, ସୁଖ ବ୍ରଜ-ଜୀବନ ଦେହିଁ ଅତି ।।



# ଧେନୁକାସୁର ଉଦ୍ଧାର ଲୀଳା

ରାମ ରାମ ମହାବାହୋ କୃଷ୍ଣ ଦୁଷ୍ଟନିବର୍ହଣ ।
ଇତୋଽବିଦୂରେ ସୁମହଦ୍ ବନଂ ତାଲାଳିସଂକୁଲମ୍ ॥
ଫଳାନି ତତ୍ର ଭୂରୀଣି ପତନ୍ତି ପତିତାନି ଚ ।
ସନ୍ତି କିନ୍ତ୍ୱବରୁଦ୍ଧାନି ଧେନୁକେନ ଦୁରାତ୍ମନା ॥

(ଶ୍ରୀ ଭା ୧୦ ସ୍କ, ୧୫ ଅ, ୨୧, ୨୨ ଶ୍ଳୋକ)

## ଛପ୍ପୟ

ଏକ ଦିବସ ବନ ଗୟେ ଗୋପ ବୋଲେ—ସୁନ କନ୍ହାଁ ।
ବଲୁଆ ଭୈୟା ସୁନୋ ଆଜ ମଚଲେ ଅତି ମନୁଆଁ ॥
ପକେ ତାଲ କୀ ଗନ୍ଧ ସବନକୋ ତନ୍ତ୍ରୁ ଚୁରାବେ ।
ମନମହଁ ଉଠେ ଉମଂଗ ଜୀଭ ପାନୀ ଭର ଲାବେ ॥
ପକେ ପକେ ଫଲ ପରେ ପର, ରହେ ଧେନୁକାସୁର ତହାଁ ।
ମାରେ ପିଛଲେ ପଗନ ଖର, ଜୋ ଜାବେ ପ୍ରାନୀ ବହାଁ ॥

ଭଗବାନଙ୍କର ଯେତେବେଳେ ଯେପରି ଲୀଳା ରଚନା କରିବାକୁ ହୁଏ, ପ୍ରାଣୀମାନଙ୍କ ହୃଦୟରେ ସେତେବେଳେ ସେହିପରି ପ୍ରେରଣା ସେ ଦେଇ ଥାଆନ୍ତି । ସେ ସ୍ୱୟଂ ନିଜର ଇଚ୍ଛା ଅନୁସାରେ ସମସ୍ତଙ୍କୁ ନଚାଉ ଅଛନ୍ତି । ଅସୁରମାନେ ତାଙ୍କର ପ୍ରେରଣାରେ ସବୁକିଛି କରନ୍ତି ଓ ସୁରମାନେ ମଧ୍ୟ ତାଙ୍କର ପ୍ରେରଣାନୁସାରେ ନିଜ ନିଜର କର୍ତ୍ତବ୍ୟ ସମ୍ପାଦନ କରନ୍ତି । ସେହି ଘନଶ୍ୟାମ ହିଁ ସମସ୍ତଙ୍କର ନିୟାମକ ଓ ସେହି ହିଁ ସମସ୍ତଙ୍କର ପ୍ରେରକ ପ୍ରଭୁ ଅଟନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ଭଗବାନ ସବୁଦିନ ଭଳି ପ୍ରାତଃକାଳରେ ଗୋପବାଳକମାନଙ୍କ ସଙ୍ଗେ ବନକୁ ଗୋ-ବତ୍ସ ନେଇ ଆସନ୍ତି ଓ ସନ୍ଧ୍ୟାହେଲେ ଗୋ-ବତ୍ସଙ୍କୁ ନେଇ ଘରକୁ ବାହୁଡ଼ନ୍ତି । ଦିନେ ଭଗବାନ ତାଳବନ ସମୀପସ୍ଥ ବନରେ ବଳଦେବଙ୍କ ସହିତ ଗୋରୁ ଚରାଉ ଥିଲେ । ତାଙ୍କ ସହିତ ଶ୍ରୀଦାମ, ସୁବଳ ତୋକକୃଷ୍ଣ

ଆଉ ଆହୁରି ଅନେକ ବାଳକ ମଧ୍ୟ ଥିଲେ । ସେହି ବାଳକମାନେ ବଳରାମ ଓ କୃଷ୍ଣଙ୍କର ଶକ୍ତି ସମ୍ବନ୍ଧରେ ସାମାନ୍ୟ କିଛି ଅବଗତ ଥିଲେ । ଅନେକ ଅସୁରଙ୍କୁ ନିଧନ କରିବା ପରେ ସେମାନଙ୍କର ଦୃଢ଼ ବିଶ୍ୱାସ ହେଲା ଯେ, ଏ ଦୁହେଁ ଅପରାଜିତ । ଏ ଦୁହିଙ୍କୁ କେହି ହରାଇ ପାରିବେ ନାହିଁ କି ମାରି ପାରିବେ ନାହିଁ । ତେଣୁ ସେମାନେ ଅତି ସ୍ନେହରେ ଦୁଇ ଭାଇଙ୍କୁ କହିଲେ—"ହେ ବିଶାଳବାହୁ ବଳ ଭାଇ ! ହେ ଦୁଷ୍ଟଦର୍ପଘ୍ନ କୃଷ୍ଣ ! ଆମ୍ଭେମାନେ ଗୋଟିଏ କଥା ପଚାରିବାକୁ ଇଚ୍ଛା କରୁଛୁ, ଯଦି ଆଦେଶ କରନ୍ତି, ତେବେ କହିବୁ ।

ଭଗବାନ ଶ୍ରୀକୃଷ୍ଣ ସରଳତାର ସହିତ ହସି ହସି କହିଲେ—"କହ ଭାଇ ! କି କଥା କହିବ କହ ?"

ସଖାଗଣ କହିଲେ—"ଆମ ସମ୍ମୁଖରେ ଏହା ଏକ ଅତି ସୁନ୍ଦର ତାଳବନ ବିରାଜମାନ, ସେଥିରେ ଅତି ସୁନ୍ଦର ସୁନ୍ଦର ପକ୍ୱ ଫଳ ଭରି ରହିଛି । ସେଥିମଧ୍ୟରୁ ଅନେକ ଫଳ ଆପେ ଆପେ ତଳେ ଖସିପଡ଼ୁଛି ?"

ଭଗବାନ କହିଲେ—"ଫଳ ତ ପଡ଼ିବାର କଥା ପଡ଼ୁଛି, ତେବେ ତୁମ୍ଭମାନଙ୍କର ପ୍ରୟୋଜନ କ'ଣ କହୁନା କାହିଁକି ?

ସଖାମାନେ କହିଲେ—"କ'ଣ କହିବୁ ଭାଇ ! ଏହି ପକ୍ୱ ଫଳର ସୁବାସ ବହନ କରି ପବନଦେବ ବାୟୁମଣ୍ଡଳରେ ତାହା ଖେଳାଇ ଦେଉଛନ୍ତି, ତାହା ସୁଗନ୍ଧରେ ଚତୁର୍ଦ୍ଦିଗ ସୁଗନ୍ଧିତ ହେଉଅଛି ।"

ଭଗବାନ କହିଲେ—"ପକ୍ୱଫଳରୁ ତ ସୁଗନ୍ଧ ବାହାରିବା ସ୍ୱାଭାବିକ, ତୁମ୍ଭମାନଙ୍କର କ'ଣ ଆବଶ୍ୟକ ସ୍ପଷ୍ଟରୂପେ କହୁନା, କଥାକୁ ବୁଲାଇ ବୁଲାଇ ଅଧାପନ୍ତରିଆ ଭାବରେ କହୁଛ କାହିଁକି ?"

ସଖାମାନେ କହିଲେ—"ଆମେ ଆଉ ସ୍ପଷ୍ଟ କ'ଣ କହିବୁ, ତୁ ତ ସବୁ କଥା ଜାଣୁ । ସେହି ଫଳ ପାଇଁ ଆମ ଜିଭରୁ ଲାଳ ବହିଲାଣି । ଆମେ ଆଗରୁ ଏପରି ଫଳ କେବେ ଖାଇ ନାହୁଁ । ତାହାର ସୁଗନ୍ଧରେ ହିଁ ଆମ୍ଭମାନଙ୍କର ଚିତ୍ତ ଚଞ୍ଚଳ ହୋଇ ଉଠୁଛି ।"

ଭଗବାନ କହିଲେ—"ତେବେ ଚାଲ, ଏଥିରେ କହିବାର କ'ଣ ଅଛି, ଗୋରୁମାନେ ଏହିଠାରେ ଚରି ଆସନ୍ତୁ, ଆମେ ସବୁ ପେଟ ପୂରାଇ ଚାଲ ପାଚିଲା ତାଳ ଖାଇବା ।"

ସଖାମାନେ ଅନ୍ୟମନସ୍କ ହୋଇ କହିଲେ—"ଆରେ, ଭାଇ ! ଏପରି କଲେ ଭଲ ହୁଅନ୍ତା, ଏ ପର୍ଯ୍ୟନ୍ତ ଫଳଗୁଡ଼ିକ ତ ଭରି ରହିଛି । ଲୋକମାନେ ଖାଇ ତାହା ଶେଷ କରି

ଦେବାକୁ ଅନେକ ଦିନ ଲାଗିବ । ସେଠାରେ ତ ଏକ ଦୁଷ୍ଟ ଅସୁର ରହୁଛି । ସେ କାହାରିକୁ ସେ ବନ ମଧ୍ୟକୁ ପ୍ରବେଶ କରାଇ ଦେଉନାହିଁ । ଯେ ଯାଉଛି ଅସୁର ତାକୁ ମାରି ଖାଇ ଯାଉଛି । ବହୁତ ଲୋକ ତା' ହାତରେ ମଲେଣି । ମନୁଷ୍ୟ କଥା ତ ସ୍ୱତନ୍ତ୍ର; କିନ୍ତୁ କୌଣସି ପଶୁ ପକ୍ଷୀ ମଧ୍ୟ ସେଠାକୁ ଭୟରେ ଯାଉ ନାହାନ୍ତି ।"

ଭଗବାନ୍ ପଚାରିଲେ—"ସେ କେଉଁ ଅସୁର ? ତାହାର ରୂପ କିପରି ସେ ଲୋକମାନଙ୍କୁ କାହିଁକି ଖାଏ ?"

ସଖାମାନେ କହିଲେ—"ଭାଇ ! ସେ ଅସୁର ଗଧରୂପ ଧାରଣ କରିଥାଏ । ତା' ସହିତ ଆହୁରି ଅନେକ ପରିବାର, କୁଟୁମ୍ବ ରହିଛନ୍ତି । ସେମାନେ ସମସ୍ତେ ସେହି ଗଧରୂପ ଧାରଣ କରିଛନ୍ତି । ଧେନୁକାସୁର ସବୁଠାରୁ ଅଧିକ ବଳବାନ୍ । ସେଠାରେ ସେ ନିଜର ବଳବାନ୍ ସାଥୀ ଅସୁରଙ୍କ ସହିତ ସର୍ବଦା ବୁଲୁଥାଏ । ତା' ଭୟରେ ସେହି ବନକୁ କୌଣସି ମନୁଷ୍ୟ, ପଶୁ, ପକ୍ଷୀ ଯାଆନ୍ତି ନାହିଁ । ଆମ୍ଭେମାନେ ଯଦି ଗିବା, ତେବେ ସେ ଆମ୍ଭମାନଙ୍କୁ ମଧ୍ୟ ଖାଇଦେବ ।"

ଭଗବାନ କହିଲେ—"ଆରେ, ଯାଉନା କାହିଁକି ? ସାମାନ୍ୟ ଜଙ୍ଗଲି ଗଧଗୁଡ଼ାଙ୍କୁ ତୁମ୍ଭମାନଙ୍କର ଏତେ ଭୟ ? ଏପରି ଗଧ ତ କେତେ ବୁଲୁଛନ୍ତି । ଚାଲ—ଚାଲ, ମୁଁ ସବୁ ଗଛକୁ ଧରି ଝୁଙ୍କାଇ ଦେବି ।"

ଏହାଶୁଣି ସମସ୍ତ ଗୋପବାଳକ ଆନନ୍ଦିତ ହୋଇ କହିଲେ, ଭାଇ ! ଭଗବାନ କରନ୍ତୁ, ତୁ ଯୁଗେ ଯୁଗେ ଅମର ହୁଅ । ସେହି ଫଳର ସୁଗନ୍ଧରେ ଆମ୍ଭମାନଙ୍କର ଚିତ୍ତ ତାହା ପାଇବା ପାଇଁ ଅତ୍ୟନ୍ତ ଲାଳାୟିତ ହୋଇ ଉଠିଲାଣି । ଚାଲ ଭାଇ, ଆଜି ଉଦର ଭରି ତାଳଫଳଗୁଡ଼ିକୁ ଖାଇବା ।"

ଭଗବାନ କୃଷ୍ଣ ଓ ବଳରାମ ଉଭୟେ ଅତ୍ୟନ୍ତ ଉତ୍ସାହିତ ହୋଇ ଉଚ୍ଚ ସ୍ୱରରେ କହିଲେ—"ଆଚ୍ଛା, ଠିକ୍ ଅଛି, ଚାଲ ସବୁ ଗଧଙ୍କୁ ଦେଖିନେବା ।" ଏହା କହି ଦୁହେଁ ସଖାମାନଙ୍କୁ ଖୁସି କରାଇବା ପାଇଁ ସେମାନଙ୍କ ସହିତ ହସି ଖେଳି ତାଳବନରେ ଯାଇ ପହଞ୍ଚିଲେ ।

ବନ ମଧ୍ୟରେ ପହଞ୍ଚି ମହାବଳଶାଳୀ ବଳରାମ ତାଳଗଛକୁ ଧରି ହାତ ଗଛ ଝୁଙ୍କାଇଲା ପରି ହଲାଇ ଦେଲେ । ବୃକ୍ଷ ହଲିବା କ୍ଷଣି ତହିଁରେ ଥିବା ଅସଂଖ୍ୟ ଫଳ ଦୁଲ୍‌ଦାଲ୍ ହୋଇ ତଳେ ଗଦାହୋଇ ପଡ଼ିଲା ।

ଗଧ ସାଜିଥିବା ଧେନୁକାସୁର ନିଜ ସାଥୀମାନଙ୍କ ସହିତ ଏକାନ୍ତରେ ବସିଥିଲା । ସେ ଯେତେବେଳେ ବୃକ୍ଷରୁ ଝଡ଼ି ପଡ଼ୁଥିବା ଫଳଗୁଡ଼ିକର ଦୁଲ୍‌ଦାଲ୍ ଶବ୍ଦ ଶୁଣିଲା,

ସେତେବେଳେ ସଙ୍ଗେ ସଙ୍ଗେ ଭୟାନକ ଗର୍ଜ୍ଜନ ତର୍ଜ୍ଜନ କରି, ପୃଥ୍ୱୀ ଦୋହଲାଇ କୃଷ୍ଣ ଓ ବଳରାମଙ୍କ ଆଡ଼କୁ ଧାଇଁଲା । ଆସିବା ମାତ୍ରେ ସେ ନିର୍ଦ୍ଦୟରେ ବଳରାମଙ୍କର ବକ୍ଷ ସ୍ଥଳରେ ଦୁଇନାତ ପକାଇ ନିଜର ଗର୍ଦ୍ଦଭ ସ୍ୱଭାବ ଅନୁସାରେ ପଛକୁ ହଟିଗଲା । ଏହାପରେ କ୍ରୋଧରେ ଗଧଙ୍କ ଭଳି ହେଁଚୁ-ହେଁଚୁ-ଶବ୍ଦ କରିବାକୁ ଲାଗିଲା । ବଳରାମ କ୍ରୋଧପୂର୍ଣ୍ଣ ଦୃଷ୍ଟିରେ ତାକୁ ଚାହିଁ ରହିଥିଲେ । ଏହି ସମୟରେ ସେ ପୁନଶ୍ଚ ଘୋର ଶବ୍ଦ କରି ଅତି ବେଗରେ ଧାଇଁ ଆସି ବଳରାମଙ୍କ ପୃଷ୍ଠ ଦେଶରେ ଖୁବ୍ ଜୋର୍‌ରେ ନାତ ମାରିଲା ଓ ଗୋଡ଼ଗୁଡ଼ିକ ପୁନଶ୍ଚ ଗର୍ଜ୍ଜନ କରିବାକୁ ଲାଗିଲା ।

ସଙ୍କର୍ଷଣାବତାର ଭଗବାନ ବଳଦେବଙ୍କର ଏଥିରେ ଭୀଷଣ କ୍ରୋଧ ଜାତ ହେଲା । ସେ ନିଜର ଦୁଇ ହାତରେ ଗଧର ପଛ ଦୁଇଗୋଡ଼କୁ ଧରିନେଲେ ଓ ଅଳ୍ପ କେତେଥର ତାକୁ ଚକ୍ରଭଳି ଶୂନ୍ୟରେ ଘୂରାଇଲେ । ଘୂରାଇବା ଅବସ୍ଥାରେ ହିଁ ତାହାର ପ୍ରାଣବାୟୁ ଉଡ଼ିଯାଇଥିଲା । ଏହାପରେ ବଳରାମ ସେହି ଅସୁରର ମୃତ ଶରୀରକୁ ଏକ ତାଳଗଛ ଉପରକୁ ଫିଙ୍ଗି ଦେଲେ । ତାହାର ବେଗର ଆଘାତରେ ସେହି ବିରାଟ ତାଳଗଛଟି ଥରିଗଲା ଓ ଭାଙ୍ଗିଯାଇ ଭୂଷ୍ କରି ତଳେ ପଡ଼ିଗଲା । ତା' ଆଘାତରେ ଅନ୍ୟଗଛ ମଧ୍ୟ ଭାଙ୍ଗି ପଡ଼ିଲା । ଅନ୍ୟ ଗଛର ଆଘାତରେ ତା' ପାଖ ଗଛଟି ଓ ତା' ଆଘାତରେ ଚତୁର୍ଥ ଗଛଟି ଭାଙ୍ଗିପଡ଼ିଲା । ଏହିପରି ଭାବରେ ଗୋଟିକ ପରେ ଗୋଟିଏ ତାଳଗଛ ଭାଙ୍ଗିଯାଇ ବହୁତ ସଂଖ୍ୟାରେ ଭୂତଳଶାୟୀ ହେଲେ । ଶ୍ରୀ ବଳରାମଙ୍କ ଦ୍ୱାରା ଲୀଳା ପୂର୍ବକ ମୃତ ହୋଇ ତାଳଗଛ ଉପରକୁ ପକା ହୋଇଥିବା ଧେନୁକାସୁରର ଶରୀର ଭୂପତିତ ହେବାମାତ୍ରେ ଭୂକମ୍ପନ ସୃଷ୍ଟି ହୋଇଥିଲା । ବତାସ ବା-ଭୂକମ୍ପନ ହେଲେ ଯେପରି ବହୁତ ବୃକ୍ଷ ଉପୁଡ଼ିପଡ଼େ, ସେହିପରି ସେଠାରେ ଥିବା ଫଳପୂର୍ଣ୍ଣ ଅନେକ ବଡ଼ ବଡ଼ ତାଳଗଛ ଉପୁଡ଼ି ପଡ଼ିଲା । ଏହି ପ୍ରକାର ଗଧରୂପ ଧାରଣ କରିଥିବା ଧେନୁକାସୁର ନିଜ ସମ୍ମୁଖରେ ଭଗବାନଙ୍କୁ ଦର୍ଶନ କରି ମହାମୁନି ଦୁର୍ବାସାଙ୍କ ଶାପରୁ ମୁକ୍ତ ହୋଇ ପରମ ପଦପ୍ରାପ୍ତ ହେବାର ଅଧିକାରୀ ହୋଇ ପାରିଲା ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଏହି ଧେନୁକ ଅସୁର ପୂର୍ବରୁ କିଏ ଥିଲା ଓ ସେ ଗଧ କିପରି ହେଲା ? ଦୁର୍ବାସା ତାକୁ କାହିଁକି ଶାପ ଦେଇଥିଲେ ? ଆପଣ କୃପାକରି ଆମ୍ଭମାନଙ୍କୁ ତାହା କହନ୍ତୁ ଓ ଏ ପ୍ରସଙ୍ଗରେ କି କାହାଣୀ ଅଛି, ତାହା ମଧ୍ୟ ଶୁଣାନ୍ତୁ ।''

ସୂତ ଅତି ଗମ୍ଭୀର ହୋଇ କହିଲେ—''ଭଗବନ୍ ! ଏହି ଧେନୁକାସୁର ପୂର୍ବ-ଜନ୍ମରେ ଅସୁରରାଜ ବଳିଙ୍କର ପୁତ୍ର ଥିଲା । ଯେଉଁ ସକାଶେ ଦୁର୍ବାସା ମୁନି ତାକୁ ଶାପ ଦେଇଥିଲେ ତାହା ମୁଁ ଆପଣମାନଙ୍କୁ କହୁଛି । ଆପଣମାନେ ବର୍ତ୍ତମାନ ଏହି ଶିକ୍ଷାପ୍ରଦ କଥା ସାବଧାନ ହୋଇ ଶୁଣନ୍ତୁ ।''

### ଛପ୍ପୟ

ହରି ହଁସି ବୋଲେ ଚଲେ ତାଲଫଲ ସବ ମିଲି ଖାବେଁ ।
ଯୋ କଛୁ ବୋଲେ ଅସୁର ମାରିକେଂ ତାହି ଗିରାବେଂ ।।
ଯୌଂ କହି ବଲ ଅରୁ ଶ୍ୟାମ ତାଲବନ ମାହିଁ ସିଧାୟେ ।
ପାଦପ ପକରି ହିଲାୟ ତାଲଫଲ ବହୁତ ଗିରାୟେ ।।
ସୁନତ ଶବ୍ଦ ଧେନୁକ ଅସୁର, ଆଇ ଦୁଲତ୍ତୀ ଝାଡ଼ିକେଂ ।
ଭଗ୍ୟୋ ଫିର୍ୟୋ ବଲ ପକରିକେଂ, ବୃକ୍ଷନି ଫେଂକ୍ୟୋ ମାରିକେଁ ।।



## ଧେନୁକାସୁରର ଶାପ କଥା

ସୋଽତିବୀର୍ଯ୍ୟୋଽସୁରୋ ରାମ ହେ କୃଷ୍ଣ ଖରରୂପଧୃକ୍ ।
ଆତ୍ମତୁଲ୍ୟବଲୈରନ୍ୟୈର୍ଜ୍ଞାତିଭିର୍ବହୁଭିର୍ବୃତଃ ।।

(ଶ୍ରୀ ଭା ୧୦ସ୍କ. ୧୫ଅ, ୨୩. ଶ୍ଳୋକ)

### ଛପ୍ପୟ

ଅସୁର ସାହସିକ ବଲୀ ଯୁବକ ବଲବନ୍ତ ଅତି ସୁନ୍ଦର ।
ଗୟୋ ଏକ ଦିନ ଦୈତ୍ୟ ଗନ୍ଧମାଦନ ଗିରି ଊପର ।।
ଲଖି ତିଲୋତ୍ତମା ତହାଁ କାମସର ଆହତ କୀନ୍ହୋଂ ।
ସୋଉ ବ୍ୟାକୁଲ ଭଈ ସାହସିକ ସଂଗମ ଦୀନ୍ହୋଂ ।।
ଉଭୟ ଗିରି ଗୁହାମହଁ ଗୟେ, କରେଂ କାମ କ୍ରୀଡ଼ା ତହାଁ ।
ଦୁର୍ବାସା ମୁନି ପ୍ରଥମ ହୀ, ଧ୍ୟାନମଗ୍ନ ବୈଠେ ଜହାଁ ।।

ସାଂସାରିକ ବିଷୟରେ ଜୀବର ସ୍ୱାଭାବିକ ପ୍ରବୃତ୍ତି ରହିଥାଏ । ଇନ୍ଦ୍ରିୟମାନଙ୍କଦ୍ୱାରା ଭୋଗ୍ୟ ପଦାର୍ଥଗୁଡ଼ିକର ଧ୍ୟାନ କରୁ କରୁ ସେଥିରେ ଜୀବନର ଭୋଗ ଲାଳସା ବୃଦ୍ଧି ପାଇଥାଏ । ଅର୍ଥାତ୍ ଆସକ୍ତି ବୃଦ୍ଧି ପାଇଥାଏ । ଅସୁର ମଧ୍ୟ ମନରେ କାମଭାବ ଜାଗ୍ରତ

ହୁଏ । ମନରେ କାମଭାବ ଉତ୍ପନ୍ନ ହେବାଦ୍ୱାରା ଇନ୍ଦ୍ରିୟ ଚଞ୍ଚଳ ହୋଇ ଉଠେ । ଏହିପରି ଭାବରେ ପ୍ରତ୍ୟେକ ଇନ୍ଦ୍ରିୟ ପ୍ରବଳ ହୋଇ ଉଠି ଥାଆନ୍ତି । କିନ୍ତୁ ତନ୍ମଧ୍ୟରୁ ରସନା ଓ ଉପସ୍ଥ ଏହି ଦୁଇ ଇନ୍ଦ୍ରିୟ ଅତ୍ୟନ୍ତ ପ୍ରବଳ ଅଟନ୍ତି । ମନରେ କାମଭାବ ଉତ୍ପନ୍ନ ହେବାକ୍ଷଣି ପ୍ରାଣୀ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ନ୍ତି । ଯେପରି ତୋଫାନ ବାୟୁ କଦଳୀ ବୃକ୍ଷକୁ ଝାଙ୍କି ଝାଙ୍କି ପକାଏ, ସେହିପରି ମନରେ କାମ ପ୍ରବେଶ କରିବାମାତ୍ରେ ସାରା ଶରୀର ରୋମାଞ୍ଚିତ ହୋଇ ଉଠେ । ଯେପରି ମନ୍ଥନ ଦଣ୍ଡ ଗାଢ଼ ଦଧିକୁ ଘର୍‌ଘର୍ କରି ମନ୍ଥି ପକାଏ, ସେହିପରି ଏହି ଅନଙ୍ଗ ପ୍ରାଣୀମାନଙ୍କୁ—ବିଶେଷ କରି ଯୁବକ ଯୁବତୀମାନଙ୍କ ମନକୁ ବଳପୂର୍ବକ ମନ୍ଥନ କରେ । ଏଥିପାଇଁ କାମର ଅନ୍ୟନାମ ମନ୍ମଥ । କାମବଶ ପ୍ରାଣୀ ଧର୍ମ, କର୍ମ, ଲଜ୍ଜା, ସହିସ, ପ୍ରତିଜ୍ଞା, କର୍ତ୍ତବ୍ୟ, ମର୍ଯ୍ୟାଦା ଓ ସଦାଚାର ସବୁକିଛି ଭୁଲିଯାଏ । ସେ ବିବଶ ହୋଇପଡ଼େ । ଯେଉଁ ବଳୀ ପୁରୁଷ କେବେହେଲେ କେଉଁଠାରେ ପରାଜିତ ହୋଇ ନ ଥାଏ, ସେ କାମ ନିକଟରେ ନତମସ୍ତକ ହୁଏ । ସେ କାମବଶ ହୋଇଯାଏ । କେବଳ ନାରାୟଣ ଋଷିଙ୍କୁ ଛାଡ଼ି କାମ ସମସ୍ତଙ୍କୁ ଅଧୀନ କରି ରଖିପାରିଛି । ସଂସାରରେ ଏପରି ଲୋକ ବିରଳ, ଯାହାଙ୍କ ମନରେ ଆଦୌ କାମଭାବ ଉତ୍ପନ୍ନ ନ ହୋଇଛି ; ତେଣୁ ତାହାର ଅନ୍ୟ ଏକ ନାମ ମନସିଜ । ଏହା ପ୍ରଥମେ ମନରେ ଉତ୍ପନ୍ନ ହୋଇ ଇନ୍ଦ୍ରିୟମାନଙ୍କୁ ସଙ୍ଗେ ସଙ୍ଗେ ନିଜ ଅକ୍ତିଆର କରିନିଏ । ସେହି କାରଣରୁ ବ୍ରହ୍ମାଦି ଦେବତା, ଇନ୍ଦ୍ରାଦି ଲୋକପାଳ, ବିଶ୍ୱାମିତ୍ର ପରାଶରଙ୍କ ଭଳି ମହାନ୍ ଋଷିମାନେ ଦୁଃଖୀ ଅଟନ୍ତି । ସେ ସମସ୍ତଙ୍କ ଉପରେ ତାହାର ଆଧିପତ୍ୟ ବିସ୍ତାର କରି ରଖିଅଛି । ମନୁଷ୍ୟ କଥା ତ ସ୍ୱତନ୍ତ୍ର, ସେମାନେ ସଂସାରୀ ହୋଇଥିବାରୁ ସେମାନଙ୍କଠାରେ କିଛି ନା କିଛି ଦୋଷ ଦୁର୍ବଳତା ଅବଶ୍ୟ ରହିବ ହିଁ ରହିବ; କିନ୍ତୁ ମୁନି ଋଷିମାନେ ସର୍ବସ୍ୱ ତ୍ୟାଗକରି ବନକୁ ଯାଇ ତପସ୍ୟା କରୁଥିଲେ ମଧ୍ୟ ସେହି ଦୁଷ୍ଟର ଚକ୍ରାନ୍ତରେ ପଡ଼ିଯାଆନ୍ତି । ଜୀବର ଭୁଲ୍ ହୁଏ, ସେଥିରେ କିଛି କହିବାର ନାହିଁ, ମାତ୍ର ସମସ୍ତ ସମୟରେ ଈଶ୍ୱର ତଥା ଦେବତାମାନେ ମଧ୍ୟ ବଡ଼ ବଡ଼ ଭୁଲ୍ କାମ କରି ଥାଆନ୍ତି । ଭୋଳାନାଥ ଶଙ୍କର ଏହି ଦୁଷ୍ଟ କାମଦେବକୁ କ୍ରୋଧରେ ମାରି ଦେଇଥିଲେ; କିନ୍ତୁ ପୁନଶ୍ଚ ଦୟାରେ ବଶୀଭୂତ ହୋଇଗଲେ । ଅଙ୍ଗ ରହିତ କରି ମଧ୍ୟ ତାକୁ ପୁନଃ ସମସ୍ତ ପ୍ରାଣୀଙ୍କଠାରେ ରହିବା ପାଇଁ ବର ପ୍ରଦାନ କଲେ । ସେ ଅଙ୍ଗଥାଇ ଯେତେ ବଳବାନ୍ ହୋଇଥିଲା, ଅନଙ୍ଗ ହୋଇ ମଧ୍ୟ ତା'ଠାରୁ ଅଧିକ ବଳବାନ୍ ହୋଇଗଲା । ଏହି ଦୁଷ୍ଟ ଅନଙ୍ଗ ହେଉଛି ସମସ୍ତ ଅନର୍ଥର ମୂଳ । ଏହାର କୌଣସି ରୂପ ନାହିଁ, ରଙ୍ଗ ନାହିଁ, ଆକାର ନାହିଁ, ପ୍ରକାର ନାହିଁ, ସମସ୍ତ ନାହିଁ, ସଂକଳ୍ପ-ମାତ୍ରେ ସେ ଜାଗିଉଠେ । ଯେ ସଂକଳ୍ପହୀନ ହୋଇଛନ୍ତି, ଯାହାଙ୍କର ମନରେ କେବେ-ହେଲେ ସଙ୍କଳ୍ପ ବିକଳ୍ପ ସ୍ଥାନ ପାଇନାହିଁ, ସେ ତାଙ୍କ ପାଖ ପଶିପାରେ ନାହିଁ । ମାଟିରେ ଘଟ ତିଆରି ହୁଏ, ଏହା ସତକଥା ; କିନ୍ତୁ ମାଟି ନ ଥିଲେ ଘଟ କିପରି ତିଆରି ହେବ ? ସେହିପରି ସଂକଳ୍ପ ନ ଥିଲେ କାମର ପ୍ରଶ୍ନ ଉଠୁଛି କେଉଁଠି ? କିନ୍ତୁ ସଙ୍କଳ୍ପ

ବିକଳାଙ୍ଗ ଏହିପରି ବ୍ୟକ୍ତି ତ ଏ ସଂସାରରେ ବିରଳ । ଏହି କାମ ଭକ୍ତ, ଅଭକ୍ତ ସମସ୍ତଙ୍କୁ କଷ୍ଟ ଦିଏ ସତ; କିନ୍ତୁ ଉଭୟଙ୍କରେ ଏତିକି ପାର୍ଥକ୍ୟ ଯେ, ଅଭକ୍ତ ତାହାର ଚକ୍ରାନ୍ତରେ ଥରେ ପଡ଼ିଗଲେ ଚଉରାଶି ଲକ୍ଷ ଯୋନି ଭ୍ରମଣ କରି ଅସଂଖ୍ୟ ଜନ୍ମ ପର୍ଯ୍ୟନ୍ତ ଦୁଃଖ ଭୋଗକରେ । ଭକ୍ତଙ୍କ ମନରେ ଏ ସ୍ଥାନ ପାଇଲେ ସେମାନେ କିଛିଦିନ କ୍ଲେଶ ଭୋଗକରି କାହାରି ଦ୍ୱାରା ଶାପଗ୍ରସ୍ତ ହୋଇ ଅତିଶାପ ବା ଅତି ସନ୍ତୋଷ ଦ୍ୱାରା ଶେଷରେ ତାଙ୍କୁ ପ୍ରଭୁଙ୍କ ପାଦପଦ୍ମରେ ପହଞ୍ଚାଇ ଦିଅନ୍ତି । ଭଗବାନଙ୍କଠାରେ ଯଦି ତାଙ୍କୁ ଯୋଗ କରି ଦିଆଯାଏ, ତେବେ ମୋକ୍ଷର ଶ୍ରେଷ୍ଠ ସାଧନରୂପେ ତାହା ପରିଗଣିତ ହୁଏ । ଏଥିପାଇଁ ତାଙ୍କର ଦେବ ସଂଜ୍ଞା । ଯଜ୍ଞାଦିରେ ତାଙ୍କର ପୂଜା କରାଯାଏ । ବସନ୍ତ ଋତୁରେ ତାଙ୍କର ପୂଜା ପର୍ବ ପାଳିତ ହୁଏ ଓ ଆମ୍ବ ଫୁଲରେ ପୂଜନ କରିବାରେ ଅନନ୍ତ ଫଳ ଲାଭ ହୁଏ ବୋଲି କଥିତ ଅଛି ।

ସୂତ କହୁଛନ୍ତି—"ମୁନିଗଣ ! ଆପଣମାନେ ମୋତେ ପଚାରିଥିଲେ ଯେ ଧେନୁକାସୁରକୁ ଦୁର୍ବାସା ମୁନି କାହିଁକି ଶାପ ଦେଇଥିଲେ । ସେ ପ୍ରସଙ୍ଗରେ ମୁଁ ଆପଣ-ମାନଙ୍କୁ ବର୍ତ୍ତମାନ କହୁଅଛି । ଆପଣମାନେ ସେହି ଶିକ୍ଷାପ୍ରଦ ପୁଣ୍ୟ ପ୍ରସଙ୍ଗକୁ ସମାହିତ ଚିତ୍ତରେ କୃପା କରି ଶ୍ରବଣ କରନ୍ତୁ ।"

ଧର୍ମାତ୍ମା ଅସୁରରାଜ ମହାରାଜ ପ୍ରହ୍ଲାଦଙ୍କ ପୁତ୍ର ଥିଲେ ମହା ଯଶସ୍ୱୀ ବିରୋଚନ । ସେ ଏତେ ସତ୍ୟ ପ୍ରତିଜ୍ଞ ଓ ବ୍ରାହ୍ମଣ ଭକ୍ତ ଥିଲେ ଯେ, ଥରେ ଦେବତା ବ୍ରାହ୍ମଣ ବେଶରେ ପ୍ରାଣଭିକ୍ଷା କରିବାକୁ ତାଙ୍କ ନିକଟକୁ ଆସିଥିଲେ । ଜଣା ଯାଇଥିଲା ଯେ, ବ୍ରାହ୍ମଣ ବେଶ-ଧାରୀ ତା'ର ଶତ୍ରୁ ଦେବତା ଅଟନ୍ତି । ତଥାପି ବେଶ ଉପରେ ଶ୍ରଦ୍ଧା ରଖି ବିରୋଚନ ନିଜର ପ୍ରାଣ ତାଙ୍କୁ ଦାନ କରିଥିଲା । ବଳି ହେଉଛନ୍ତି ବିରୋଚନଙ୍କର ପରମ ଯଶସ୍ୱୀ ପୁତ୍ର । ସେ ମଧ୍ୟ ବାମନ ବେଶଧାରୀ ବିଷ୍ଣୁଙ୍କୁ ଚତୁର୍ଦ୍ଦିଗର ମଧ୍ୟ ତିନି ଲୋକ ତାଙ୍କୁ ଦାନ କରି ଭଗବାନଙ୍କ ଆଜ୍ଞାରେ ସୁତଳ ଲୋକକୁ ଚାଲି ଯାଇଥିଲେ । ଏହି ଅସୁର ହରିଭକ୍ତ ପରାୟଣ ଦୈତ୍ୟରାଜ ମହାରାଜ ବଳିଙ୍କର ଏକ ପୁତ୍ର ଥିଲା । ସେ ଅତ୍ୟନ୍ତ ସୁନ୍ଦର, ଭଗବଦ୍ ଭକ୍ତ, ବୃଦ୍ଧ ସେବୀ ଓ ଯୁବାବସ୍ଥାପନ୍ନ ଶକ୍ତିଶାଳୀ ଅସୁର ଥିଲା । ତାହାର ନାମ ଥିଲା 'ସାହସିକ' । ସେ ନିଜର ଶକ୍ତି ଓ ପୁରୁଷାର୍ଥ ବଳରେ ଦେବତାମାନଙ୍କୁ ଜୟ କରିଥିଲା । ସଂସାରରେ ସେ ମାନ-ସମ୍ମାନ, ଧନ, ଐଶ୍ୱର୍ଯ୍ୟପ୍ରଦ, ପ୍ରତିଷ୍ଠା ଓ ଅଧିକାର ଆଦି ସବୁ କିଛି ଲାଭ କରିଥିଲା ।

ଦିନେ ସେ ବନ ମଧ୍ୟରେ ବିହାର କରିବା ପାଇଁ ହିମାଳୟ ପର୍ବତ ଅନ୍ତର୍ଗତ ସେହି ଗନ୍ଧମାର୍ଦ୍ଦନ ପର୍ବତକୁ ଯାଇଥିଲା । ସେଠାରେ ଭଗବାନ ନରନାରାୟଣ ଆକଳ୍ପାନ୍ତ ତପସ୍ୟା କରୁଥିଲେ । ସେହି ସ୍ଥାନଟି ବିବିଧ ପ୍ରକାର ବୃକ୍ଷ, ଚେର ମୂଳ ଓ ଜଡ଼ିବୁଟୀର ସୁଗନ୍ଧରେ ଭରି ରହିଥିଲା । ମୁନିଗଣ ! ମୁଁ ଯେଉଁ କାଳର ବିଷୟ ବର୍ଣ୍ଣନା କରୁଛି, ସେହି

କଲରେ ଗନ୍ଧମାର୍ଦ୍ଦନ ପର୍ବତର ଶୋଭା ଅବର୍ଣ୍ଣନୀୟ ଥିଲା । ସେଠାରେ ଥିବା କୁସୁମିତ କାନନ, ସ୍ୱର୍ଗସ୍ଥିତ ନନ୍ଦନକାନନ ଅପେକ୍ଷା ଅତି ସୁନ୍ଦର ଥିଲା । ଏହା ଥିଲା ପଦ୍ମକଳ୍ପ । ଏହି କଲରେ ହିଁ ଭଗବାନଙ୍କ ନାଭିକମଳରୁ ପଦ୍ମ ସୃଷ୍ଟି ହୋଇଥିଲା । ଏହି କଲରେ ନାରଦ ଉପବର୍ହଣ ଗନ୍ଧର୍ବ ଥିଲେ । ଏହି କଲରେ ଅତି ପୁଣ୍ୟବାନ ବ୍ୟକ୍ତି ଗନ୍ଧମାର୍ଦ୍ଦନ ପର୍ବତ ଉପରେ ବିହାର କରି ପାରୁଥିଲେ । ଥରେ ବସନ୍ତ ଋତୁରେ ଲତା, ଔଷଧ ଆଦି ନିଜ ନିଜର ସୁବାସରେ ଗନ୍ଧମାର୍ଦ୍ଦନଗିରିକୁ ସର୍ବଦା ଆହୁରି ଅଧିକ ସୁବାସିତ କରୁଥାଆନ୍ତି । ସେଠାରୁ ପୁଷ୍ପଗୁଚ୍ଛକରୁ ସୁଗନ୍ଧ ଓ ସୌରଭ ନେଇ ପବନଦେବ ନିଜର ଶୀତଳ ମନ୍ଦମନ୍ଦ ଗତିରେ ଇତସ୍ତତଃ ବିହାର କରୁଥିଲେ । କୋକିଲ କୂଜନ କାମୀଗଣଙ୍କ ହୃଦୟକୁ ଆକର୍ଷିତ କରୁଥିଲା । ପ୍ରକୃତି ରାଣୀ ଏହି ଏକାନ୍ତ ମନୋହର ପରିବେଶରେ ସୌନ୍ଦର୍ଯ୍ୟ ସହିତ କ୍ରୀଡ଼ାରତ ଥିଲେ । ସେହି ପ୍ରାକୃତ ସୌନ୍ଦର୍ଯ୍ୟକୁ ଦର୍ଶନ କରି 'ସାହସିକ'ର ମନ-ମୁକୁର ହସି ଉଠିଲା । ସେ ଅତ୍ୟନ୍ତ ପ୍ରସନ୍ନ ହୋଇ ପୁଣ୍ୟ ପର୍ବତର ରମଣୀୟତା ଅବଲୋକନ କରି କରି ବିଚରଣ କରିବାକୁ ଲାଗିଲା ।

ଯୋଗକୁ ସେହି ସମୟରେ ଅପ୍‌ସରାଗଣଙ୍କ ମଧ୍ୟରେ ଶ୍ରେଷ୍ଠ ତିଲୋତ୍ତମା ସେଠାରେ ଆସି ପହଞ୍ଚିଥିଲେ । ତାଙ୍କ ସୌନ୍ଦର୍ଯ୍ୟ ବିଷୟରେ ଏତିକି କହିଲେ ପର୍ଯ୍ୟାପ୍ତ ହେବ ଯେ, ତାଙ୍କ ଅଙ୍ଗରେ ଏକ ତିଲ ପରିମାଣରେ ବି ଏପରି ସ୍ଥାନ ନ ଥିଲା, ଯେଉଁଠାରେ କି ଅପୂର୍ବ ସୌନ୍ଦର୍ଯ୍ୟ ବିକଶିତ ହେଉ ନ ଥିଲା । ପୁରାଣରେ ତା' କଥା ଏହି ପ୍ରକାର ବର୍ଣ୍ଣନା କରା-ଯାଇଛି ଯେ, ପ୍ରହ୍ଲାଦଙ୍କ କୁଳରେ ନିକୁମ୍ଭ ନାମକ ଏକ ବଳୀ ଦୈତ୍ୟ ଜନ୍ମ ହୋଇଥିଲା । ତାହାର ସୁନ୍ଦ ଓ ଉପସୁନ୍ଦ ନାମକ ଦୁଇ ପୁତ୍ର ଥିଲେ । ଉଭୟ ପୁତ୍ରଙ୍କ ମଧ୍ୟରେ ଏପରି ସ୍ନେହ ଥିଲା ଯେ ଜଣେ ଅନ୍ୟ ଜଣକୁ ଛାଡ଼ି ମୁହୂର୍ତ୍ତେ ମାତ୍ର ରହିପାରୁ ନ ଥିଲା । ଦୁହେଁ ଏକ ସଙ୍ଗେ ଖାଉଥିଲେ, ପିଉଥିଲେ, ଶୋଉଥିଲେ, ବସୁଥିଲେ ଓ ଉଠୁଥିଲେ । ସେହି ଦୁଇ ଭାଇ ଘୋର ତପସ୍ୟା କରି ବ୍ରହ୍ମାଙ୍କୁ ଅମର ବର ପ୍ରାର୍ଥନା କଲେ ।

ବ୍ରହ୍ମା କହିଲେ—"ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ, ଏଥିପାଇଁ ତୁମେ ଦୁହେଁ ମୃତ୍ୟୁର କୌଣସି କଠିନରୁ କଠିନ କାରଣ ମାଗି ନିଅ ।" ଏ କଥା ଶୁଣି ସେ ଦୁହେଁ ଚିନ୍ତା କଲେ, ଆମ ଦୁହିଁଙ୍କ ମଧ୍ୟରେ ତ ଅତୁଟ ପ୍ରେମ । ସ୍ୱୟଂ ବ୍ରହ୍ମା ମଧ୍ୟ ଆମ୍ଭ ଦୁହିଁଙ୍କୁ ହଟାଇ ପାରିବେ ନାହିଁ । ତେଣୁ ସେ ଦୁହେଁ ଏହି ବର ମାଗିଲେ ଯେ, "ଆମର ମୃତ୍ୟୁ କୌଣସି ପ୍ରାଣୀ ଦ୍ୱାରା ନ ହେଉ, ଯଦି ହୁଏ, ତେବେ ଆମ ନିଜ ନିଜ ମଧ୍ୟରେ ଲଢ଼ିବା ଦ୍ୱାରା ହେଉ ।" ବ୍ରହ୍ମା ଏହା ଶୁଣି 'ତଥାସ୍ତୁ' କହିଦେଲେ । ଏହା ପରେ ସେ ଦୁହେଁ ମଦମତ୍ତ ହୋଇ ଦେବତା, ଋଷି, ମୁନି ସମସ୍ତଙ୍କୁ ଦୁଃଖ ଦେବାକୁ ଲାଗିଲେ । ସମସ୍ତେ ଯାଇ ବ୍ରହ୍ମାଙ୍କ ନିକଟରେ ନିଜ ନିଜର ଦୁଃଖ ଜଣାଇଲେ । ବ୍ରହ୍ମା ବିଶ୍ୱକର୍ମାଙ୍କୁ ଡାକି କହିଲେ, ତୁମେ ଏପରି ଏକ ସୁନ୍ଦରୀ

ସ୍ତ୍ରୀ ସୃଷ୍ଟି କର, ତାଙ୍କୁ ଯେ କେହି ଦେଖିବେ, ସେ ଆକୃଷ୍ଟ ହୋଇଯିବେ ।" ଏହା ଶୁଣି ବିଶ୍ୱକର୍ମା ସଂସାରର ପ୍ରତ୍ୟେକ ବସ୍ତୁରୁ ସୌନ୍ଦର୍ଯ୍ୟ ନେଇ ଏକ ସ୍ତ୍ରୀ-ରତ୍ନ ସୃଷ୍ଟି କଲେ । ତାହାର ଶୋଭାମୟ ଅଙ୍ଗରେ ସତେ ଯେପରି ବିଶ୍ୱକର୍ମା ଅସଂଖ୍ୟ ରତ୍ନ ଖଚିତ କରି ଅଛନ୍ତି । ସମଗ୍ର ଜଗତରୁ ତିଲ ତିଲ ସୌନ୍ଦର୍ଯ୍ୟ ଏକତ୍ର କରାଯାଇ ଏହି କାମିନୀ ରତ୍ନ ସୃଷ୍ଟି ହୋଇଥିଲା । ତେଣୁ ତାହାର ନାମ ତିଲୋତ୍ତମା ରଖାଯାଇଥିଲା । ପୁନଶ୍ଚ ବ୍ରହ୍ମାଙ୍କ ଆଜ୍ଞାରେ ସେ ସୁନ୍ଦ, ଉପସୁନ୍ଦଙ୍କ ନିକଟକୁ ଗଲା । ଦୁହେଁ ଇଚ୍ଛା କଲେ ସେ 'ମୋ' ସ୍ତ୍ରୀ ହେବ । ଏହି କଥାକୁ ନେଇ ଦୁହିଁଙ୍କ ମଧ୍ୟରେ କଳହ ହେଲା । ଦୁହେଁ ମରିଗଲେ । ସେହି ଦିନଠାରୁ ଏହି ଅପ୍ସରା ସ୍ୱର୍ଗର ସର୍ବୋତ୍ତମ ଅପ୍ସରା ରୂପେ ପରିଗଣିତ ହେବାକୁ ଲାଗିଲା ।

କେହି କେହି କହନ୍ତି, ଯେତେବେଳେ କାମଦେବ ନରନାରାୟଣ ଋଷିଙ୍କୁ ନିଜର ସେନା ସହିତ ମୋହିତ କରିବାକୁ ଆସିଥିଲେ, ସେତେବେଳେ ଭଗବାନ ନିଜ ଉରୁ ମଧ୍ୟରୁ ଏକ ଅନିନ୍ଦ୍ୟ ସୁନ୍ଦରୀ ଅପ୍ସରା ସୃଷ୍ଟି କରିଥିଲେ । ଉରୁରୁ ସୃଷ୍ଟି ହୋଇଥିବାରୁ ତାହାର ନାମ ଉର୍ବଶୀ ରଖାଯାଇଥିଲା । ତା' ସୌନ୍ଦର୍ଯ୍ୟ ନିକଟରେ ସ୍ୱର୍ଗର ସମସ୍ତ ଅପ୍ସରାଙ୍କ ସୌନ୍ଦର୍ଯ୍ୟ ଫିକା ପଡ଼ିଯିବାର ଦେଖା ଯାଇଥିଲା । ସେତେବେଳେ ଭଗବାନ୍ ସ୍ୱର୍ଗର ଶୋଭା ବୃଦ୍ଧି କରାଇବା ପାଇଁ ତାଙ୍କୁ ଇନ୍ଦ୍ରଙ୍କ ପାଇଁ ଦେଇଦେଲେ । ତାହାର ଅଙ୍ଗର ତିଲ ତିଲ ସ୍ଥାନରେ ଉତ୍ତମତା ଥିବାରୁ ସେହି ଉର୍ବଶୀର ନାମ ହିଁ ତିଲୋତ୍ତମା । ସେ ଯାହା ହେଉ ନା କାହିଁକି, କଳ୍ପ ଭେଦରେ ଏ ଉଭୟ କଥା ସତ୍ୟ । ଏଠାରେ ଏହା କହିବାର ତାତ୍ପର୍ଯ୍ୟ ଏହି ଯେ, ସେ ଶ୍ରେଷ୍ଠ ସୁରସୁନ୍ଦରୀ ଅପ୍ସରା ଥିଲା । ସେହି ଅପ୍ସରା ଏକାନ୍ତରେ ବିଚରଣ କରୁଥିବା ଯୁବାବସ୍ଥା ପରମ ସୁନ୍ଦର ଶୋଭାରେ ଯୁକ୍ତ ବଳପୁତ୍ର ସାହସିକଙ୍କୁ ଦେଖିବାକୁ ପାଇଲା । ଦେଖିବାକ୍ଷଣି ସେହି ସୁରସୁନ୍ଦରୀର ମନ ବିଚଳିତ ହୋଇଗଲା । ସେ ଅନୁରାଗ ଭରା ଦୃଷ୍ଟିରେ ଧର୍ମାତ୍ମା ବଳପୁତ୍ରଙ୍କ ଆଡ଼କୁ ନିରୀକ୍ଷଣ କଲା ।

ଷୋଡ଼ଶ ଶୃଙ୍ଗାରଯୁକ୍ତ ତ୍ରୈଲୋକ୍ୟ ବିମୋହିନୀ ପରମ ସୁନ୍ଦରୀ ଯୁବତୀ ଅପ୍ସରାକୁ ପାଇ ଏକାନ୍ତରେ ଅନୁରାଗ ପୂର୍ବକ ନିରୀକ୍ଷଣ କରୁଥିବାର ଦେଖି ସାହସିକର ମନ ମଧ୍ୟ ବିଚଳିତ ହୋଇଗଲା । ସୁଯୋଗ ଦେଖି ମନ୍ମଥ ତାହାର ମନକୁ ମନ୍ଥନ କରିଦେଲା । ସେ ଅପଲକ ନୟନରେ ସେହି ଲଳନା ଲଲାମ ସୁରସୁନ୍ଦରୀକୁ ନିରୀକ୍ଷଣ କରିବାରେ ଲାଗିଲେ । ସେ ଯେତେ ଯେତେ ତା' ଆଡ଼େ ଦୃଷ୍ଟିପାତ କରୁଥାଆନ୍ତି, ତାଙ୍କର ମନ ସେତେ ସେତେ ତା' ଆଡ଼େ ଆକର୍ଷିତ ହେଉଥାଏ । ଏଥିରେ ତାଙ୍କର ମନ ବ୍ୟାକୁଳ ହୋଇ ଉଠିଲା ଓ ସେ ଧୀରେ ଧୀରେ ମୂର୍ଚ୍ଛିତ ହୋଇଗଲେ । କିଛି ସମୟ ପରେ ତାଙ୍କର ଚେତନା ଆସିଲା । ଏଣେ ତିଲୋତ୍ତମାର ଅବସ୍ଥା ମଧ୍ୟ ଦୟନୀୟ ଥିଲା । ସେ ଅଗ୍ରସର ହେବାକୁ ଚାହୁଁଥିଲା, କିନ୍ତୁ ଆଗେଇ ପାରୁ ନ ଥିଲା । ତାହାର ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠିଥିଲା ।

ମୁଖମଣ୍ଡଳ ଅଧିକ ରକ୍ତାଭ ଦିଶୁଥିଲା । ସେ ଅନୁରାଗ ଓ ପ୍ରଣୟପୂର୍ଣ୍ଣ ଦୃଷ୍ଟିରେ ବଳି ପୁଣି ଆଡ଼କୁ ସେହିପରି ଚାହିଁ ରହିଥିଲା; ଯେପରି ଚକୋରୀ ଚନ୍ଦ୍ରଙ୍କ ଆଡ଼କୁ ଚାହିଁ ରହିଥାଏ । ସାହସିକ ଯେତେବେଳେ ତା' ଦୃଷ୍ଟି ସହିତ ଦୃଷ୍ଟି ମିଳାଉଥିଲେ, ସେତେବେଳେ ସେ ଦୃଷ୍ଟି ଫେରାଇ ନେଉଥିଲା ଓ ଅଧୋମୁଖ ହେଉଥିଲା । ଏହାଦ୍ୱାରା ସେ ଅଧିକ ବ୍ୟଥିତ ହେଉଥିଲା ।

ମୁନିବର ଭଗବାନ ପ୍ରାଣୀମାନଙ୍କର ହୃଦୟରେ ଅନୁରାଗ ଉତ୍ପନ୍ନ କରିବାଦ୍ୱାରା ଏକ ବଡ଼ବିଭ ବୋଝ ଲଦି ଦିଅନ୍ତି । ପ୍ରେମୀ ଲୋକ ଦବାନଳି ସେହି ଅଗ୍ନିରେ ଦଗ୍ଧ ହୁଅନ୍ତି । ସେମାନଙ୍କର ସୁଖ ନ ଥାଏ, ଶାନ୍ତି ନ ଥାଏ, ସ୍ଥିରତା ନ ଥାଏ, କ୍ଷୁଧା ନ ଥାଏ ଓ ନିଦ୍ରା ନ ଥାଏ । ସେମାନେ କିମ୍ଭୂତ କିମାକାର ହୋଇ ଯାଆନ୍ତି । ନାରୀ ହୃଦୟର ଅନୁରାଗ ତ ପୁରୁଷ ଅପେକ୍ଷା ଅଧିକ; କିନ୍ତୁ ତା' ସହିତ ତାଙ୍କଠାରେ ଲଜ୍ଜାର ମାତ୍ରା ତତୋଧିକ । ପୁରୁଷ ନିର୍ଲଜ ହୋଇ ନିଜର ଭାବକୁ ଭାଷାରେ ବ୍ୟକ୍ତକରେ; କିନ୍ତୁ ନାରୀ ଅନୁରାଗପୂର୍ଣ୍ଣ ଦୃଷ୍ଟିରେ ହିଁ ସବୁକିଛି କହିଦିଏ । ସାହସିକଙ୍କର ସାହାସର ବନ୍ଧ ଭାଙ୍ଗିଗଲା । ସେ ତିଳୋତ୍ତମାର ସମୀପକୁ ଯାଇ ଅତ୍ୟନ୍ତ ସ୍ନେହବୋଳା ବାଣୀରେ କହିଲେ—"ମୁଁ ତୁମକୁ ସ୍ୱର୍ଗର ସର୍ବଶ୍ରେଷ୍ଠ ଅପ୍‌ସରା ତଥା ଅପ୍‌ସରାଙ୍କ ଶିରୋଭୂଷଣ ତିଳୋତ୍ତମା ଦେବୀ ବୋଲି ମନେ କରୁଛି ।"

ଲଜ୍ଜାରେ କଟାକ୍ଷପାତ କରି ସେହି ସୁରସୁନ୍ଦରୀ କହିଲା—"ପ୍ରଭୋ ! ମୁଁ ଆପଣଙ୍କ ପାଦପଦ୍ମରେ ପ୍ରଣାମ କରୁଛି । ଆପଣଙ୍କର ଅନୁମାନ ସତ୍ୟ । ମୁଁ ସେହି ବାର-ବନିତା ତିଳୋତ୍ତମା ।"

ସାହସିକ କହିଲେ—"ଦେବି ! ମୁଁ ତୁମକୁ ସ୍ୱାଗତ କରୁଛି । ବର୍ତ୍ତମାନ ମୁଁ କାମବାଣରେ ବ୍ୟଥିତ, ତୁମେ ମୋର ପ୍ରିୟ କାର୍ଯ୍ୟକର ।"

ତିଳୋତ୍ତମା ମଥା ନତକରି ଧୀରେ ଧୀରେ ବୀଣାବିନିନ୍ଦିତ ସ୍ୱରରେ ରହି ରହି କହିବାକୁ ଆରମ୍ଭ କଲା—"ଦେବ ! ମୋର ଏହା ସୌଭାଗ୍ୟ ଯେ ଆପଣ ଏ ଦାସୀକୁ ଏଥିପାଇଁ ଯୋଗ୍ୟ ବିବେଚିତ କରିଛନ୍ତି । ପ୍ରଭୋ ! ଆପଣଙ୍କ ପରି ରୂପବାନ୍, ଗୁଣବାନ୍, ତେଜସ୍ୱୀ, ତପସ୍ୱୀ, ଯଶସ୍ୱୀ, କୁଳୀନ, ସଚ୍ଚରିତ୍ର, କୃତଜ୍ଞ, ଶୃଙ୍ଗାରନିପୁଣ, କାମଶାସ୍ତ୍ର ବିଶାରଦ, ସଦାମନୋଜ୍ଞ ଓ ଚିତ୍ତାକର୍ଷକ ବେଶଭୂଷାଧାରୀ ଯୁବକ ରାଜକୁମାରଙ୍କୁ ପାଇ କେଉଁ କାମିନୀ ନିଜ ସୌଭାଗ୍ୟର ସୁଯୋଗ ନ ନେବ କିନ୍ତୁ......

ସାହସିକ କହିଲେ—"କିନ୍ତୁ ପୁଣି କ'ଣ ? ତାହା ମଧ୍ୟ କହି ଦିଅ ।"

କିଛି ସମୟ ରହିଯାଇ କୁଣ୍ଠିତ ଭାବ ପ୍ରଦର୍ଶିତ କରି ଚକିତ ଭାବରେ ସେ କହିଲା—"ପ୍ରଭୋ ! ରଜନୀକାନ୍ତ ଚନ୍ଦ୍ର ମୋତେ ଆଜି ତାଙ୍କ ନିକଟକୁ ଆମନ୍ତ୍ରିତ କରିଛନ୍ତି ।

ମୁଁ ଅଜ ତାଙ୍କ ସେବା କରିବା ପାଇଁ ଚନ୍ଦ୍ରଲୋକକୁ ଯାଉଛି । ରତି ସୁଖ ପ୍ରଦାନ କରି ସେ ମୋତେ ସଦା ସର୍ବଦା ସନ୍ତୁଷ୍ଟ କରନ୍ତି । ଆପଣ ତ ଜାଣନ୍ତି ଯେ, ମୁଁ କୌଣସି ପତିବ୍ରତା ରମଣୀ ନୁହେଁ । କୌଣସି ଏକ ପତିଙ୍କଠାରେ ମୋର ଅନୁରାଗ ନ ଥାଏ । ମୁଁ ତ ବହୁଭର୍ତ୍ତୃକା ପଣ୍ୟ ସ୍ତ୍ରୀ ଅଟେ । ଯାହାଙ୍କ ସହିତ ମୁଁ ପଣ କରିନଏ, ସେହିଦିନ ମୁଁ ତାହାର ହୋଇଯାଏ । ଏହା ହେଉଛି ମୋର ଧର୍ମ । ଯଦି ପଣ କରି ମୁଁ ରଜନୀକାନ୍ତଙ୍କ ସେବାରେ ସମୁପସ୍ଥିତ ନ ହୁଏ, ତେବେ ମୋର ଧର୍ମ ଲୋପ ହେବ । ପାତକରେ ମୁଁ ଭାଗିନୀ ହେବି, ଏହା ହିଁ ମୋର ଚିନ୍ତା ।"

ସାହସିକ କହିଲେ—"ଦେବି ! ଦୀନ ଦୁଃଖୀମାନଙ୍କ ପ୍ରତି ଦୟା କରିବା ସବୁଠାରୁ ଶ୍ରେଷ୍ଠ ଧର୍ମ । ଅନୁଗତ, ଆଶ୍ରିତଙ୍କ ଉପରେ କୃପା କରିବା ଦୟାବାନ୍ ବ୍ୟକ୍ତିଙ୍କର ପ୍ରଥମ କର୍ତ୍ତବ୍ୟ ।"

ବଳିପୁତ୍ରଙ୍କର ଏ ପ୍ରକାର କରୁଣା ପୂର୍ଣ୍ଣ ଦୀନ ବଚନକୁ ଶୁଣି ତାଙ୍କର ଅନୁରାଗ ବୃଦ୍ଧି କରାଇବା ପାଇଁ ସେହି ସ୍ୱୈରିଣୀ କହିଲା—"ପ୍ରଭୋ ! ଆପଣ କୁଳୀନ ଓ ଧର୍ମାତ୍ମା ଅଟନ୍ତି, ମୋ' ଭଳି ବହୁଭର୍ତ୍ତୃକା ବାରାଙ୍ଗନା ପାଇଁ ଆପଣ ଏତେ ଅଧୈର୍ଯ୍ୟ କାହିଁକି ହେଉଛନ୍ତି । ଭଗବନ୍ ! ପ୍ରାଣୀ ଇଚ୍ଛାକଲେ ସର୍ବଜ୍ଞ ହୋଇ ପାରନ୍ତି, ସବୁକିଛି ଜ୍ଞାତ ହୋଇ ପାରନ୍ତି; କିନ୍ତୁ ସ୍ୱୈରିଣୀ କାମିନୀଗଣଙ୍କର ମନ ମଧ୍ୟରେ ଥିବା ଭାବକୁ ଜାଣିବା କାହାର ପକ୍ଷେ ସମ୍ଭବ ନୁହେଁ । ଏମାନେ ପୁରାତନ ପତିଙ୍କୁ ପରିତ୍ୟାଗ କରି ପୁନଶ୍ଚ ନୂତନ ପତିଙ୍କ ସହିତ ପ୍ରେମ କରନ୍ତି । ଏମାନଙ୍କର କେହି ପ୍ରିୟ ନାହାନ୍ତି ବା ଅପ୍ରିୟ ମଧ୍ୟ ନାହାନ୍ତି । ଆପଣ ମୋ' ଭଳି ବାରବନିତା ପ୍ରତି ଏତେ ପ୍ରେମ ପ୍ରଦର୍ଶିତ କାହିଁକି କରୁଛନ୍ତି ?"

ସାହସିକ କହିଲେ—"ପ୍ରିୟେ ! ବଡ଼ ବଡ଼ ଦେବତାମାନେ ବିଶ୍ୱବନ୍ଦିତ ପ୍ରଜାପତିମାନେ ତୁମକୁ ଅଭିଳାଷ କରନ୍ତି ।"

ସେ କହିଲା—"ତେବେ ଠିକ୍ ଅଛି, ଆଜି ତ ମୁଁ ଚନ୍ଦ୍ରଲୋକ ଯାଉଛି, ପୁନଶ୍ଚ ଅନ୍ୟ କୌଣସି ଦିନ ଆସି ଆପଣଙ୍କର ସେବାରେ ସମୁପସ୍ଥିତ ହେବି ।"

ଏହାଶୁଣି ସାହସିକ ଆଉ କିଛି କହି ପାରିଲେ ନାହିଁ । ସେ ଅନୁରାଗଯୁକ୍ତ କଟାକ୍ଷରେ ତାହାର ମୁଖକମଳର ସୌନ୍ଦର୍ଯ୍ୟରୂପୀ ମକରନ୍ଦ ନିରନ୍ତର ପାନ କରିବାକୁ ଲାଗିଲେ । ଯେତେବେଳେ ବଳିନନ୍ଦନ ସାହସିକ ତାକୁ ଅତ୍ୟନ୍ତ ଅନୁରାଗବତୀ ବୋଲି ଅନୁଭବ କଲେ, ସେତେବେଳେ ସାହସଙ୍କରି କହିଲେ—"ଦେବି ! ମୁଁ ଆପଣଙ୍କୁ ତ ବଳପ୍ରୟୋଗ କରିପାରୁ ନାହିଁ । ଯଦି ମୋର ପ୍ରାର୍ଥନା ସ୍ୱୀକାର ନ କରି ତୁମେ ସ୍ୱେଚ୍ଛାରେ ନିଜର ଗନ୍ତବ୍ୟ ସ୍ଥଳକୁ ପ୍ରସନ୍ନତାପୂର୍ବକ ପ୍ରସ୍ଥାନ କରି ପାରୁଛ ଓ ମୋ' ସହିତ ସହମତ ହେଉନାହଁ । ଏହି ଦ୍ୱିବିଧ ସ୍ଥିତି ଉଚିତ୍ ନୁହେଁ, ବଳାତ୍ କରିବା ଦ୍ୱାରା ଅଘଟିତ ଘଟଣା

ଘଟିବାର ବହୁତ ଆଶଙ୍କା ଅଛି । ଏଣୁ ତୁମେ ଯଦି ଯିବାକୁ ଚାହୁଁଛ, ତେବେ ଯାଇପାର । କରୁବା ଯଦି ରହିବାକୁ ଚାହିଁ, ତେବେ ମୋତେ କୃତାର୍ଥ କରିପାର ।"

ସୂତ କହୁଛନ୍ତି—"ମୁନିଗଣ ! ତାହାର ତ ପ୍ରକୃତ ଯିବାର ନ ଥିଲା । ତାହାର ଚିତ୍ତ ତ ସାହସିକଙ୍କର ସୌନ୍ଦର୍ଯ୍ୟ ଜାଲରେ ଛନ୍ଦି ହୋଇ ଯାଇଥିଲା । ତେଣୁ ସେ ସାହସିକଙ୍କର ପ୍ରସ୍ତାବକୁ ସ୍ୱୀକାର କଲା । ଫଳେତ ପାଇ ଏକ ଗିରିଗହ୍ୱରର ନିର୍ଜନ ପରିବେଶରେ ଉଭୟେ ଉପଗତ ହେଲେ ।"

ଦୈବଯୋଗକୁ ସେହି ଗିରିଗୁହାର ଏକ କୋଣରେ ବୃଦ୍ଧାବସ୍ଥାର ଭଗବାନ ଦୁର୍ବାସା ତପସ୍ୟା କରୁଥିଲେ । ସେ ଅନେକ କାଳରୁ ଧ୍ୟାନମଗ୍ନ ଥିଲେ । ତାଙ୍କ ଶରୀର ଉପରେ ଉଇମାନେ ହୁଙ୍କା କରି ସାରିଥିଲେ । ଏ ଦୁଇଜଣଙ୍କର ସେ ହୁଙ୍କା ଉପରେ ଦୃଷ୍ଟି ପଡ଼ି ନ ଥିଲା । ସେଠାରେ ଦୁଇଜଣଯାକ କାମକ୍ରୀଡ଼ାରେ ରତ ରହିଲେ । କିଛି ସମୟ ମଧ୍ୟରେ ରହସ୍ୟମୟୀ ପ୍ରେମଯୁକ୍ତ ଆଳାପ ଶ୍ରବଣରେ, ହାସ ପରିହାସର ଧ୍ୱନି ପ୍ରତିଧ୍ୱନିରେ ତଥା ନୂପୁର, କଙ୍କଣ ଆଦିର ନିକ୍ୱଣରେ ମୁନିଙ୍କର ସମାଧି ଭଗ୍ନ ହେଲା । ସେ ନିଜ ସମ୍ମୁଖରେ ସାହସିକଙ୍କୁ ନଗ୍ନାବସ୍ଥାରେ ଦେଖିଲେ ।

ସେ ତ ସହଜେ କ୍ରୋଧର ପ୍ରତିମୂର୍ତ୍ତି । ନିଜ ସମ୍ମୁଖରେ ଏଭଳି ଅଶିଷ୍ଟତା ଦର୍ଶନ କରି ମୁନି କ୍ରୋଧରେ ପ୍ରଜ୍ଜ୍ୱଳିତ ହୋଇ ଦୁଇଜଣଙ୍କୁ ଅଭିଶାପ ଦେଲେ । ସେ ସାହସିକକୁ କହିଲେ—"ରେ ନିର୍ଲଜ୍ଜ ଦୁଷ୍ଟ ! ନିଜ ଜାତିର ଜୀବକୁ ଦେଖି ପଶୁପକ୍ଷୀଙ୍କ ବ୍ୟତୀତ ପ୍ରତ୍ୟେକେ ଲଜ୍ଜା କରନ୍ତି । ତୁ ବୁଦ୍ଧିହୀନ ! ମୋ' ସମ୍ମୁଖରେ ଗଧଙ୍କ ଭଳି ବ୍ୟବହାର କଲୁ—ତୁ ଗଧ ହୋଇଯା' ।" ପୁନଶ୍ଚ ମୁନି ତିଲୋତ୍ତମାକୁ କହିଲେ—"ରେ ତିଲୋତ୍ତମା ! ତୁ ମାନବୀ ଭାବ ଆଚରଣ କଲୁ; ତେଣୁ ତୁ ପୃଥିବୀରେ ମାନବଯୋନିରେ ଜନ୍ମଗ୍ରହଣ କର ।"

ମୁନିଙ୍କର ଶାପ ଶୁଣି ଉଭୟଙ୍କର ପ୍ରେମନିଶା ଛୁଟିଗଲା । ଉଭୟେ ମୁନିଙ୍କର ପାଦପଦ୍ମରେ ପଡ଼ି କ୍ଷମା ପ୍ରାର୍ଥନା କରିବାକୁ ଲାଗିଲେ ଓ ନିଜ ନିଜର ଅଜ୍ଞାନତାକୁ ବାରମ୍ବାର ଧିକ୍କାର କରିବାକୁ ଲାଗିଲେ । କ୍ଷଣାର୍ଦ୍ଧମନ୍ୟୁ ଭଗବାନ ଦୁର୍ବାସା କହିଲେ—"ଦେଖ ! ମୋର ବଚନ କେବେହେଲେ ଅନ୍ୟଥା ହେବନାହିଁ । ଯେତେବେଳେ ଶ୍ୱେତବରାହକଳ୍ପର ଅଷ୍ଟବିଂଶ କଳିଯୁଗ ଆସିବ, ସେତେବେଳେ ନନ୍ଦନନ୍ଦନ ଭଗବାନ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହେବେ । ସେହି ସମୟରେ ତାଙ୍କ ଅଗ୍ରଜ ତାଙ୍କ ଅଂଶଭୂତ ବଳଦେବଙ୍କ ହସ୍ତରେ ମୃତ୍ୟୁବରଣ କରି ତୁମର ପରମପଦ ପ୍ରାପ୍ତ ହେବ । ତୁମେ ସଂସାର ବନ୍ଧନରୁ ମୁକ୍ତ ହୋଇଯିବ ।" ଏହା କହି ମୁନି ତିଲୋତ୍ତମାକୁ କହିଲେ—"ତୁ ପୃଥିବୀରେ ବଳିପୁତ୍ର 'ବାଣା'ର କନ୍ୟାରୂପେ ଜନ୍ମହେବୁ । ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ ସହିତ କାମକ୍ରୀଡ଼ା କରି ତାହାର ପତ୍ନୀ ହୋଇ ତୁ ମଧ୍ୟ ସଂସାର ସାଗରରୁ ପାର ହୋଇଯିବୁ । ତୁମେ ଦୁହେଁ

ଭଗବାନଙ୍କର ଦର୍ଶନ କରିବ ଓ ତାଙ୍କ କୃପାରୁ ତୁମ ଦୁହିଁଙ୍କର ସଂସାର ବନ୍ଧନ ତୁଟିବ । ବିନା କଷ୍ଟରେ କୌଣସି ଅନୁଭୂତି ଲାଭ ହୁଏ ନାହିଁ ।'' ଏତିକି କହି ମୁନି ଦୁର୍ବାସା ମୌନ ହୋଇଗଲେ । ଏ ଦୁହେଁ ମୁନିଙ୍କ ପାଦପଦ୍ମରେ ପ୍ରଣାମ କରି ନିଜ ନିଜ ଗନ୍ତବ୍ୟ ପଥରେ ଚାଲିଗଲେ । କାଳକ୍ରମେ ସାହସିକ ଧେନୁକାସୁର ରୂପେ ଜନ୍ମଗ୍ରହଣ କଲା ଓ ବଳଦେବଙ୍କ ହାତରେ ମୃତ୍ୟୁବରଣ କରି ମୁକ୍ତ ହେଲା । ତିଲୋତ୍ତମା ବାଣାସୁର କନ୍ୟା ଊଷାରୂପେ ଜନ୍ମଗ୍ରହଣ କରି ଶ୍ରୀକୃଷ୍ଣଙ୍କ ନାତି ତଥା ପ୍ରଦ୍ୟୁମ୍ନଙ୍କ ପୁତ୍ର ଚତୁର୍ବ୍ୟୂହଙ୍କ ମଧ୍ୟରେ ଚତୁର୍ଥ ଅଧିଷ୍ଠାତା ଶ୍ରୀ ଅନିରୁଦ୍ଧଙ୍କୁ ବିବାହ କରିଥିଲେ ।

ଏହାଶୁଣି ଶୌନକ ପଚାରିଲେ—ହେ ସୂତ ! ବଳିପୁତ୍ର ସାହସିକ କୁଳୀନ ଥିଲେ । ଗୁଣବାନ୍ ଥିଲେ ଓ ବିବେକୀ ଥିଲେ । ସେ ଏ ପ୍ରକାର ଅନୁଚିତ କାର୍ଯ୍ୟ କରିବାକୁ ଗଲେ କିପରି ? ଯାହା ହେଉ, ଯଦି ଭାବାବେଶରେ ଆସି ଏପରି ଘଟିଥାଏ, ତେବେ ସେ ସମ୍ମୁଖରେ ବସିଥିବା ମୁନିଙ୍କୁ କାହିଁକି ଦେଖି ପାରିଲେ ନାହିଁ ? ଏହା ତ ଅତି ଆଶ୍ଚର୍ଯ୍ୟ କଥା ।''

ସୂତ ଅତ୍ୟନ୍ତ ଦୁଃଖିତ ହୋଇ କରୁଣ ସ୍ୱରରେ କହିଲେ—''ଭଗବନ ! ଯେତେବେଳେ ଜୀବ କାମାନ୍ଧ ହୋଇଯାଏ, ସେତେବେଳେ ସେ କିଛି ଦେଖିପାରେ ନାହିଁ । ସମ୍ମୁଖରେ ରଖାଯାଇଥିବା ବସ୍ତୁ ସେ ଦେଖିପାରେ ନାହିଁ । ସେ ସେତେବେଳେ ସଂପୂର୍ଣ୍ଣ ବିବେକ-ଶୂନ୍ୟ ହୋଇଯାଏ । ଦୁର୍ବାସା ମୁନି ଯଦିଓ ସମ୍ମୁଖରେ ବସି ତପସ୍ୟା କରୁଥିଲେ, ତଥାପି ତାଙ୍କ ଶରୀର ଉପରେ ଉଇ ବସାବାନ୍ଧି ଦେଇଥିଲେ । ସେ ଦେଖାଯାଉ ନ ଥିଲେ । ଦ୍ୱିତୀୟତଃ ସେ ଦୁଇଜଣଙ୍କ ମଧ୍ୟରୁ କେହି ସେ ଆଡ଼େ ଧ୍ୟାନ ବି ଦେଇ ନ ଥିଲେ । ରତିବାଡ଼ା ତାଙ୍କୁ ପାଗଳ କରିଥିଲା ।''

ଶୌନକ କହିଲେ—''ହେ ସୂତ ! ଆପଣ ତ ସାହସିକଙ୍କୁ ଭଗବନ୍ତ ଭକ୍ତ ବୋଲି କହୁଛନ୍ତି । ଭଗବନ୍ତ ଭକ୍ତଙ୍କ ମନରେ ଏପରି କଥା କିପରି ସ୍ଥାନ ପାଇଲା ?''

ସୂତ କହିଲେ—''ମହାରାଜ ! କୌଣସି ଅଦୃଷ୍ଟକର୍ମ ଯୋଗୁଁ ସେହି ଦୁର୍ବଳ ମୁହୂର୍ତ୍ତରେ କ୍ଷଣକେ ପାଇଁ ତାଙ୍କର ଏପରି ଭାବ ଜାତ ହୋଇଥିଲା । ସେ ସେଥିରେ ଲିପ୍ତ ହୋଇ ନ ଥିଲେ । ପର ମୁହୂର୍ତ୍ତରେ ସେ ନିଜର ଭୁଲ୍ ବୁଝି ପାରିଲେ ଓ ଅନୁତାପ କଲେ । ତାହାର ଫଳ ସ୍ୱରୂପ ମୃତ୍ୟୁ ସମୟରେ ତାଙ୍କ ମନରେ ପୂର୍ବ ସଂସ୍କାର କାରଣରୁ ଭଗବଦ୍‌ଭକ୍ତି ଉତ୍ପନ୍ନ ହୋଇଥିଲା । ସେ ଅସୁର ହୋଇଥିବାରୁ ତାଙ୍କଠାରେ ଅବଶ୍ୟ ଅସୁର ପ୍ରକୃତି ଥିଲା । ଶେଷରେ ଶ୍ରୀକୃଷ୍ଣଙ୍କ ମୁଖ ଦର୍ଶନ କରି ସେ ପରମପଦ ପ୍ରାପ୍ତ ହୋଇଥିଲେ । ମହାମୁନି ଦୁର୍ବାସା ଉପରେ ଏହାଙ୍କର କୁପ୍ରଭାବ ମଧ୍ୟ ପଡ଼ିଥିଲା । ଏତେବଡ଼ ତ୍ୟାଗୀ ବୈରାଗୀ ତପସ୍ୱୀଙ୍କ ମନରେ ମଧ୍ୟ ସେହି ଘଟଣା ଦେଖି କାମଭାବ ଉତ୍ପନ୍ନ ହୋଇଥିଲା । ଏଥିପାଇଁ ଶାସ୍ତ୍ରକାରମାନେ

ଏହି ଘଟଣା ଉପରେ ସ୍ଥାନେ ସ୍ଥାନେ ଗୁରୁତ୍ବ ଦେଇ କହି ଥାଆନ୍ତି ଯେ, କଦାପି ଅସତ୍ସଙ୍ଗ କରିବା ଉଚିତ୍ ନୁହେଁ । ବିଷୟ ଚର୍ଚ୍ଚା କରିବା ଉଚିତ୍ ନୁହେଁ । କାମୁକ ବ୍ୟକ୍ତିଙ୍କ ସହିତ ସମ୍ପର୍କ ରଖିବା ଉଚିତ୍ ନୁହେଁ । କାହାରିକୁ ସ୍ପର୍ଶ କରିବା ଉଚିତ୍ ନୁହେଁ । ସର୍ବଦା ସାବଧାନ ହୋଇ ଭଗବନ୍ତ ଚିନ୍ତନ ଓ ଭଗବତ୍ ଗୁଣ ଶ୍ରବଣରେ ମଜ୍ଜି ରହିବା ଉଚିତ । ଯେଉଁ ବ୍ୟକ୍ତି ଧନରତ ସଂସାର ଜଞ୍ଜାଳରେ ବୁଡ଼ି ରହନ୍ତି, ସେମାନଙ୍କ ଚିତ୍ତ ସ୍ତ୍ରୀ, ପୁତ୍ର, ବ୍ୟବସାୟ, ପଶୁ, ଘରଦ୍ୱାର, ଜମିବାଡ଼ି ତଥା ଅନ୍ୟାନ୍ୟ ଅନେକ କଥାରେ ମଜ୍ଜି ରହିଥାଏ । ଯେଉଁମାନେ ଏକାନ୍ତରେ ଧ୍ୟାନ କରନ୍ତି, ସମସ୍ତ ସମ୍ବନ୍ଧ ପରିତ୍ୟାଗ କରି ମନ ଓ ବାଣୀକୁ ସଂଯମ କରି ଏକ ବିଷୟରେ ଚିତ୍ତବୃତ୍ତି ଯୋଗକରି ମନକୁ ଭଗବାନଙ୍କ ଧ୍ୟାନରେ ବିନିଯୋଗ କରନ୍ତି, ସେମାନଙ୍କର ଚିତ୍ତ ଯଦି ଦୁର୍ଭାଗ୍ୟବଶତଃ ଅନ୍ୟ ଆଡ଼େ ଗ୍ଭଲିଯାଏ, ଭଗବାନ୍ ହିଁ ତାହା ସେଆଡ଼ୁ ହଟାଇ ଆଣନ୍ତି । ଚିତ୍ତ ଏକାଗ୍ର ହୋଇଥିବାରୁ ସେମାନେ ସତ୍ୟ ସଂକଳ୍ପ ହୋଇ ଯାଆନ୍ତି । ମନରେ ଯେଉଁ ସଂକଳ୍ପ କରନ୍ତି, ତାହା ଶୀଘ୍ର ପୂର୍ଣ୍ଣ ହୋଇଯାଏ । ତେଣୁ ମନରେ ଅସତ୍ ସଂକଳ୍ପ ନ ଆସିବା ପାଇଁ ଏକମାତ୍ର ଭଗବାନଙ୍କର ଶରଣାଗତ ହେବା ଉଚିତ୍ । ଯଦି ମନରେ କୌଣସି ସଂକଳ୍ପ ଉଠେ, ତେବେ ସେହି ସଂକଳ୍ପ ଉପରେ ଧ୍ୟାନ ନ ଦେଇ ବିଶେଷ ଜପ ଅନୁଷ୍ଠାନ କରି କଠୋରତାର ସହିତ ତାହା ପାଳନ କରିବା ଉଚିତ୍ । ମହାମୁନି ଦୁର୍ବାସା ଶାପଦେବା ପରେ ସେହି କଥା ଖାଲି ଚିନ୍ତା କରିବାକୁ ଲାଗିଲେ । ଶେଷରେ ତାଙ୍କୁ ବାଧ୍ୟ ହୋଇ ବିବାହ କରିବାକୁ ପଡ଼ିଥିଲା ।''

ଏହା ଶୁଣି ଶୌନକ ଆଶ୍ଚର୍ଯ୍ୟ ହୋଇ କହିଲେ—''ହେ ସୂତ ! ଦୁର୍ବାସାଙ୍କର କାହା ସହିତ ବିବାହ ସମ୍ପନ୍ନ ହେଲା ? କୃପାକରି ସେ ବିଷୟ ଆମ୍ଭମାନଙ୍କୁ କହନ୍ତୁ ।''

ସୂତ କହିଲେ—ମହାରାଜ ! ଯେତେବେଳେ ବଲ୍ଲପୁତ୍ର ସାହସିକ ଓ ତିଲୋତ୍ତମା ନିଜ ନିଜର ଗନ୍ତବ୍ୟ ସ୍ଥାନକୁ ଗ୍ଭଲିଗଲେ, ସେହି ସମୟଠାରୁ ମୁନି ସେହି ଘଟଣା ଚିନ୍ତା କରିବାକୁ ଲାଗିଲେ । ସେ ଉଭୟଙ୍କୁ ମୈଥୁନ ମୁଦ୍ରାରେ ଦେଖିଥିଲେ । ସେହିଠାରୁ ତାଙ୍କ ଚିତ୍ତରେ ବିବାହ କରିବା ପାଇଁ ବ୍ୟାକୁଳତା ଉଦୟ ହେଲା । ମୁନି ତ ସତ୍ୟ ସଂକଳ୍ପ ଥିଲେ, ତାଙ୍କ ଚିତ୍ତରେ ଏହି ଭାବନା ଜାତ ହେବାମାତ୍ରେ ଔର୍ବ ନାମକ ଜଣେ ଋଷି ନିଜର ଯୁବତୀ କନ୍ୟାକୁ ଆଣି ତାଙ୍କ ନିକଟରେ ଅର୍ପି ଦେଇଥିଲେ । ମହାମୁନି ଔର୍ବ ବ୍ରହ୍ମାଙ୍କ ଉରୁ ମଧ୍ୟରୁ ଉତ୍ପନ୍ନ ହୋଇଥିଲେ । ତାଙ୍କ ଜାନୁରୁ କନ୍ଦଳୀ ନାମ୍ନୀ ଏକ କନ୍ୟା ଉତ୍ପନ୍ନ ହୋଇଥିଲା । ସେହି କନ୍ୟା ଯେତେବେଳେ ଯୁବାବସ୍ଥାରେ ପଦାର୍ପଣ କଲା, ସେତେବେଳେ ସେ ସ୍ଥିର କରିନେଲା ଯେ ମୁଁ ଦୁର୍ବାସା ମୁନିଙ୍କୁ ହିଁ ବିବାହ କରିବି । ସେ ନିରନ୍ତର ଦୁର୍ବାସା ମୁନିଙ୍କୁ ଧ୍ୟାନ କରୁଥିଲା । ଭଗବାନ୍ ସ୍ୱୟଂ ଧ୍ୟାନରେ ବଶ ହୋଇ ଯାଆନ୍ତି, ଅନ୍ୟମାନଙ୍କୁ ବଶ କରିବା ତ ଅତି ସହଜ । ଏକାଗ୍ରଚିତ୍ତରେ ତନ୍ମୟ ହୋଇ ସେ ଯାହାଙ୍କର ଧ୍ୟାନ କରନ୍ତି,

ତାହାର ପ୍ରଭାବ ନିଶ୍ଚୟ ତାଙ୍କ ଉପରେ ପଡ଼େ । ଏ ଜନ୍ମରେ ନ ହେଲେ ଜନ୍ମାନ୍ତରେ ବି ଧେୟ ବସ୍ତୁ ନିଶ୍ଚିତ ଭାବରେ ପ୍ରାପ୍ତ ହୋଇଥାଏ ।

ମହାମୁନି ଔର୍ବ କନ୍ୟା ସହିତ ଆସିଥିବାର ଦେଖି ଦୁର୍ବାସା ଉଠିଯାଇ ମୁନିଙ୍କର ସ୍ୱାଗତ ସତ୍କାର କଲେ । ଉଭୟ ଉଭୟଙ୍କର କୁଶଳ ପ୍ରଶ୍ନ ପଚାରି ସାରିବା ପରେ ଦୁର୍ବାସା ଔର୍ବ ମୁନିଙ୍କର ଆଗମନର କାରଣ ପଚାରିଲେ । ମୁନି କହିଲେ—"ଏ ମୋର ଅଯୋନିଜା ତ୍ରୈଲୋକ୍ୟସୁନ୍ଦରୀ କନ୍ୟା । ଏ ସର୍ବଗୁଣସମ୍ପନ୍ନା ; କିନ୍ତୁ ଗୋଟିଏ ମାତ୍ର ଅବଗୁଣ ଏହାଠାରେ ରହିଛି । ଏ କଟୁଭାଷିଣୀ । ସେ ଆପଣଙ୍କୁ ପତିରୂପେ ବରଣ କରିବାକୁ ଇଚ୍ଛା କରୁଛି । ଯଦି ଆପଣ ତାହାର କଟୁ କଥା ସହ୍ୟ କରି ପାରିବେ, ତେବେ ତା' ସହିତ ବିବାହ କରି ତା' ଇଚ୍ଛା ପୂର୍ଣ୍ଣ କରନ୍ତୁ ।"

ମୁନି ପ୍ରଥମେ ଉପରି ମନରେ ନାହିଁ, ଏହା ହୋଇ ପାରିବ ନାହିଁ ବୋଲି କହୁଥିଲେ ମଧ୍ୟ ଅନ୍ତରରେ ଭାବୁଥିଲେ—"କୌଣସି ଅସୁବିଧା ନାହିଁ, ଏହାର ଶହେ ଅପରାଧ ଥିଲେ ମଧ୍ୟ ମୁଁ କ୍ଷମା କରିଦେବି । ଏହାର ମୁଖରା କଥାଗୁଡ଼ିକୁ ସହ୍ୟ କରିନେବି ।"

ଶେଷରେ ମୁନି ସ୍ୱୀକୃତି ପ୍ରଦାନ କଲେ ଓ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ଏବେ ବରକନ୍ୟା ଉଭୟେ ସମସ୍ୱଭାବବିଶିଷ୍ଟ ହୋଇ ମିଳିଗଲେ । ଏକେତ ଦୁର୍ବାସା ଅତ୍ୟନ୍ତ କ୍ରୋଧୀ । ତାଙ୍କ ସାଙ୍ଗକୁ କଟୁଭାଷିଣୀ ସହଧର୍ମିଣୀ ଆସି ଯୁଟିଗଲେ । ମହାଭାରତ ଆରମ୍ଭ ହୋଇଗଲା । ମୁନି ତ ସବୁ ପ୍ରଥମେ ସହ୍ୟ କରି ନେଉଥିଲେ; କିନ୍ତୁ ସହିବାର ତ ପୁଣି ସୀମା ଅଛି । ଏବେ ସେ ଫଯାଗ୍ରା, ଜପତପ ସବୁ ଛାଡ଼ି ଦେଇଛନ୍ତି । କଥା କଥାକେ ସ୍ତ୍ରୀର ଅନୁମତି ନେବାକୁ ପଡ଼ୁଛି । ଏ ଯାହା କରନ୍ତି, ସ୍ତ୍ରୀ ସେଥିରେ ବାଧା ଦିଏ । ମୁନି ଚିନ୍ତାକଲେ— "ମୁଁ ଆଚ୍ଛା ଫାନ୍ଦରେ ପଡ଼ିଗଲି" ଏବେ ଆଉ ଉପାୟ କ'ଣ ? ପ୍ରତ୍ୟହ ଶହେ ଅପରାଧ ସହିଯିବ ବୋଲି ଶ୍ୱଶୁରଙ୍କ ନିକଟରେ ପ୍ରତିଜ୍ଞା କରିଛି । ଏଥିପାଇଁ ମନମାରି ସବୁ ସହୁଥାଆନ୍ତି । ଦିନେ ଶହେରୁ ଅଧିକ ଅପରାଧ ହୋଇଗଲା, ସେଥିପାଇଁ ମୁନି ନିଜ କ୍ରୋଧ ଆଉ ସମ୍ଭାଳି ପାରିଲେ ନାହିଁ, ଶାପଦେଇ ତାକୁ ଭସ୍ମ କରିଦେଲେ । କନ୍ଦଳୀ ବିଚାରି ମରିଗଲା ।"

ଏହି ସମୟରେ ନାରାୟଣ ଶିଶୁ ରୂପରେ ଆବିର୍ଭାବ ହୋଇ ତାକୁ ବରଦେଲେ— "ଏ କନ୍ଦଳୀ ପାର୍ବତୀ-ଲକ୍ଷ୍ମୀଙ୍କ ଅଂଶ ଥିଲା । ଏବେ ନିଜ ରୂପରେ ମିଳିଗଲା । ସେ ପ୍ରତି କଳ୍ପରେ ଜନ୍ମ ନେବ । ତାହାର ଏକ ଅଂଶ ପୃଥିବୀରେ କଦଳୀ ଗଛ ହେବ, ଯେଉଁ କଦଳୀ ଗଛ କି ସୁଖଦା, ଶୁଭଦା, ଫଳଦା, କାନ୍ତା, ସକୃତ୍ପ୍ରସୂତା ତଥା ପୁଷ୍ପୋଦ୍ଭବା ରୂପେ ପରିଗଣିତ ହେବ ।"

ତତ୍‌କ୍ଷଣାତ୍ 'କନ୍ଦଳୀ'ର ଶାଢ଼ୀ ଯୋଗ ପ୍ରଭାବରେ ଉଡ଼ିଯାଇ ଔର୍ବ ମୁନିଙ୍କ ଉପରେ ପଡ଼ିଲା । ନିଜ କନ୍ୟାର ଶାଢ଼ୀକୁ ଚିହ୍ନି ଧ୍ୟାନ ବଳରେ ସେ ସମସ୍ତ କଥା ଜାଣି ପାରିଲେ ।

ସେ ସଙ୍ଗେ ସଙ୍ଗେ ଦୁର୍ବାସାଙ୍କ ପାଖରେ ଆସି ପହଞ୍ଚିଗଲେ । ଶ୍ୱଶୁରଙ୍କୁ ଦେଖି ଦୁର୍ବାସା ତାଙ୍କ ପାଦତଳେ ପଡ଼ିଗଲେ । ଶ୍ୱଶୁର ଦୁର୍ବାସାଙ୍କୁ ଶାପ ଦେଇ କହିଲେ—"ତୁ ମୋର କନ୍ୟାକୁ ଯେପରି ମାରି ମୋତେ ଯେପରି ଅପମାନ ଦେଇଛୁ, ସେହିପରି ଜଣେ ରାଜର୍ଷିଙ୍କ ଦ୍ୱାରା ତୁ ଅପମାନିତ ହେବୁ ।"

ସୂତ କହିଲେ—"ମୁନିଗଣ ! ମହାମୁନି ଔର୍ବଙ୍କ ଶାପ ପ୍ରଭାବରୁ ଅଭିଶପ୍ତ ଶଙ୍କରାବତାର ଦୁର୍ବାସା ଏକବର୍ଷ ମର୍ତ୍ତ୍ୟର କୌଣସି ଲୋକରେ ସ୍ଥାନ ପାଇ ନ ଥିଲେ, ତାଙ୍କୁ ମୃତ୍ୟୁ ଭୟରେ ବ୍ରହ୍ମଲୋକ, ଶିବଲୋକ ଓ ବିଷ୍ଣୁଲୋକକୁ ଧାଇଁବାକୁ ପଡ଼ିଥିଲା । କେହି ତାଙ୍କୁ ସାହାଯ୍ୟ କରି ପାରି ନ ଥିଲେ ; ତେଣୁ ଶେଷକୁ ସେ ଅମ୍ବରୀଷଙ୍କ ପାଦତଳେ ପଡ଼ି ଶରଣ ପଶିଥିଲେ । ମୁଁ ଅତି ସଂକ୍ଷେପରେ ଏହି ଧେନୁକାଶାପ ଓ ଦୁର୍ବାସା ବିବାହ ପ୍ରସଙ୍ଗ କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହାନ୍ତି କହନ୍ତୁ ।"

ଶୌନକ କହିଲେ—"ଧେନୁକାସୁରକୁ ମାରି ଭଗବାନ ତା'ପରେ କ'ଣ କଲେ ? ଧେନୁକାସୁର କଥା ଆମକୁ ସମ୍ପୂର୍ଣ୍ଣରୂପେ କହନ୍ତୁ ।"

ସୂତ କହିଲେ—"ଅଚ୍ଛା, ତେବେ ଠିକ୍ ଅଛି । ଏବେ ମୁଁ ଆପଣମାନଙ୍କୁ ଧେନୁକାସୁର ବୃତ୍ତାନ୍ତ ସମ୍ପୂର୍ଣ୍ଣରୂପେ କହି ଶେଷ କରୁଛି ।"

## ଛପ୍ପୟ

ଭଭୟୁ ଭଦ୍ୟେ କାମାଦ୍ଧ ଅଭିସୁତ ନହୀଂ କହାଟରେ ।
ସମୁଝ ଝଟେଂ କର୍ଲ୍କୁ ଦ୍ୱୋନ୍ଦୁ ଖର ବଚନ ଉଚାରେ ।।
ସୁରବନତା ବନ ବାନସୂତା ଭ୍ରଷା ଧରନୀପେ ।।
ସୁନତ ଶାପ ମନ ପେର ପରେ ବଲଝେଂ କରନୀପେ ।।
ପୁନ ମୁନିବର ନେ କର ଦୟୋ, କୃଷ୍ଣ କୃପା ସଦ୍‌ଗତ ଲହୀ ।
ଭଦ୍ୟେ ମୁକ୍ତ ହ୍ୱର ସଂଗଟେଂ, ଧନ୍ୟ କଥା ଧେନୁକ କହୀ ।।



# ଧେନୁକ ବଧ ପରେ ବ୍ରଜ ପ୍ରବେଶ

ତଂ ଗୋରଜଶ୍ଛୁରିତକୁନ୍ତଳବଦ୍ଧବର୍ହ—
ବନ୍ୟପ୍ରସୂନରୁଚିରେକ୍ଷଣଚାରୁହାସମ୍ ।
ବେଣୁଂ କ୍ୱଣନ୍ତମନୁଗୈରନୁଗୀତକୀର୍ତ୍ତିମ୍
ଗୋପ୍ୟୋ ଦିଦୃକ୍ଷିତଦୃଶୋଽଭ୍ୟଗମନ୍ ସମେତାଃ ॥

(ଶ୍ରୀ ଭା ୧୦ ସ୍କ, ୧୫ ଅ, ୪୨ ଶ୍ଳୋକ)

## ଛପ୍‌ପୟ

ଇତ ଧେନୁକ ବଧ ସୁନତ କୁପିତ ଖର ଦୌରେ ଆୟେ ।
ବନ୍ଧୁ ବଘାତୀସମ ଶ୍ୟାମପେ ବହୁତ ରିସ୍ୟାୟେ ॥
ପକରେଂ ଦୋନୀଂ ଟାଁଗ ଖରନକୁଁ ମାରି ଗିରାବେଂ ।
ମାରି ମାରିକେଂ ପେଂକ ତାଲ ତରୁବରନ ହିଲାବେଂ ॥
ସକଲ କରେୟା ବନ ଖର ରହିତ, ବୃନ୍ଦାବନ ହରି ଚଲି ଦୟେ ।
ଆବତ ମୁରଲୀଧର ସୁନେ, ନର ନାରୀ ହରଷିତ ଭୟେ ॥

ସମ୍ପୁଟରେ ରହି ପଲକ ମାରିବାର—ଦର୍ଶନରେ ଯେଉଁ ବ୍ୟବଧାନ ରହେ, ତାହା ଯଦି ଅସହ୍ୟ ପ୍ରତୀତ ହୁଏ, ତେବେ ଯେ ଦିନସାରା ବନକୁ ଯାଇ ଗାଈ ଚରାଏ, ତାହାର ସେ ଦିନର ବିୟୋଗ ଯେ କେତେ ଅସହ୍ୟ ହେଉ ନ ଥିବ ? ସେହି ବିୟୋଗ ସମୟତକ ବ୍ରଜବନିତାଗଣ କିପରି ଯେ କଟାଉଥିବେ ସେହି ପରିସ୍ଥିତିର ଅନୁଭବ ସ୍ନେହହୀନ ପ୍ରାଣୀ କିପରି ଅବା କରି ପାରିବେ ? ବହୁ ସମୟ ପ୍ରତୀକ୍ଷା କରିବା ପରେ ଯେଉଁ ସଂଯୋଗ ହୁଏ, ତାହା ଯେ କେତେ ସୁଖଦାୟକ ଓ ଆନନ୍ଦଦାୟକ, ବିୟୋଗିନୀ ବ୍ୟତିରେକେ ତାହା ସହଜରେ କେହି ଅନୁଭବ କରି ନ ପାରନ୍ତି । ବ୍ରଜବନିତାମାନଙ୍କ ପାଇଁ ବନରୁ ଫେରି ପୁନଶ୍ଚ ଗୋଷ୍ଠରେ ପ୍ରବେଶ କରିବା ସମୟତକ ଶ୍ୟାମସୁନ୍ଦରଙ୍କ ଦର୍ଶନ ପ୍ରତ୍ୟହ ନୂତନ ନୂତନ ପ୍ରକାରରେ ପ୍ରତୀତ ହୋଇଥାଏ । ନିତ୍ୟ ନୂତନ ସେହିଭଳି ଦର୍ଶନ ଲାଭକରି ସୌଭାଗ୍ୟବତୀ କୃଷ୍ଣଦର୍ଶନାନୁରାଗିଣୀ ବ୍ରଜାଙ୍ଗନାଗଣ ଧନ୍ୟ ହୁଅନ୍ତି । କୃତାର୍ଥ ହୋଇଯାଆନ୍ତି ।

ଶ୍ୟାମସୁନ୍ଦରଙ୍କର ଫେରିବା ସମୟର ମୁରଲୀଧ୍ୱନି ଶୁଣି ସେମାନେ ନିଜକୁ ଧନ୍ୟ ମନେ କରନ୍ତି । ସେତେବେଳେ ସେମାନେ ଆତ୍ମବିସ୍ମୃତ ହୋଇ ପଡ଼ନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ଶଙ୍କର୍ଷଣାବତାର ଭଗବାନ ବଳରାମ ଲୀଳା ଛଳରେ ସେହି ଧେନୁକାସୁରକୁ ମାରି ପକାଇଲେ । ସେହି ଶେଷାବତାର ଜଗତ୍‌ପତି ଅନନ୍ତପ୍ରଭୁଙ୍କ ପାଇଁ ଏହା କୌଣସି ଆଶ୍ଚର୍ଯ୍ୟ ବିଷୟ ନ ଥିଲା । ସମସ୍ତ ବିଶ୍ୱ ତାଙ୍କଠାରୁ ହିଁ ଉତ୍ପନ୍ନ ହୋ'ଇ ତାଙ୍କଠାରେ ସ୍ଥିତ ହୁଏ ଓ ଶେଷରେ ତାଙ୍କଠାରେ ହିଁ ବିଲୀନ ହୋଇଯାଏ । କଙ୍କଣ କୁଣ୍ଡଳାଦିରେ କନକ ଭଳି ଘଟ ଓ ସରା ଆଦିରେ ମୃତ୍ତିକା ଭଳି, ହାତୀ, ଘୋଡ଼ା, ଓଟ ଓ ଗାଈ ଆଦିଙ୍କ ଶରୀରରେ ଶର୍କରା ଭଳି ତଥା ପଟ୍ଟରେ ତନ୍ତୁ ସମାନ ଯେ ଏହି ବିଶ୍ୱରେ ବ୍ୟାପ୍ତ ହୋଇଛନ୍ତି, ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଯାହାଙ୍କଠାରେ ଓତଃପ୍ରୋତ ଭାବରେ ଜଡ଼ିତ, ସେହି ଶେଷଦେବ ପ୍ରଭୁଙ୍କ ପାଇଁ ତୁଚ୍ଛ ଗଧଟାକୁ ମାରିବା କେବଳ ଖେଳନା ମାତ୍ର ।

ଧେନୁକାସୁରର ବଧ କଥା ଶୁଣି ତାହାର ଅନ୍ୟ ଜ୍ଞାତି ବନ୍ଧୁ ଅତ୍ୟନ୍ତ କୁପିତ ହୋଇ ରଡ଼ିକରି ରାମ ଓ ଶ୍ୟାମଙ୍କୁ ଖୁବ୍ ଜୋର୍‌ରେ ଲାତ ମାରିବାକୁ ଧାଇଁଲେ । ଶ୍ରୀ ବଳଦେବ ଓ ଶ୍ୟାମସୁନ୍ଦର ଉଭୟେ ସୁମେରୁ ଓ ଅଞ୍ଜନର ଦୁଇ ଶିଖର ସଦୃଶ ଅବିଚଳିତ ଭାବରେ ଠିଆ ହୋଇଥିଲେ । ଯେଉଁ ଗଧ ତାଙ୍କ ପାଖକୁ ଆସୁଥିଲା, ତାଙ୍କ ଗୋଡ଼କୁ ଧରି ଘୂରାଇ ଘୂରାଇ ଦୂରକୁ ଫିଙ୍ଗି ଦେଉଥିଲେ । ସେହି ସମୟର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା । ମୃତ ଗଧଗୁଡ଼ିକ ଇତସ୍ତତଃ ମୁହଁମାଡ଼ି ପଡ଼ୁଥିଲେ । ସେମାନଙ୍କୁ ଜୋର୍‌କରି ଫିଙ୍ଗିବା ଦ୍ୱାରା ଗଛରେ ବାଜି ବଡ଼ ବଡ଼ ତାଳଗଛମାନ ଭାଙ୍ଗି ପଡ଼ୁଥିଲା । ଗଛରେ ଥିବା ବଡ଼ ବଡ଼ ଲାଲ ରଙ୍ଗର ଫଳ ଭୂମିରେ ବିସ୍ତୃତ ହୋଇ ପଡ଼ିବା ଦ୍ୱାରା ଭୂମି ରକ୍ତରଞ୍ଜିତ ହେବା ଭଳି ପ୍ରତୀତ ହେଉଥିଲା । ତାଳଗଛରୁ ଯେଉଁ ରସ ଝରି ଆସୁଥିଲା, ତାହା ଗନ୍ଧରେ (ତାଡ଼ିର ଗନ୍ଧରେ) ସେଠାର ବାୟୁମଣ୍ଡଳ ଗନ୍ଧଯୁକ୍ତ ହୋଇଯାଇଥିଲା । ମୃତ ଗର୍ଦ୍ଦଭଙ୍କ ଶରୀରଗୁଡ଼ିକ ଓ ଭାଙ୍ଗିଯାଇଥିବା ତାଳଗଛଗୁଡ଼ିକର ଭଲ ଭଲ ପକ୍ୱ ଅପକ୍ୱ ଫଳ ଏପରି ପ୍ରତୀତ ହେଉଥିଲା ଯେ, ତାହା ସତେ ଯେପରି ମେଘମାଳା ଆଚ୍ଛାଦିତ ଆକାଶ ମଣ୍ଡଳ ପରି ଶୋଭା ପାଉଥିଲା ।

ଦେବତାମାନେ ଦେଖିଲେ—ଦୟାସାଗର ଦେବକୀନନ୍ଦନ ଦୈତ୍ୟାରି ଧେନୁକକୁ ଓ ତାହାର ଜାତିକୁଳ ଅନ୍ୟ ଦୈତ୍ୟଙ୍କୁ ପରଲୋକ ପଠାଇ ଦେଇଛନ୍ତି । ଏଥିପାଇଁ ସେମାନେ ପରମ ଆନନ୍ଦରେ କୃଷ୍ଣ ଓ ବଳରାମଙ୍କ ଉପରେ ପୁଷ୍ପବୃଷ୍ଟି କରିବାରେ ଲାଗିଲେ । ଶଙ୍ଖ, ଦୁନ୍ଦୁଭି, ମୃଦଙ୍ଗ ଓ ପଣବାଦ୍ୟ ବଜାଇବାକୁ ଲାଗିଲେ । ବ୍ରଜବାସୀ ଆବାଲବୃଦ୍ଧବନିତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ପ୍ରତ୍ୟେକେ ସେହି ପକ୍ୱ ତାଳ ଫଳକୁ ଖାଇବା ପାଇଁ ଆଶା କରିଥିଲେ; କିନ୍ତୁ ଧେନୁକାସୁର ଭୟରେ ଖାଇପାରୁ ନ ଥିଲେ ।

ଏବେ ସମସ୍ତେ ସ୍ୱଚ୍ଛନ୍ଦରେ ରାଜ୍ୟ ଅଧିକାର କରିବା ଭଳି ସେହି ବନରେ ପଶି ମନଇଚ୍ଛା ଫଳ ଖାଇ ପାରିଲେ । ପଶୁଗଣ ସେଠାକୁ ଯାଇ ନିର୍ଭୟରେ ଘାସ ଚରିବାକୁ ଲାଗିଲେ ।

ଗୋପବାସୀ ସମସ୍ତେ ଆଜି ପେଟପୂରି ପକ୍ୱତାଳ ଖାଇଲେ । ସମସ୍ତଙ୍କ ଚିତ୍ତରେ ଆନନ୍ଦ ଭରିଗଲା, ଅମ୍ବିକା ହାକୁଟି ଉଠିଲା । ସମସ୍ତେ କହିଲେ—"କହ୍ନେଇ ଭାଇ ! ଏବେ ଚାଲ ଫେରିଯିବା, ଭଗବାନ ଭୁବନଭାସ୍କର ସେତେବେଳେ ଅସ୍ତାଚଳ ଚୂଡ଼ା ଅନ୍ତରାଳକୁ ପ୍ରସ୍ଥାନ କରିବା ପାଇଁ ବ୍ୟଗ୍ରହୋଇ ତାଙ୍କର ସୁନେଲି କିରଣରେଣୁ ବନମଧ୍ୟରେ ବିସ୍ତାରି ଦେଇଥିଲେ । ସମସ୍ତେ ନିଜ ନିଜ ଘରକୁ ଫେରି ଯିବାକୁ ଶ୍ରୀକୃଷ୍ଣଙ୍କୁ କହିଲେ ।

ସଖାମାନଙ୍କର ଏ କଥା ଶୁଣି ବଳରାମଙ୍କ ସହିତ ଶ୍ୟାମସୁନ୍ଦର ଗାଈମାନଙ୍କୁ ଡାକିଲେ । ଲକ୍ଷ ଲକ୍ଷ ଗାଈ ମନ୍ଥର ଗତିରେ ବ୍ରଜ ଅଭିମୁଖେ ଚାଲିବାକୁ ଲାଗିଲେ । ସେମାନଙ୍କ ପଛେ ପଛେ ବଂଶୀ ବଜାଇ, ସଖାଗଣଙ୍କ ସହିତ ବାର୍ତ୍ତାଲାପକରି, ମନ୍ଦ ମନ୍ଦ ହସି, ସମସ୍ତଙ୍କୁ ହସାଇ ବନର ଶୋଭା ଦେଖି ଦେଖି ଆନନ୍ଦକନ୍ଦ ଭଗବାନ ନନ୍ଦନନ୍ଦନ ଫେରି ଆସୁଥିଲେ । ସେତେବେଳେ ତାଙ୍କର ଶୋଭାକୁ ଦେଖି କିଏ ଶୋଭାରାଣୀ ସରମରେ ମଉଳିଗଲେ ।

ଯାହାଙ୍କର ଦୁଇ ନୟନ ବିକସିତ କମଳ ସଦୃଶ, ଏପରି ଭଜନୀୟ କୀର୍ତ୍ତିମାନ ପୁଣ୍ୟ-ଶ୍ଲୋକ ଭଗବାନ ଗାଈଙ୍କ ପଛେ ପଛେ ଗୋଷ୍ଠ ମଧ୍ୟକୁ ପ୍ରବେଶ କରିବାକୁ ଲାଗିଲେ । ବଂଶୀ ବଜାଇବାଦ୍ୱାରା ତାଙ୍କର କପୋଳଦେଶ ଝଲମଲ ହୋଇ ବିକଶି ଥାଏ । ଗୋରୁଙ୍କର ସହସ୍ର ସହସ୍ର ଖୁରା ଚାଳନାରେ ଗୋଧୂଳି ଆକାଶକୁ ଉଡ଼ିଯାଉ ଥାଏ । ସେହି ଗୋପୀଜନବଲ୍ଲଭ ବ୍ରଜେନ୍ଦ୍ରନନ୍ଦନ ଶ୍ୟାମସୁନ୍ଦରଙ୍କର ଅଳକା ଉପରେ ପଲକରେ କପୋଳର ଝଲକରେ ତାହା ଉଡ଼ି ପଡ଼ୁଥାଏ । ଧୂଳି ଧୂସରିତାଙ୍ଗ ମାଧବଙ୍କର ମୟୂର ମୁକୁଟ ଉପରେ ସ୍ଥାନେ ସ୍ଥାନେ ବନ୍ୟ ପୁଷ୍ପ ଝରି ପଡ଼ୁଥାଏ । ଏହାଦ୍ୱାରା ତାଙ୍କ ଶୋଭା ବିଚିତ୍ର ହୋଇଥାଏ । ମଦ୍ୟପ ଯେପରି ବନ୍ଦଥିବା ମଦ ଦୋକାନ ଖୋଲିଯିବା ପାଇଁ ପ୍ରତୀକ୍ଷା କରି ଉତ୍ସୁକତା ପୂର୍ବକ ଏପାଖ ସେପାଖ ହେଉଥାଏ, ସେହିପରି ଦିନସାରା ବିରହତାପରେ ସନ୍ତପ୍ତ ହୋଇ ଦର୍ଶନାଭିଳାଷୀ ବ୍ରଜାଙ୍ଗନାଗଣ ଶ୍ରୀକୃଷ୍ଣଙ୍କ ଆଗମନର ପ୍ରତୀକ୍ଷାରେ ସ୍ନେହଭରା ହୃଦୟର ଭାରକୁ କଷ୍ଟରେ ବହନ କରି ବାଟକୁ ଚାହିଁ ଠିଆ ହୋଇ ଥାଆନ୍ତି । ଯେତେବେଳେ ସେମାନେ ଶ୍ୟାମସୁନ୍ଦରଙ୍କୁ ଦୂରରୁ ଦେଖି ପକାନ୍ତି, ସେତେବେଳେ ସତେଯେପରି ସେମାନଙ୍କର ସମସ୍ତ ଦୁଃଖ ଦୂର ହୋଇଯାଏ । ଅତ୍ୟନ୍ତ ବୁଭୁକ୍ଷିତଙ୍କ ସମ୍ମୁଖରେ ସ୍ୱାଦିଷ୍ଟ ଅନ୍ନ ପରସାଯିବା କ୍ଷଣି ସେମାନେ ଯେପରି ଶୀଘ୍ର ଶୀଘ୍ର ଖାଇ ପକାନ୍ତି, ନିଦାଘ ଜ୍ୱରରେ ଆସିଥିବା ବହୁ ସମୟରୁ ପିପାସିତ ବ୍ୟକ୍ତି ଜଳାଶୟ ନିକଟକୁ ଆସି ପେଟଭରି ଜଳପାନ କରେ, ସେହିପରି ଅପଲକ ନେତ୍ରରେ ଚାହିଁରହିଥିବା ବ୍ରଜାଙ୍ଗନାଗଣ ବ୍ରଜବିହାରୀଙ୍କର

ରୂପମାଧୁରୀ ପାନ କରିବାରେ ଲାଗିଲେ । ସେମାନଙ୍କର ଭ୍ରମର ସଦୃଶ ଚଞ୍ଚଳ ନେତ୍ର ଶ୍ରୀକୃଷ୍ଣଙ୍କ ମୁଖକମଳ ମକରନ୍ଦରେ ସତେ ଯେପରି ଲାଖି ରହିଥାଏ । ସେମାନଙ୍କର ବାଣୀ ରୁଦ୍ଧ ହୋଇଯାଇ ଥାଏ । ଅନୁରାଗରେ ବାଣୀ ବ୍ୟର୍ଥ ହୋଇଯାଇ ଥାଏ । ସେମାନଙ୍କ ମୁଖରୁ ପଦେହେଲେ କଥା ବାହାରୁ ନ ଥାଏ । ସେମାନେ ନିଜ ନିଜର ସଲଜ୍ଜ ହାସ୍ୟପୂର୍ଣ୍ଣ ବିନୟ ପ୍ରଣୟ କଟାକ୍ଷ ରୂପକ ଉପାୟନ ଦ୍ୱାରା ସେମାନେ ଶ୍ୟାମସୁନ୍ଦରଙ୍କର ସତ୍କାର କରୁଥିଲେ । ଗାଈଗୁଡ଼ିକୁ ଖୁଣ୍ଟରେ ବାନ୍ଧି ବଳରାମଙ୍କ ସହିତ ଶ୍ରୀକୃଷ୍ଣ ଘର ଭିତରେ ଥିବା ମାତା ଯଶୋଦା ଓ ରୋହିଣୀ ଦେବୀଙ୍କ ନିକଟକୁ ଗଲେ ।

ସେହି ପୁତ୍ରବତ୍ସଳା ମାତାଦ୍ୱୟ ନିଜ ନିଜର ପ୍ରାଣାଧିକ ପ୍ରିୟ ପୁତ୍ର ଦୁହିଙ୍କୁ ବନରୁ ଫେରିଥିବାର ଦେଖି ଅଧୀର ହୋଇ ନେତ୍ରରୁ ଅଶ୍ରୁ ବିସର୍ଜନ କଲେ । ସେହି ଅଶ୍ରୁନୀରରେ ପୁତ୍ର ଦୁହିଙ୍କର କେଶ ଭିଜିଗଲା । ସେଥିରେ ଗୋଧୂଳି ଧୋଇ ହୋଇଗଲା । ଏହିପ୍ରକାର ଭାବ ପ୍ରଦର୍ଶିତ କରି ସେ ଦୁହେଁ ବାରମ୍ବାର ପୁତ୍ର ଦ୍ୱୟଙ୍କୁ ହୃଦୟରେ ଲଗାଇ ଦିନସାରା ସେମାନଙ୍କୁ ଲାଗିଥିବା ବିରହତାପ ଶାନ୍ତ କରିବାକୁ ଲାଗିଲେ । ନିଜ ନିଜ ପଣତ କାନିରେ ତାଙ୍କ ଗୋଧୂଳି ପୋଛି ପୋଛି ଅନେକ କଲ୍ୟାଣ ଅଜାଡ଼ି ଦେଲେ । ସେମାନେ କହୁଥିଲେ, "ମୋ' ଧନ ଶୀଘ୍ର ବଡ଼ ହୋଇ ଯାଉ, ବାହା ହେଉ, ବୋହୂ ଆସନ୍ତୁ ।"

ଏହି ପ୍ରକାର ସ୍ନେହାଶୀର୍ବାଦ କରି ମା' ଦୁହେଁ ପିଲାଙ୍କ ଅଙ୍ଗକୁ ପରିଷ୍କାର କରି ସ୍ୱଚ୍ଛ କରିଦେଲେ । ସୁଗନ୍ଧିତ ତୈଳ ଲଗାଇ ଦେଇ ସ୍ୱଚ୍ଛ ସଲିଳରେ ସେମାନଙ୍କୁ ସ୍ନାନ କରାଇଲେ । ସଫା ହୋଇଥିବା ସୁନ୍ଦର ବସ୍ତ୍ର ପରିଧାନ କରାଇଲେ । ସୁଗନ୍ଧିତ ଦ୍ରବ୍ୟ ମାଳାରେ ଓ ଅତର ଚନ୍ଦନାଦିରେ ଦୁହିଙ୍କର ଶୋଭାଯୁକ୍ତ ଶରୀରକୁ ଅଧିକ ସୁଶୋଭିତ କରାଇଲେ । ସୁନ୍ଦର ସୁନ୍ଦର ଷଡ଼ରସଯୁକ୍ତ ଖାଦ୍ୟପଦାର୍ଥ ବହୁ ପ୍ରକାରରେ ପ୍ରସ୍ତୁତ କରି ମା' ଦୁହେଁ ଅତି ଆଦର ସହକାରେ ନିଜ ନିଜର ଅଲିଅଳ ପୁତ୍ରଙ୍କୁ ଖୁଆଇ ଦେଲେ । ସ୍ୱଚ୍ଛ ବାୟୁରେ ଦିନସାରା ବନ ଉପବନରେ ଗାଈଙ୍କ ପିଛା ବୁଲି ବୁଲି ପୁତ୍ର ଦ୍ୱୟଙ୍କୁ ଭାରି ଭୋକ ହେଉଥିଲା । ମାତାଙ୍କର ସ୍ନେହସତ୍କାର ଓ ଆଗ୍ରହ ପୂର୍ବକ ପରସା ଯାଇଥିବା ସୁସ୍ୱାଦୁ ଅନ୍ନରେ, ଭୋକ, ଶୋଷ, ଶୋକ, ମୋହ ତଥା ଜରା ମୃତ୍ୟୁ ଏହି ଷଡ଼ ଊର୍ମିରୁ ରହିତ ହୋଇ ମଧ୍ୟ ଏ ଦୁହେଁ, ନିଜ ନିଜର ବୁଭୁକ୍ଷାକୁ ଶାନ୍ତ କଲେ । ଏହାପରେ ବକପକ୍ଷୀ ସଦୃଶ ଦୁଗ୍ଧ ଫେଣ ସଦୃଶ, କର୍ପୂର ସଦୃଶ ସ୍ୱଚ୍ଛ, ସୁନ୍ଦର ସୁଖକର ଶଯ୍ୟାରେ ଶ୍ୟାମସୁନ୍ଦର ନିଜର ଅଗ୍ରଜଙ୍କ ସହିତ ଶୟନ କରିବାକୁ ଗଲେ ।

ସୂତ କହୁଛନ୍ତି—"ମୁନିଗଣ ! ରାମ ଓ ଶ୍ୟାମ ଏହିପରି ଭାବରେ ଧେନୁକାସୁର ତଥା ତାହାର ଅନ୍ୟ ସାଥୀ ଅସୁରମାନଙ୍କୁ ବଧକରି ତାଳବନକୁ ଭୟରହିତ କରିଥିଲେ ଓ ବ୍ରଜକୁ ଫେରିଆସି ପ୍ରତ୍ୟେକ ବ୍ରଜବାସୀ ନରନାରୀଗଣଙ୍କୁ ସୁଖ ଦେଇଥିଲେ । ଏବେ ଏହାପରେ ମୁଁ କାଳୀୟ ନାଗ କିପରି ଦଳନ କରାଗଲା, ସେ କଥା ଆପଣମାନଙ୍କୁ କହିବି ।"

## ଛପ୍‌ପୟ

ସାଁଝ ସମୟ ଶ୍ରୀଶ୍ୟାମ ସଖନ ସଙ୍ଗ ସୁଖତେଁ ଆବତ ।
ମନ୍ଦ-ମନ୍ଦ ମୁସକାତ ମଧୁର ସ୍ୱର ବେନୁ ବଜାବତ ॥
ଅଲକନ ପଲକନ ଓର କପୋଲନକୀ ଝଲକନ ପେ ।
ଗୋରଜ ଛାଇ ମୁକୁଟ, ପୀତପଟ, ଲକୁଟ, ଲଟକନ ପେ ॥
କର ପ୍ରବେଶ ବ୍ରଜମହେଁ ସକଲ, ବିରହ ତାପ ସବକୋ ହରୟୋ ।
ଭୋଜନ କର ଦାଊ ସହିତ, ଶ୍ୟାମ ଶୟନ ଶଯ୍ୟା କରୟୋ ॥



# କାଳୀୟଦଳନ ପ୍ରସ୍ତାବ

ବିଲୋକ୍ୟ ଦୂଷିତାଂ କୃଷ୍ଣାଂ କୃଷ୍ଣଃ କୃଷ୍ଣାହିନା ବିଭୁଃ ।
ତସ୍ୟା ବିଶୁଦ୍ଧିମନ୍ୱିଚ୍ଛନ୍ ସର୍ପଂ ତମୁଦବାସୟତ୍ ॥

(ଶ୍ରୀ ଭା: ୧୦ ସ୍କ, ୧୬ ଅ, ୧ ଶ୍ଳୋକ)

## ଛପ୍‌ପୟ

ଲୟେ ଗ୍ୱାଲ ଅରୁ ଗାୟ ଗୟେ ଯମୁନା ତଟ ବ୍ରଜପତି ।
ଆଜ ନ ସଁଗ ବଲରାମ ଗ୍ରୀଷ୍ମ ଋତୁ ଘାମ ବିକଟ ଅତି ॥
କାଲୀୟହ୍ରଦକେ ନିକଟ ପ୍ୟାସତେଁ ସବ ଘବରାୟେ ।
କର ବିଷୟୁତ ଜଲପାନ ଗ୍ୱାଲ ଗୌ ପ୍ରାନ ଗମାୟେ ॥
ଅମୃତମୟୀ ଲଖି ଦୃଷ୍ଟିତେଁ, ଜୀବିତ ପ୍ରଭୁ ନେ ସବ କରେ ।
କରୀ କୃପା କରୁନାୟତନ, ଦୁଃଖ ଆଶ୍ରିତନକେ ହରେ ॥

ସମସ୍ତଙ୍କ ସହିତ ଶ୍ୟାମସୁନ୍ଦର ସର୍ବଦା ବିହାର କରୁଛନ୍ତି । ସେ ନିଜ ଆଶ୍ରିତଙ୍କଠାରୁ କଦାପି ଦୂରରେ ରହିପାରନ୍ତି ନାହିଁ । ଏପରି କୌଣସି ସ୍ଥାନ ନାହିଁ ଯେଉଁଠାରେ କି ସେ ନ ରହନ୍ତି । ଶ୍ୟାମସୁନ୍ଦରଙ୍କ ସଙ୍ଗରେ ରହି ମଧ୍ୟ ଏ ଜୀବ ବିଷୟରୂପୀ ବିଷକୁ ସ୍ୱଇଚ୍ଛାରେ

ପାନ କରୁଛ । ସଂସାରରେ ସନ୍ତାପଦ୍ୱାରା ସନ୍ତପ୍ତ ଓ ଭୋଗେଚ୍ଛାରୂପୀ ପିପାସାରେ ବ୍ୟାକୁଳ ହୋଇ ଜୀବ ଅନବରତ୍ୟ ଷଡ଼େନ୍ଦ୍ରିୟ ବିଷୟସବୁକୁ ନିଜର ପିପାସା ଶାନ୍ତକାରୀ ବସ୍ତୁ ବୋଲି ଭାବି, ଭଗବାନଙ୍କ କଥା ନ ଭାବି ତାହା ଆକଣ୍ଠ ପାନ କରୁଅଛୁ । ତାକୁ ହିଁ ଆଦର ନେଇ ଶେଷକୁ ଦୁଃଖ ଭୋଗ କରୁଛୁ । ବିଷ ପ୍ରଭାବରେ ମୃତ୍ୟୁବରଣ କରୁଛୁ । ଜନ୍ମମୃତ୍ୟୁ ଚକ୍ରରେ ପଡ଼ି ଯାଉଛୁ । ସେହି ବିଷୟରୂପକ ବିଷ ପାନ କଲାପରେ ତହିଁରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି ଶ୍ରୀକୃଷ୍ଣଙ୍କର କୃପାମୟୀ ଅମୃତ ଦୃଷ୍ଟି ରୂପକ ଅମୃତ ବୃଷ୍ଟିପାତ । ଶ୍ୟାମସୁନ୍ଦର ହିଁ ଚାହିଁଲେ କୃପାଦୃଷ୍ଟି ଦ୍ୱାରା ଜୀବକୁ ବଞ୍ଚାଇ ଦେଇ ପାରନ୍ତି । ଅନ୍ୟଥା ବିଷୟ ବିଷ କ୍ଲିଷ୍ଟ ପ୍ରାଣୀକୁ କୌଣସି ଚିକିତ୍ସା ଦ୍ୱାରା ବଞ୍ଚାଇ ହେବନାହିଁ କିମ୍ବା ଏଥିପାଇଁ କୌଣସି ଔଷଧ ବା ଉପଚାର ନାହିଁ ।

ସୂତ କହୁଛନ୍ତି—"ମୁନିଗଣ ! ବୃନ୍ଦାବନଠାରୁ କିଛି ଦୂରରେ ଯମୁନା କୂଳରେ ଗୋଟିଏ ହ୍ରଦ ଥିଲା । ବର୍ଷା ଋତୁରେ ତାହା ଯମୁନା ନଦୀ ସହିତ ଏକାକାର ହୋଇ ଯାଉଥିଲା; କିନ୍ତୁ ବର୍ଷାଋତୁ ପରେ ତାହା ଯମୁନା ନଦୀଠାରୁ ସାମାନ୍ୟ ପୃଥକ୍ ହୋଇ ଯାଉଥିଲା । ତଥାପି ଯମୁନା ନଦୀ ମଧ୍ୟରୁ ହ୍ରଦକୁ ସର୍ବଦା ଜଳ ସଂଯୋଗ ଥିଲା । ତାହା ଯମୁନାର ଏକ ଅଂଶ ବୋଲି କହିଲେ ଚଳେ । ସେହି ହ୍ରଦରେ କାଳୀୟ ନାମକ ନାଗରାଜ ବାସ କରୁଥିଲା । ସେ ସାଧାରଣ ସର୍ପ ନ ଥିଲା । ନାଗ ହେଉଛି ଏକ ଉପଦେବଙ୍କ ସଂଜ୍ଞା । ସେ ପୃଥିବୀର ସପ୍ତପାତାଳ ତଳେ ରହେ । ତା' ପାଖରେ ବଡ଼ ବଡ଼ ମଣି ସବୁ ରହିଥାଏ । ସେହି ମଣିର ଆଲୋକରେ ତାହାର ଘର ଆଲୋକିତ ହୁଏ । ପାତାଳପୁରକୁ ସୂର୍ଯ୍ୟ କିରଣ ଯାଇ ପାରେ ନାହିଁ । ପ୍ରଥମେ କେତେକ ନାଗ ଭୂପୃଷ୍ଠରେ ରହୁଥିଲେ; କିନ୍ତୁ ଏବେ ସେମାନେ ଆଉ ହେଉନାହାନ୍ତି । ଯେପରି ମୁନି ଋଷି ଓ ଅସୁର ଆଉ ପୃଥିବୀରେ ଏବେ ଆଉ ଦୃଷ୍ଟିଗୋଚର ହେଉ ନାହାନ୍ତି, ସେହିପରି ପ୍ରକୃତ ନାଗମାନେ ଆଉ ଦୃଷ୍ଟିଗୋଚର ହେଉ ନାହାନ୍ତି । ଏମାନେ ସର୍ପର ଆକାର ; କିନ୍ତୁ ନିଜ ଇଚ୍ଛା ଅନୁସାରେ ଦେବତାଙ୍କ ପରି ରୂପ ବଦଳାଇ ପାରୁଥିଲେ । ଏମାନଙ୍କର ସ୍ତ୍ରୀମାନେ ମାନବୀ ସ୍ତ୍ରୀଙ୍କ ଭଳି ଥିଲେ । ଏମାନଙ୍କ ମୁଖରେ ବିଷ ରହୁଥିଲା ଓ ଶିର ଉପରେ ମଣି ରହୁଥିଲା । କାଳୀୟ ନାଗର ସହସ୍ର ଫଣା ଥିଲା । ସେ ଅତ୍ୟନ୍ତ ବଳବାନ୍ ଥିଲା । ନିଜର ବଳ ମଦରେ ସେ ପକ୍ଷୀରାଜ ଗରୁଡ଼ଙ୍କ ସହିତ ତାଳ ଦେଉଥିଲା; କିନ୍ତୁ ଯାହା ସେପରି ଗୋବିନ୍ଦଙ୍କ ସହିତ ବଳ କଷା କରି ପାରେ ନାହିଁ, ସେହିପରି କାଳୀୟ ମଧ୍ୟ ଗରୁଡ଼ଙ୍କ ସହିତ ସମକକ୍ଷ ହେଇପାରେ ନାହିଁ । ଏହି କାଳୀୟ ନାଗ ବୃନ୍ଦାବନ ନିକଟସ୍ଥ ଯମୁନାକୂଳରେ ଥିବା ହ୍ରଦରେ ରହୁଥିଲା । ସେଠାରେ ସେ ରହୁଥିବାରୁ ତା' ନାମ ଅନୁସାରେ ସେହି ହ୍ରଦର ନାମ ଖ୍ୟାତ ହୋଇଥିଲା । ସେହି ହ୍ରଦକୁ ସମସ୍ତେ କାଳୀୟ ହ୍ରଦ ବୋଲି କହୁଥିଲେ । ସେହି କାଳୀୟ

ନାଗ ହ୍ରଦରେ ଏକ ବିଶାଳ ଭବନ ନିର୍ମାଣ କରି ନିଜର ସ୍ତ୍ରୀ ପିଲାଙ୍କ ସହିତ ସୁଖରେ ରହୁଥିଲା । ତା' ବିଷରେ ହ୍ରଦର ଜଳ ବିଷମୟ ହୋଇ ଯାଇଥିଲା । ତେଣୁ କେହି ସେ ହ୍ରଦର ଜଳ ପାନ କରୁ ନ ଥିଲେ । ସେଥିରୁ ଜଳ ବାହି ଯାଇ ଯମୁନାରେ ପ୍ରବେଶ କରୁଥିଲା । ତେଣୁ ସେ ସ୍ଥାନରେ ଯମୁନାର ଜଳ ମଧ୍ୟ ବିଷାକ୍ତ ହୋଇ ଯାଇଥିଲା । କାଳୀୟ ନାଗ ଭୟରେ ସେ ହ୍ରଦ ନିକଟରୁ କୌଣସି ପଶୁ ପକ୍ଷୀ ମଧ୍ୟ ପାଣି ପିଇବାକୁ ଯାଉ ନ ଥିଲେ, ଅନ୍ୟମାନଙ୍କ କଥା ଛାଡ଼ । ହ୍ରଦର ଆଖ ପାଖରେ ଥିବା ବୃକ୍ଷଗୁଡ଼ିକ ତା' ବିଷ ଜ୍ୱାଳାରେ ଜଳି ଯାଉଥିଲେ । କେବଳ ଗୋଟିଏ ମାତ୍ର କଦମ୍ବ ଗଛ ବଞ୍ଚି ଯାଇଥିଲା ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ବିଷ ଜ୍ୱାଳାରେ ଯେତେବେଳେ ସମସ୍ତ ଗଛ ଜଳି ଯାଇଥିଲେ, ସେତେବେଳେ କଦମ୍ବ ଗଛଟି ରହିଗଲା କିପରି ?"

ସୂତ କହିଲେ—"ମହାରାଜ ! ଯେତେବେଳେ ଗରୁଡ଼ ସ୍ୱର୍ଗରୁ ଅମୃତ କଳସ ନେଇ ନାଗଙ୍କୁ ଦେବାକୁ ଆସିଥିଲେ, ସେତେବେଳେ ସେ ସେହି କଦମ୍ବ ଗଛରେ କିଛି ସମୟ ବିଶ୍ରାମ କରିଥିଲେ । ସେ ସମୟରେ ସେହି ଗଛ ଉପରେ କେତେକ ଅମୃତ ବିନ୍ଦୁ ପଡ଼ି ଯାଇଥିଲା । ସେଥିପାଇଁ ବିଷର ପ୍ରଭାବ ତା' ଉପରେ ପଡ଼ି ନ ଥିଲା । ମୁଖ୍ୟ କଥା ହେଉଛି, ଏହି ଗଛ ଉପରେ ଭଗବାନ୍ ନନ୍ଦନନ୍ଦନଙ୍କର କ୍ରୀଡ଼ା କରିବାକୁ ଥିଲା । ସୃଷ୍ଟିର କୌଣସି କାର୍ଯ୍ୟ ତାଙ୍କ ପ୍ରେରଣା ବ୍ୟତିରେକେ ହୁଏ ନାହିଁ । ଯାହା ଭଗବାନଙ୍କର କ୍ରୀଡ଼ା ପାଇଁ ଉଦ୍ଦିଷ୍ଟ, ତାହା ତାଙ୍କର ଇଚ୍ଛାରେ ହିଁ ଜନ୍ମ ମରଣ ଲଭିଥାଏ ।"

କଂସ ମଧ୍ୟ ଏହି କଥା ଆଗରୁ ଜାଣିଥିଲା ଯେ କାଳୀୟ ହ୍ରଦକୁ ଯିଏ ଯିବ, ତାହାର ମୃତ୍ୟୁ ସୁନିଶ୍ଚିତ । ସେ ଭାବିଥିଲା, କାଳୀୟ ହ୍ରଦରେ କେତେକ ବିଷଯୁକ୍ତ କମଳ ରହିଛି, ଯେଉଁଗୁଡ଼ିକ କାଳୀୟ ବିଷରେ ନଷ୍ଟ ହୁଏ ନାହିଁ । ମୁଁ ନନ୍ଦରାଜାଙ୍କ ପାଖକୁ ଖବର ଦେଲେ ସେ ସେହି ହ୍ରଦରୁ ମୋ' ନିକଟକୁ ପଦ୍ମଫୁଲ ପଠାଇବେ । ଶ୍ରୀକୃଷ୍ଣଙ୍କର ନିଜ ବଳ ଓ ପୌରୁଷ ସକାଶେ ବଡ଼ ଗର୍ବ ହୋଇ ଯାଇଛି । ଯେତେବେଳେ ନନ୍ଦ ପଦ୍ମଫୁଲ ଆଣିବା ପାଇଁ ଗୋପାଳମାନଙ୍କୁ କହିବେ, ସେତେବେଳେ ସର୍ବ ପ୍ରଥମେ କୃଷ୍ଣ ହିଁ କହିବେ ଯେ, "ମୁଁ ଆଣିବି ।" ସେ ମୋର ବହୁତ ଅସୁରଙ୍କୁ ନାଶ କରିଛି । ଏହାଦ୍ୱାରା ତା'ର ବହୁତ ଗର୍ବ ହୋଇ ଯାଇଛି । ସେ ସେଠାକୁ ଗଲେ କଷ୍ଟରେ ମୃତ୍ୟୁବରଣ କରିବ । ଏହି ସବୁ କଥା ଚିନ୍ତା କରି ସେ ନନ୍ଦଙ୍କ ପାଖକୁ ଖବର ପଠାଇଥିଲା । ନନ୍ଦ ଅନ୍ୟମନସ୍କ ଭାବରେ ମଥୁରେଶ କଂସର ସନ୍ଦେଶ ଶୁଣି ଖବର ବାହକ ଦୂତକୁ ବିଦାୟ ଦେଇଥିଲେ ।

ସେଦିନ ନନ୍ଦ ଏକାନ୍ତରେ ଯଶୋଦାଙ୍କୁ କହୁଥିଲେ "ଶୁଣୁଛ ଯଶୋଦେ ! ମୁଁ ଜାଣି ପାରୁ ନାହିଁ ଯେ ଏ କଂସ କାହିଁକି ଆମ ପଛରେ ଲାଗିଛି । ସେ କାଳୀୟ ହ୍ରଦରୁ କମଳ ତୋଳି ପଠାଇବା ପାଇଁ ଏକ ଖବର ଦେଇଛି । ଯଦି ଏକଥା କୃଷ୍ଣ କାନରେ

ପଡ଼ିଯାଏ, ତେବେ ସେ ତ ସହଜେ ବଡ଼ ନଟଖଟିଆ ପିଲା । ଆମ କାହାର କଥା ନ ଶୁଣି ନିଶ୍ଚିତ ଭାବେ କାଳୀୟ ହ୍ରଦକୁ ଯିବ । ସେ ହ୍ରଦର ଜଳ ଏପରି ବିଷାକ୍ତ ଯେ, ଯିଏ ସେହି ଜଳକୁ ସ୍ପର୍ଶ କରେ, ସଙ୍ଗେ ସଙ୍ଗେ ସେଠାରେ ମରିଯାଏ । ତେଣୁ ଏକଥା ତାହାର କାନକୁ ଯେପରି ନ ଯାଏ । ଯାହା ହେବ ତେଣିକି ଦେଖାଯିବ । ମୁଁ କହି ଦେବ ଯେ, "ସେଠାକୁ ମୃତ୍ୟୁ ଭୟରେ କେହି ଗଲେ ନାହିଁ ।"

ସର୍ବାନ୍ତର୍ଯାମୀ କୃଷ୍ଣ ଶେଜ ଉପରେ ଜାଗ୍ରତ ରହି ପିତା-ମାତାଙ୍କ କଥା ଶୁଣୁଥିଲେ । ସେ ସ୍ଥିର କଲେ ଯେ ମୁଁ କାଲି କାଳୀୟ ହ୍ରଦକୁ ଯିବି ଓ କାଳୀୟ ନାଗକୁ ଦଳନ କରି ସେଠାରୁ କମଳ ଆଣି ଫେରିବି ।" ଏହି କଥା ସ୍ଥିର କରି ଭଗବାନ ଶୋଇଗଲେ ।

ପ୍ରାତଃକାଳରୁ ଉଠି ସେ ସନ୍ତୃପ୍ତ ମନରେ ଗୋପବାଳକମାନଙ୍କୁ ଏକାଠି କଲେ, ଗୋରୁମାନଙ୍କୁ ଫିଟାଇ ବନ ଆଡ଼କୁ ଯିବାକୁ ବାହାରିଲେ । ସେଦିନ ସେ ନିଜର ବଡ଼ ଭାଇ ବଳରାମଙ୍କୁ ସାଙ୍ଗରେ ନେଲେ ନାହିଁ । ସେ ଜାଣିଥିଲେ ଯେ, ବଡ଼ ଭାଇଙ୍କୁ ସାଙ୍ଗରେ ନେଲେ ଏହି କରୁଣାପୂର୍ଣ୍ଣ କ୍ରୀଡ଼ା ସଫଳ ହୋଇ ପାରିବ ନାହିଁ । ସେଥିପାଇଁ କୌଣସି ଛଳ ଯୁକ୍ତିରେ ସେଦିନ ସେ ବଳରାମଙ୍କୁ ବ୍ରଜରେ ଛାଡ଼ି ଚାଲିଗଲେ । ସେ ଗୋପାଳ ବାଳକ-ମାନଙ୍କୁ କହିଲେ—"ଦେଖଭାଇ ! ଆଜି ଆମ୍ଭେମାନେ ଏହିଆଡ଼େ ଗୋରୁ ଚରାଇବାକୁ ଯିବା ।"

ଗୋପାଳ ବାଳକଗଣ କୃଷ୍ଣଙ୍କ କଥାକୁ କେବେହେଲେ ଏଡ଼ି ଦେଇ ନ ଥିଲେ । ସେମାନେ ନିଜର ଇଚ୍ଛାକୁ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରି ଦେଇଥିଲେ । ତେଣୁ ସେମାନେ ପ୍ରସନ୍ନ ହୋଇ କହିଲେ—"ଆଚ୍ଛା ଠିକ୍ ଅଛି, ଆଜି ଏ ଆଡ଼େ ଯିବା ।" ଏହା କହି ସେମାନେ ଗୋରୁମାନଙ୍କୁ ଅଡ଼ାଇ ଅଡ଼ାଇ କାଳୀୟ ହ୍ରଦ ଆଡ଼କୁ ଚାଲିଲେ ।

ବୈଶାଖ ମାସ, ସୂର୍ଯ୍ୟ ରଶ୍ମି ଅତି ପ୍ରଖର ହୋଇଥାଏ । ଗାଈମାନେ ଚରି ଚରିକା ଧୀରେ ଧୀରେ ଚାଲି ଥାଆନ୍ତି । ମଧ୍ୟାହ୍ନ ସମୟରେ ଗୋପାଳ ବାଳକମାନେ ଗାଈମାନଙ୍କ ସହିତ ଯାଇ କାଳୀୟ ହ୍ରଦ ନିକଟରେ ପହଞ୍ଚିଲେ । ଗ୍ରୀଷ୍ମ ତାପରେ ସମସ୍ତେ ପୀଡ଼ିତ ଥିଲେ, ଶୋଷରେ ସମସ୍ତଙ୍କର ତୋଟି ଶୁଖି ଯାଉଥିଲା । ଅତ୍ୟନ୍ତ ତୃଷିତ ହୋଇଥିବାରୁ ସେମାନେ ଯମୁନା ନଦୀରୁ ସେହି ବିଷ ମିଶ୍ରିତ ଜଳ ପାନ କଲେ ।

ଦୈବଯୋଗକୁ ସେମାନେ ଭୁଲି ଯାଇଥିଲେ ଯେ, ସେହି ଜଳ ବିଷ ମିଶ୍ରିତ ଜଳ । ତାହା ପାନ କରିବାମାତ୍ରେ ସମସ୍ତ ଗୋରୁ ଓ ଗୋପବାଳକ ପ୍ରାଣହୀନ ହୋଇ ଯମୁନା କୂଳରେ ଢଳି ପଡ଼ିଲେ ।

ଭଗବାନ ଦେଖିଲେ ଯେ, ଏ ବଡ଼ ବିଷମ ସମସ୍ୟା ହୋଇଗଲା । ଯେଉଁମାନଙ୍କର ମୁଁ ଏକମାତ୍ର ଈଶ୍ୱର, ମୋର ସେହି ଆଶ୍ରିତମାନେ ବିଷଯୁକ୍ତ ଜଳ ପାନ କରି ଯଦି ମୃତ୍ୟୁ

ବରଣ କରିବେ, ତେବେ ମୋର ଶରଣାଗତବତ୍ସଳତାକୁ ଶତଧିକ୍ । ଯେଉଁ ଭଗବାନ ସ୍ୱୟଂ ଯୋଗେଶ୍ୱରଙ୍କର ଈଶ୍ୱର, ତାଙ୍କ ପକ୍ଷେ ଅବା କେଉଁ କଥା ଅସମ୍ଭବ ? କେଉଁ କଥା କଠିନ ? ତାଙ୍କ ଦୃଷ୍ଟି ମାତ୍ରେ ହିଁ ଏହି ଜଗତ ସୃଷ୍ଟି ହୋଇଛି । ଯେତେବେଳେ ସେ ମୃତ ଗୋପାଳ ବାଳକ ଓ ଗାଈମାନଙ୍କ ଉପରେ ନିଜର ଅମୃତବର୍ଷିଣୀ ଦୃଷ୍ଟି ବୁଲାଇ ଆଣିଲେ, ସଙ୍ଗେ ସଙ୍ଗେ ସମସ୍ତେ ପୂର୍ବପରି ଜୀବିତ ହୋଇ ଉଠି ନିଜ ନିଜର କାମରେ ଲାଗିଗଲେ । ଯେପରି ନିଦ୍ରାରୁ ଉଠି କୌଣସି ଲୋକ ପ୍ରଥମେ ଏଆଡ଼େ ସେଆଡ଼େ ଚିକିଏ ଚାହେଁ, ସ୍ମୃତିଲାଭ ହେବାରୁ ସେମାନେ ପରସ୍ପର ପରସ୍ପର ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁବାକୁ ଲାଗିଲେ । ଭଗବାନଙ୍କ ପ୍ରଭାବ ସମ୍ବନ୍ଧରେ ତ ସେମାନେ ଜ୍ଞାତ ଥିଲେ, ତେଣୁ ନିଶ୍ଚୟ କରିନେଲେ ଯେ, ଆମେ ଯେଉଁ ବିଷଯୁକ୍ତ ଜଳପାନ କରି ମୃତ୍ୟୁବରଣ କରିଥିଲୁ, ସେଥିରୁ ସହଜରେ ବଞ୍ଚି ନ ଥାନ୍ତୁ । ମଦନମୋହନ ମାଧବ ହିଁ ଆମ୍ଭମାନଙ୍କୁ ପୁନର୍ଜୀବିତ କରିଦେଲେ । ସମସ୍ତେ ଶ୍ରୀକୃଷ୍ଣଙ୍କ ଆଡ଼କୁ କୃତଜ୍ଞତାଭରା ଦୃଷ୍ଟିରେ ଚାହିଁବାକୁ ଲାଗିଲେ । କିଛି ସମୟ ମଧ୍ୟରେ ସେମାନେ ଭଗବାନଙ୍କ ଯୋଗମାୟା ପ୍ରଭାବରେ ହୋଇଥିବା ଏହି ଘଟଣାକୁ ଭୁଲିଯାଇ ନିଜ ସଖା ବୋଲି ମନେକରି ତାଙ୍କ ସହିତ ସ୍ୱଚ୍ଛନ୍ଦ କ୍ରୀଡ଼ା କରିବାକୁ ଲାଗିଲେ । ଭଗବାନ ବିଚାର କଲେ, ଆଜି ମୁଁ ଏହି ହ୍ରଦରୁ କାଳୀୟ ନାଗକୁ ତଡ଼ିବି । ସେ ଏଠାର ସମସ୍ତ ଜଳ ଓ ବାୟୁମଣ୍ଡଳକୁ ବିଷାକ୍ତ କରି ରଖିଛି । ଏହି ବିଦେଶୀ ଯେଉଁଠାରୁ ଆସିଛି, ସେଠାକୁ ତାକୁ ଆଜି ପଠାଇ ଦେଇ ମୁଁ ଏ ସ୍ଥାନକୁ ନିରାପଦ ଓ ସର୍ବଗମ୍ୟ କରିବି । ଏହି ଯମୁନା କୂଳରେ ଏପରି ବିଷଧର ଜୀବ ରହିବା ଉଚିତ ନୁହେଁ ।

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଏହି କାଳୀୟ ନାଗ କିଏ ଓ ପ୍ରଥମେ ସେ କେଉଁଠି ରହୁଥିଲା ? କେଉଁଥିପାଇଁ ସେ ଏହି ଯମୁନା କୂଳରେ ଥିବା ହ୍ରଦକୁ ଆସି ବାସ କରିଥିଲା ? କୃପାକରି ଏହି ସବୁ କଥା ଆମ୍ଭମାନଙ୍କୁ କହନ୍ତୁ । ଏ ସମ୍ବନ୍ଧରେ ଯେଉଁ କଥା ସବୁ ଅଛି ତାହା ଆମ୍ଭମାନଙ୍କୁ ଶୁଣାନ୍ତୁ ।"

ସୂତ କହିଲେ—"ତେବେ ଠିକ୍ ଅଛି, ମହାରାଜ ! ମୁଁ ପ୍ରଥମେ କାଳୀୟନାଗ ବୃନ୍ଦାବନକୁ ଆସିବା କଥା କହୁଛି । ଆପଣମାନେ ସେହି ପୁଣ୍ୟ ପ୍ରସଙ୍ଗ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

## ଛପ୍ପୟ

ରମଣକ ନାମକ ଦ୍ୱୀପ ନାଗ ସବୁ ବାସ କରନ୍ତି ଜହିଁ ।<br>
ବିଷ ବଳରେଁ ଉନମତ୍ତ ନାଗ କାଳିୟହିଁ ରହେ ତହିଁ ॥<br>
ଗରୁଡ଼ ଆଇ କିଛୁ ଖାଇ କିଛୁନକୁଁ ମାରି ଗିରାବେଂ ।<br>
ବିନତା ସୁତ କୋ କ୍ରୂଦ୍ଧ ନିରଖି ଅହି ଅତିଭୟ ପାବେଂ ॥

ସବ ନାଗନ ସନ୍ମତ କରୀ, ସନ୍ଧି ଗରୁଡ଼କୀତେ କସେ ।
ସେକ ଜାତ ବୃଧ୍ୱଂସକୁଁ, ସବ ସର୍ପନକୋ ଭୟ ହବେ ॥
୭

# ବୃନ୍ଦାବନକୁ କାଳୀୟନାଗ ଆଗମନ କଥା

ନାଗାଲୟଂ ରମଣକଂ କସ୍ମାତ୍ତତ୍ୟାଜ କାଳିୟଃ ।
କୃତଂ କିଂ ବା ସୁପର୍ଣ୍ଣସ୍ୟ ତେନୈକେନାସମଞ୍ଜସମ୍ ॥
(ଶ୍ରୀ ଭା ୧୦ ସ୍କ, ୧୩ ଅ, ୧ ଶ୍ଲୋକ)

## ଛପ୍ପୟ

ଅରୁଣାନୁଜକେ ନଜଟ ସର୍ପ ସବ ମିଲକେଂ ଆୟେ ।
ପ୍ରତି ମାବସ ବଲ ଦେହୁଁ ସବନ ମୃଦୁବଚନ ସୁନାୟେ ॥
ହରବାହନ ନେ ବାତ ଅହୁନକୀ ସବ ସ୍ୱୀକାରୀ ।
ପର୍ବ ପାଇକେଂ ସର୍ପ ଆଇଁ ସବ ବାରୀ-ବାରୀ ॥
କାଲୟ ଅତ ବଲବୀର୍ଯ୍ୟ ମଦ, ଯୁକ୍ତ ଭୟୋ ନହୁଁ ଦେହୁ ବଲ ।
ସ୍ୱୟଂ ଗରୁଡ଼ ବଲ ଖାଇକେଂ, ପହୁଲେ ହୀ ଖଲ ଜାହୁ ଚଲ ॥

ଧନମଦ ବଲମଦ ତଥା ଅଧିକାର ଆଦର ମଦରେ ମଦୋନ୍ମତ୍ତ ହୋଇ ପ୍ରାଣୀ ବଡ଼ ଲୋକମାନଙ୍କୁ ଅପମାନିତ କରେ । ସେ ନିଜଠାରୁ ବଡ଼ଙ୍କ ନିକଟକୁ ଭିଡ଼ିଯାଏ; କିନ୍ତୁ ଶେଷରେ ନିଜର ପରାଭବ ହୁଏ । ଯଦି ଜୀବ କୌଣସିପ୍ରକାରେ ସାଧୁସନ୍ଥଙ୍କର ଶରଣ ନେଇ ତାଙ୍କର ଦ୍ୱାରସ୍ଥ ହୁଏ, ତେବେ ତାଙ୍କ ଉପରେ ଭଗବାନ ଦିନେ ନା ଦିନେ କୃପା କରନ୍ତି । ସାଧୁସନ୍ଥଙ୍କ ନିକଟକୁ ଯିବା ଓ ସେମାନଙ୍କ ନିକଟରେ ରହିବା କଦାପି ବ୍ୟର୍ଥ ହୁଏ ନାହିଁ । ସ୍ୱଭାବ ନ ଗୁଡ଼ିଲେ ମଧ୍ୟ ଫଳଲୁ କରି ଧାମରେ ନିଷ୍ଠାରଖି ସାଧୁସନ୍ଥଙ୍କ ପାଖରେ ରହିଲେ କୃପାଳୁ କୃଷ୍ଣ ସ୍ୱୟଂ ଆବିର୍ଭାବ ହୋଇ ତାହାର ମଦୋନ୍ମତ୍ତ ମସ୍ତକକୁ ନିଜର ପଦାଘାତ ଦ୍ୱାରା ଦଳନ କରି ନତ କରନ୍ତି । ଭୁବନପାବନ ନିଜର ପାଦପଦ୍ମ

ହୃଦୟରେ ଖଳଙ୍କୁ ମଧ୍ୟ ବଶୀଭୂତ ତଥା ପୁଣ୍ୟଶ୍ଳୋକରେ ପରିଣତ କରି ଦିଅନ୍ତି । ସନ୍ଥଜନଙ୍କର ସାନିଧ୍ୟ ଲାଭ କରିବା ଦ୍ୱାରା କ'ଣ ଅବା କରାଯାଇ ନ ପାରେ ?

ସୂତ କହୁଛନ୍ତି—''ମୁନିଗଣ ! ଆପଣମାନେ ମୋତେ ଯେପରି କାଳିୟନାଗ ସମ୍ବନ୍ଧରେ ପ୍ରଶ୍ନ କଲେ, ମୋ'ର ଗୁରୁଦେବ ଶୁକଙ୍କୁ ମଧ୍ୟ ସେହିପରି ମହାରାଜ ପରୀକ୍ଷିତ ପଚାରି ଥିଲେ ଯେ—''ଭଗବାନ୍ ! କାଳିୟ ରମଣକ ଦ୍ୱୀପକୁ ଛାଡ଼ି ଏ କାଳନ୍ଦୀ ହ୍ରଦକୁ କାହିଁକି ଆସି ବାସ କଲା ? ସେ ଗରୁଡ଼ଙ୍କର କି ଅପ୍ରିୟ କାର୍ଯ୍ୟ କରିଥିଲା ?'' ମୋର ଗୁରୁଦେବ ଏହାର ଉତ୍ତରରେ ଯାହା କହିଥିଲେ, ସେହିକଥା ହିଁ ମୁଁ ବର୍ତ୍ତମାନ କହୁଅଛି ।

କଶ୍ୟପ ଋଷିଙ୍କ ପତ୍ନୀ ବିନତା ଓ କଦ୍ରୁଙ୍କ ମଧ୍ୟରେ ସୂର୍ଯ୍ୟଙ୍କ ଅଶ୍ୱ ଲାଙ୍ଗୁଡ଼ ନେଇ ଯେଉଁ ବୈରଭାବ ହୋଇଥିଲା ଏବଂ ଗରୁଡ଼ ସ୍ୱର୍ଗରୁ ଅମୃତ ଆଣି ନିଜକୁ ଓ ନିଜ ମାତାଙ୍କୁ ନାଗଙ୍କ ଦାସତ୍ୱରୁ ମୁକ୍ତ କରିଥିଲେ, ସେ କଥା ତ ମୁଁ ପୂର୍ବରୁ କହିଅଛି । ସେହିଦିନଠାରୁ ଗରୁଡ଼ ଓ ନାଗଙ୍କ ମଧ୍ୟରେ ଭକ୍ଷ୍ୟ ଓ ଭୋଜ୍ୟ ସମ୍ବନ୍ଧ ହୋଇଅଛି । ଗୋରୁମାନଙ୍କର ତୃଣ ଯେପରି ଖାଦ୍ୟ, ସେହିପରି ବିଷ୍ଣୁଙ୍କ ବାହନ ଗରୁଡ଼ଙ୍କର ଖାଦ୍ୟ ସର୍ପ । ସେ ଯେଉଁଠାରେ ନାଗକୁ ଦେଖନ୍ତି, ଖାଇ ଯାଆନ୍ତି । ଏହି ସାଗରର ଶେଷ ଭାଗରେ କ୍ଷୀର ସାଗର ଅବସ୍ଥିତ । ତାହାର ମଧ୍ୟ ଭାଗରେ ରମଣକ ନାମକ ଏକ ଦ୍ୱୀପ ଅଛି । ସେଠାରେ ନାଗଙ୍କର ବସ୍ତି ଥିଲା । ବହୁତ ନାଗବଂଶୀୟ ଉପଦେବ ସେହି ଦ୍ୱୀପରେ ବାସ କରୁଥିଲେ । ଗରୁଡ଼ ସେଠାକୁ ଯାଇ କେତେକଙ୍କୁ ଖାଇଲେ ଓ କେତେକଙ୍କୁ ଅଯଥା ମାରି ଫିଙ୍ଗି ଦେଲେ । ଏହାଦ୍ୱାରା ନାଗମାନଙ୍କୁ ବହୁତ କଷ୍ଟ ହେଲା । ସେମାନେ ଏକ ପଞ୍ଚାୟତ ସଭା ଡାକଲେ । ସମସ୍ତେ କହିଲେ—''ଗରୁଡ଼ ଯଦି ଆମକୁ ନ ଖାଇବେ, ତେବେ ମରିବେ ନାହିଁ । କାରଣ ଆମେ ତ ତାଙ୍କ ଅହାର । ଯଦି ତାଙ୍କର ଖାଇବା କଥା, ତେବେ ଏଥିପାଇଁ କୌଣସି ଏକ ବ୍ୟବସ୍ଥା କରିବା ଉଚିତ । ସେ ଯେତେବେଳେ ଏଠାକୁ ଆସୁଛନ୍ତି, କେତେକଙ୍କୁ ଖାଉଛନ୍ତି ତ କେତେକଙ୍କୁ ଅଯଥାରେ ମାରି ଫିଙ୍ଗି ଦେଉଛନ୍ତି । ଏଥିପାଇଁ ତାଙ୍କୁ ଅଯଥା ପରିଶ୍ରମ କରିବାକୁ ପଡ଼ୁଛି ଏବଂ ଆମ କୁଳ ମଧ୍ୟ ସଂହାର ହୋଇ ଯାଉଛି । ତେଣୁ ସେ ଶ୍ରେଷ୍ଠ ହୋଇଥିବା ଦୃଷ୍ଟିରୁ ଆମେ ପାଳି କରି ନିଜେ ନିଜେ ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଦିନରେ ଆହାର ପଠାଇ ପାରିବା । ଏହାଦ୍ୱାରା ଆମ କୁଳ ରକ୍ଷା ହେବା ସଙ୍ଗେ ସଙ୍ଗେ ଗରୁଡ଼ଙ୍କ କାମ ବି ଚାଲିଯିବ । ଏହି ପ୍ରସ୍ତାବକୁ ପଞ୍ଚାୟତ ସଭାରେ ଉପସ୍ଥିତ ଥିବା ସମସ୍ତ ନାଗ ଅନୁମୋଦନ ଓ ସମର୍ଥନ କଲେ । ସର୍ବସମ୍ମତିକ୍ରମେ ଏହା ଗ୍ରହଣ କରାଗଲା । ଏକ ଶିଷ୍ଟ ମଣ୍ଡଳ, ଯେଉଁଥିରେ କି ବୃଦ୍ଧ, ଜ୍ଞାନୀ ଓ ଅନୁଭବୀ ନାଗ ଥିଲେ, ସେମାନେ ଗରୁଡ଼ଙ୍କର ସେବାପାଇଁ ସମୁପସ୍ଥିତ ହେଲେ । ଗରୁଡ଼ ଶିଷ୍ଟ ମଣ୍ଡଳର ସମସ୍ତ କଥା ଅତ୍ୟନ୍ତ ଭଦ୍ରତାର ସହିତ ଧୈର୍ଯ୍ୟଧରି ଶୁଣିଲେ ଓ ଶେଷରେ ସେମାନଙ୍କ ପ୍ରସ୍ତାବକୁ ଶୁଣି କହିଲେ—''ଆଚ୍ଛା, ଠିକ୍ ଅଛି, ମୋର ଏଥିରେ କୌଣସି ଆପତ୍ତି ନାହିଁ । ଆପଣମାନେ ଏକ ସମୟ ନିର୍ଦ୍ଧିତ କରନ୍ତୁ ।''

ନାଗମାନେ କହିଲେ—"ଆମେ ପ୍ରତ୍ୟେକ ଅମାବାସ୍ୟାରେ ଅମୁକ ବୃକ୍ଷ ନିକଟକୁ ପାଳିକରି ଆପଣଙ୍କ ପାଇଁ ବଳି ପଠାଇ ଦେବୁ । ସେଥିରେ ଆପଣଙ୍କ ପାଇଁ ବହୁତ ଉପହାର ବସ୍ତୁ ମଧ୍ୟ ପଠାଇବୁ । ଗୋଟିଏ ନାଗ ତାହା ଆଣି ଆସିବ । ଆପଣ ସେହି ବସ୍ତୁକୁ ଖାଇବେ ଓ ସେହି ନାଗକୁ ମଧ୍ୟ ଖାଇବେ । ଏହା ବ୍ୟତୀତ ଆପଣ ଅନ୍ୟ କୌଣସି ନାଗକୁ ଦଣ୍ଡ ଦେବେ ନାହିଁ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଆମେ ସମସ୍ତେ ପୁଷ୍କର କ୍ଷେତ୍ରକୁ ଯାଇ ସେଠାରେ ଖୁବ୍ ଜାକ୍‌ଜମକରେ ଆପଣଙ୍କ ବାର୍ଷିକ ପୂଜା କରିବୁ । ସେହି ମହୋତ୍ସବରେ ଆପଣଙ୍କୁ ବଳି ଭେଟି ଦେବୁ । ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ରହନ୍ତୁ ।"

ଗରୁଡ଼ ପ୍ରସନ୍ନ ହୋଇ କହିଲେ—"ଆପଣମାନେ ଯଦି ନିଜର ପ୍ରତିଜ୍ଞା ପାଳନ କରିବେ, ତେବେ ମୋର ସେଥିରେ କିଛି ଆପତ୍ତି ନାହିଁ ।"

ଏ କଥା ଶୁଣି ସମସ୍ତ ନାଗ ଗରୁଡ଼ଙ୍କୁ ପ୍ରଣାମ କରି ଚାଲି ଆସିଲେ । ସେହିଦିନଠାରୁ ସେମାନେ ପାଳି ଅନୁସାରେ ଓ ପ୍ରତି ପର୍ବରେ ଗରୁଡ଼ଙ୍କୁ ବଳି ଭେଟି ଦେଇ ଆସୁଥିଲେ ଏବଂ ଗୋଟିଏ ଗୋଟିଏ ନାଗ ମଧ୍ୟ ପଠାଉଥିଲେ । ଗରୁଡ଼ ପ୍ରସନ୍ନତା ପୂର୍ବକ ସେଠାକୁ ଆସି ବଳି ଭେଟିକୁ ଗ୍ରହଣ କରି ଚୁପ୍‌ଚାପ୍ ଫେରି ଯାଉଥିଲେ । ସମସ୍ତେ ଏହିପରି ନିଜ ନିଜର ପାଳି ଅନୁସାରେ ଭେଟି ଦେଇ ଆସୁଥିଲେ । ଏହି ନାଗମାନଙ୍କ ମଧ୍ୟରେ ଗର୍ବୋନ୍ମୁଖ ଥିଲା କାଳୀୟ । ସେ ଅତ୍ୟନ୍ତ ବଳଶାଳୀ ଥିଲା ଓ ତାହାର ବିଷ ଅତ୍ୟନ୍ତ ଉତ୍କଟ ଥିଲା । ତାହାର ସହସ୍ର ଫଣା ଥିଲା । ସେ ଅନ୍ୟମାନଙ୍କୁ ଅତି ନଗଣ୍ୟ ମନେ କରୁଥିଲା । ଯେଉଁଦିନ ତା ପାଳି ପଡ଼ିଲା ଓ ବୃଦ୍ଧନାଗମାନେ ତାକୁ ଯିବାପାଇଁ କହିଲେ, ସେ ଅହଙ୍କାର ପୂର୍ବକ କହିଲା, ମୁଁ ଗରୁଡ଼ ଫରୁଡ଼ଙ୍କୁ ଖାତିରି କରେ ନାହିଁ । ଗରୁଡ଼ ମୋର କ'ଣ କରିବ ? ମୁଁ ଯିବ ନାହିଁ କିମ୍ବା ତାକୁ ବଳି ଭେଟି ଦେବି ନାହିଁ । କେବଳ ସେତିକି ନୁହେଁ, ଏବେ ତୁମେ ଯେଉଁ ବଳି ଭେଟି ଦେବାପାଇଁ ଆଣିବ, ତାହାକୁ ମୁଁ ଖାଇଦେବି । ଯଦି ଗରୁଡ଼ କିଛି କହେ, କିମ୍ବା ଆଖି ଦେଖାଏ, ତାହାହେଲେ ମୁଁ ତାକୁ ବି ତାହାର ଫଳ ଚଖାଇବି ।

ସେହି ନାଗ ସବୁଠାରୁ ବଳବାନ ଥିଲା । ସମସ୍ତେ ତା' କଥା ଶୁଣିଲେ । ପ୍ରତ୍ୟେକ ଜାଣିଥିଲେ ଯେ ସେ ଭାରି ଦୁଷ୍ଟ, କାହାରି କଥା ସେ ଶୁଣିବ ନାହିଁ । ତେଣୁ ସମସ୍ତେ ଚୁପ୍ ହୋଇଗଲେ । ଏବେ କାଳୀୟ ମନରେ ଗରୁଡ଼ପ୍ରତି ଈର୍ଷା ଜାତ ହେଲା । ଏହା ଗରୁଡ଼ ଲୋକମାନଙ୍କଠାରୁ ବୁଝିଲେ । ସମସ୍ତେ ଏହି ସତ୍ୟ ଘଟଣା ଗରୁଡ଼ ଆଗରେ କହି ଦେଲେ । ତାହା ଶୁଣି ଗରୁଡ଼ କାଳୀୟ ଉପରେ ଭୀଷଣ ରାଗିଗଲେ । ଆଗାମୀ ପର୍ବ ଦିନ ସେ କିଛି ସମୟ ପୂର୍ବରୁ ପ୍ରଥମେ ନିର୍ଦ୍ଦିଷ୍ଟ ସ୍ଥାନକୁ ଆସିଲେ । ସେ ଦେଖିଲେ କାଳୀୟ ବଳି ସ୍ଥାନକୁ ଆସୁଅଛି । ଗରୁଡ଼ ତାକୁ ଦେଖି ଗର୍ଜି ଉଠିଲେ । ତାଙ୍କ ଗର୍ଜନ ଶୁଣି ମଧ୍ୟ କାଳୀୟ ସେଠାରୁ ନ ଯାଇ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲା ଓ ତାଙ୍କୁ ଅପମାନ ସୂଚକ ଭାଷାରେ କହିଲା—"ତୁ ଆମଠାରୁ ବଳି ଉପହାର ନେବାକୁ କିଏ ? ଯା' ଏଠୁ ପଳା ।"

ଏହାଶୁଣି ଭଗବାନଙ୍କର ପରମ ପ୍ରିୟ ପାର୍ଷଦ, ତାଙ୍କର ମିତ୍ର ତଥା ବାହନ ଗରୁଡ଼ କଦ୍ରୁପୁତ୍ର କାଳୀୟ ଉପରେ ଭୀଷଣ ରାଗିଗଲେ । ସେ ସେହି ବିଷଗର୍ବରେ ଉନ୍ମତ୍ତ ନାଗକୁ ମାରିବା ପାଇଁ ତା' ଆଡ଼କୁ ଝପଟି ଆସିଲେ ।

ଗରୁଡ଼ ଅତି ବେଗରେ ତାଙ୍କୁ ଆକ୍ରମଣ କରୁଥିବାର ଦେଖି କାଳୀୟ ତା ଦାନ୍ତରେ ଉତ୍କଟ ବିଷ ଜଡ଼ିତ କରି ତାଙ୍କୁ କାମୁଡ଼ିବା ପାଇଁ ଧାଇଁଲା । ଦାନ୍ତ ଓ ବିଷ ଥିଲା ତାହାର ପ୍ରଧାନ ଅସ୍ତ୍ର । ଏଣେ ଗରୁଡ଼ର ଏକମାତ୍ର ଅସ୍ତ୍ରଥିଲା ତାହାର ତୀକ୍ଷଣ ନଖ । ଏବେ ଦୁହିଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । କାଳୀୟ ତାହାର ଦୁଇ ହଜାର କରାଳ ଜିହ୍ୱାକୁ ଲହ ଲହ କରି ଓ ଦୁଇ ହଜାର ଅଗ୍ନି ସମ ନେତ୍ରକୁ ଜଳ ଜଳ କରି ସହସ୍ର ଫଣାଟେକି ଗରୁଡ଼ଙ୍କ ଅଙ୍ଗ ପ୍ରତ୍ୟଙ୍ଗକୁ ଦଂଶନ କରିବାରେ ଲାଗିଲା ।

ଏହା ଦେଖି ପରମ ପ୍ରଚଣ୍ଡ ବେଗଶାଳୀ, ଉଗ୍ରପରାକ୍ରମୀ ଭଗବାନ୍ ମଧୁସୂଦନଙ୍କ ପ୍ରିୟ ପାର୍ଷଦ ଓ ବାହନ ତାର୍କ୍ଷ୍ୟପୁତ୍ର ଗରୁଡ଼ ସେହି ଦୁରାତ୍ମା କଦ୍ରୁପୁତ୍ର କାଳୀୟକୁ ବଳପୂର୍ବକ ଦୂରେଇ ଦେଲେ । ତାଙ୍କୁ ନିଜ ଶରୀରରୁ ପୃଥକ୍ କରି ନିଜର ସୁବର୍ଣ୍ଣ ସଦୃଶ ଦକ୍ଷିଣ ଡେଣାରେ ଅତ୍ୟନ୍ତ କ୍ରୋଧପୂର୍ବକ ତା' ଉପରେ ପ୍ରହାର କଲେ । ଯେଉଁ ଗରୁଡ଼ଙ୍କ ନିକଟରୁ ଅମୃତ ଆଣି ଆସିବା ସମୟରେ ଇନ୍ଦ୍ରରେ ସକଳ ଦେବତା ମିଳି ମନା କରି ପାରିଥିଲେ, ତାଙ୍କ ଡେଣାର ଆଘାତକୁ କାଳୀୟ ଅବା କପରି ସହ୍ୟ କରି ପାରନ୍ତା ? ସେ ମୁଖରୁ ରକ୍ତବାନ୍ତି କରି କରି ଖୁବ୍ ଜୋର୍‌ରେ ଉଡ଼ି ଉଡ଼ି ଆସି ବୃନ୍ଦାବନର ସେହି କାଳୀୟ ହ୍ରଦରେ ଲୁଚିଗଲା । ଗରୁଡ଼ ଏଠାକୁ ଆସିପାରି ନ ଥିଲେ, ତେଣୁ କୌଣସିମତେ ତାହାର ପ୍ରାଣରକ୍ଷା ହୋଇଗଲା । ଗରୁଡ଼ ସେଠାରୁ ଫେରି ଆସିଥିଲେ ।

ଏହାଶୁଣି ଶୌନକ ପଚାରିଲେ—"ମହାରାଜ ! ଯମୁନା କୂଳରେ ଥିବା ଏହି ହ୍ରଦ ନିକଟକୁ ଗରୁଡ଼ କାହିଁକି ଆସି ପାରିଲେ ନାହିଁ ?"

ସୂତ କହିଲେ—"ମହାରାଜ ! ସେହି କଥା ତ ମୁଁ ପୂର୍ବରୁ କହି ଆସୁଛି । ଏହି କୁଣ୍ଡରେ ଭଗବାନ ସୌଭରି ଋଷି ତପସ୍ୟା କରୁଥିଲେ । ସେ ମାଛମାନଙ୍କୁ ଖୁବ ଭଲ ପାଉଥିଲେ । ନିଜର ସନ୍ତାନ ସଦୃଶ ସେହି କୁଣ୍ଡରେ (ହ୍ରଦରେ) ଥିବା ସମସ୍ତ ମାଛଙ୍କୁ ସେ ସ୍ନେହ କରୁଥିଲେ । ମୁନି ସନ୍ଧ୍ୟା ସମୟରେ ହ୍ରଦ ନିକଟରେ ଭ୍ରମଣ କରୁଥିବା ସମୟରେ ମାଛମାନେ ନିଜ ନିଜର ଲାଞ୍ଜକୁ ସ୍ନେହରେ ପାଣି ଉପରକୁ ଉଠାଇ ତାଙ୍କୁ ପରିକ୍ରମା କରୁଥିଲେ । ମୁନି ମଧ୍ୟ ସେମାନଙ୍କୁ ଖାଦ୍ୟ ଦେଉଥିଲେ । ସେହି ହ୍ରଦର ମାଛଗୁଡ଼ିକ ଖୁବ୍ ବଡ଼ ବଡ଼ ହୋଇ ଯାଇଥିଲେ । ସେମାନେ ଜଳରେ ଖେଳୁଥିବା ସମୟରେ ଖରାରେ ଖୁବ୍ ସୁନ୍ଦର ପ୍ରତୀତ ହେଉଥିଲେ । ସେହି ସମୟରେ ଗରୁଡ଼ ଆକାଶରେ ଉଡ଼ୁଥିଲେ । ଯେତେବେଳେ କୌଣସି ମାଛ ଲାଞ୍ଜ ଉଠାଇ ପାଣିରେ ଢବ୍‌ଢାବ୍

ହେଉଥିଲେ, ସେତେବେଳେ ଗରୁଡ଼ ଚଞ୍ଚୁମାରି ନିଜ ଥଣ୍ଟରେ ଗୁପି ଧରି ତାଙ୍କୁ ଧରିନେଉଥିଲେ ଓ ଆନନ୍ଦରେ ଗଛ ଉପରେ ବସି ପେଟ ପୂରାଇ ଖାଉଥିଲେ ।

ମୁନି ଅନେକ ଥର ତାଙ୍କୁ କହିଲେ—"ଭାଇ ଗରୁଡ଼ ! ଏତେବଡ଼ ସଂସାର ପଡ଼ିଛି, ତୁମେ ଭୋଜନ କରିବାକୁ ଚାହିଁଲେ—ତୁମେ ଯେଉଁଠାକୁ ଯିବ ସେଠାରେ ପେଟ ପୂରାଇ ଖାଇ ପାରିବ । ଦେଖ ! ଏ ମାଛଗୁଡ଼ିକ ମୋର ସନ୍ତାନ ସଦୃଶ, ମୋ ସମ୍ମୁଖରେ ତୁମେ ଏପରି ଅନ୍ୟାୟ କାର୍ଯ୍ୟ କରନାହିଁ ।"କିନ୍ତୁ ଗରୁଡ଼ ସେ କଥାରେ କର୍ଣ୍ଣପାତ କଲେ ନାହିଁ । ଯାହା ପାଟିରେ ସ୍ୱଚ୍ଛ ସରୋବରର ବଡ଼ ବଡ଼ ମାଛଙ୍କର ସ୍ୱାଦ ଲାଗି ଯାଇଛି ଓ ମାଛଙ୍କୁ ଦେଖି ଯାହା ପାଟିରୁ ଲାଳ ବହି ପଡ଼ୁଛି, ସେ ମୁନିଙ୍କ କଥାକୁ କାହିଁକି ଅବା ଶୁଣନ୍ତା ? ସେ ମୁନିଙ୍କ କଥାରେ ଧ୍ୟାନ ନ ଦେଇ ଚଞ୍ଚୁମାରି ମାଛଙ୍କୁ ଧରି ନେଇ ଆଆନ୍ତି ।"

ଦିନେ ସେ ମୁନିଙ୍କ ସମ୍ମୁଖରେ ହିଁ ନିଜ ରୁଚି ଅନୁସାରେ ଅନୁକୂଳ ଭକ୍ଷ୍ୟରୂପକ ଏକ ମାଛକୁ ଧରି ପକାଇଲେ । ସେତେବେଳେ ଗରୁଡ଼ଙ୍କୁ ଭାରି ଭୋକ ହେଉଥାଏ । ମୁନି ମନା କରିବା ସତ୍ତ୍ୱେ ଗରୁଡ଼ ସେହି ମାଛକୁ ନିଜ ଥଣ୍ଟରେ ଦାବି ଦେଲେ । ତାହା ଖୁବ୍ ବଡ଼ ମାଛ ଥିଲା । ଗରୁଡ଼ ଥଣ୍ଟରେ ଥାଇ ଛଟପଟ ହେବାକୁ ଲାଗିଲା ଓ ଜଳରୁ ପୃଥକ୍ ହୋଇଥିବା କାରଣରୁ ଅଳ୍ପ ସମୟ ମଧ୍ୟରେ ମରିଗଲା । ତାହାର ପ୍ରାଣହୀନ ଶରୀର ଗରୁଡ଼ଙ୍କ ଥଣ୍ଟରେ ରହିଗଲା । ତାହାର ପ୍ରାଣପକ୍ଷୀ ନିଜର ପ୍ରିୟ ଜଳଭାଗ ପରିତ୍ୟାଗ କରି ପରଲୋକକୁ ଉଡ଼ିଗଲା । ସେହି ମାଛଟି ସବୁ ମାଛଙ୍କର ରାଜା ଥିଲା । ସେ ମରିଯିବାରୁ ହ୍ରଦର ସବୁ ମାଛ ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ । ସେମାନଙ୍କ ଅତି ବ୍ୟାକୁଳ ହେବାର ଦେଖି ସେହି ହ୍ରଦରେ ଥିବା ସମସ୍ତ ମାଛ ଓ ଅନ୍ୟାନ୍ୟ ଜଳଜୀବମାନଙ୍କ କୁଶଳ ପାଇଁ ମହର୍ଷି ସୌଭରି କ୍ରୋଧ ପ୍ରକାଶ କରି କହିଲେ—"ଆଜିଠାରୁ ଯଦି ଗରୁଡ଼ କେବେ ଏଠାକୁ ଆସି ଏ ହ୍ରଦରେ ପ୍ରବେଶ କରି କୌଣସି ମାଛ କିମ୍ବା ଅନ୍ୟ ଜଳଜୀବଙ୍କୁ ଧରେ, ତେବେ ସେ ମୋ' ଶାପ ପ୍ରଭାବରେ ଶୀଘ୍ର ମୃତ୍ୟୁବରଣ କରିବ ।"

ଭଗବାନ ସୌଭରି ଶ୍ରୀକୃଷ୍ଣଙ୍କ ଭକ୍ତ ଥିଲେ । ଗରୁଡ଼ ତାଙ୍କ ଶାପ କଥା ପୂର୍ବରୁ ଶୁଣିପାରି ଅତ୍ୟନ୍ତ ଭୟଭୀତ ହୋଇ ମୁନିଙ୍କ ଚରଣରେ ପ୍ରଣାମ କରି ସେଠାରୁ ଚାଲିଗଲେ । ସେହିଦିନଠାରୁ ସେହି ଶାପ ଭୟରେ ଭୁଲରେ ସୁଦ୍ଧା ସେ କେବେହେଲେ ସେଠାକୁ ଯାଇ ନ ଥିଲେ । କାରଣ ସମ୍ମୁଖକୁ ବିଷୟ ଆସିଗଲେ ଚିତ୍ତ ନିଶ୍ଚିତଭାବରେ ଚଞ୍ଚଳ ହୋଇଉଠେ । ସୁନ୍ଦର ସୁନ୍ଦର ମାଛମାନଙ୍କୁ ଦେଖି ଯଦି ମୁଖରେ ଜଳ ଭର୍ତ୍ତି କରି ଆସି ଚଞ୍ଚୁ ମାରନ୍ତି, ତେବେ ନିଶ୍ଚିତ ଭାବରେ ମୃତ୍ୟୁବରଣ କରିବାକୁ ପଡ଼ିବ । ସେଥିପାଇଁ ଗରୁଡ଼ ପାଇଁ ସେ ସ୍ଥାନ ଅଗମ୍ୟ ଥିଲା ।"

ଶୌନକ ଏହାଶୁଣି କହିଲେ—"ତେବେ ଆଉ ଅନ୍ୟାନ୍ୟ ନାଗମାନେ ସେଠାରେ ଯାଇ କାହିଁକି ନ ରହିଲେ ?"

ସୂତ କହିଲେ—"ପ୍ରଥମ କଥା ହେଲା ଏହି ଶାପ ବିଷୟ ସମସ୍ତଙ୍କୁ ଜଣା ନ ଥିଲା । କେବଳ କାଳୀୟ ହିଁ ଏହି ରହସ୍ୟ ଜାଣିଥିଲା । ଦ୍ୱିତୀୟରେ ସେହି ହ୍ରଦ ଅତ୍ୟନ୍ତ ଗଭୀର ଥିବାରୁ ଅନ୍ୟ ପ୍ରାଣୀଙ୍କ ପାଇଁ ତାହା ଦୁର୍ଗମ ଥିଲା ।"

ଏହାପରେ ଅନେକ ଦିନ ବିତିଗଲା ପରେ ଭଗବାନ ସୌଭରି ସଂସାର ତ୍ୟାଗ କରି ପରମପଦର ଅଧିକାରୀ ହେଲେ । ସେହି ଶାପ ତ ଗରୁଡ଼ ପାଇଁ ଉଦ୍ଦିଷ୍ଟ ହୋଇ ସେହିପରି ରହିଥିଲା, ସେହି ସୁଯୋଗ ନେଇ କାଳୀୟ ସେଥିରୁ ଲାଭ ଉଠାଇଲା । ସେଥିପାଇଁ ସେ ରମଣକ ଦ୍ୱୀପ ଛାଡ଼ି ଏହି ହ୍ରଦରେ ଆସି ରହିଥିଲା ଓ ତାହାର ନାମ ଅନୁସାରେ ତାହା କାଳୀୟ ହ୍ରଦ ନାମରେ ବିଖ୍ୟାତ ହେଲା । ଶ୍ରୀକୃଷ୍ଣଚନ୍ଦ୍ର କାଳୀୟ ଦଳନ କରି ତାକୁ ସେହି ହ୍ରଦରୁ ତଡ଼ି ଦେଲେ ।"

ଶୌନକ ପଚାରିଲେ—"ହେ ସୂତ ! ଆମ୍ଭେ କାଳୀୟର ରମଣକ ଦ୍ୱୀପ ଛାଡ଼ି ବୃନ୍ଦାବନ ଆସିବା କଥା ଶୁଣିଲୁ । ଏବେ ଆପଣ କାଳୀୟ ଦଳନ ଲୀଳା ଆମ୍ଭମାନଙ୍କୁ କହନ୍ତୁ । ଶ୍ରୀକୃଷ୍ଣ କିପରି କାଳୀୟ ଦଳନ କଲେ ତାହା ଶୁଣିବାକୁ ଆମେ ଇଚ୍ଛା କରୁଛୁ ।"

ସୂତ କହିଲେ—"ଆଚ୍ଛା, ଠିକ୍ ଅଛି ଭଗବନ୍ ! ଏବେ ଆପଣଙ୍କୁ ମୁଁ କାଳୀୟ ଦଳନ କଥା କହୁଛି ।"

## ଛପ୍ପୟ

ଗରୁଡ଼ କୁପିତ ଅତି ଭୟେ ହୁଷ୍ଟକୁଁ ଦୌରି ଦବାୟୋ ।
କାଳିନ୍ଦୀ ହ୍ର ଭିଡ଼ ଗୟୋ ବହୁତ ବିଷ ବୀର୍ଯ୍ୟ ତଜାୟୋ ॥
କବ ନହିଁ ଉରଗେ୍ୟା ଦାବ ଲଗି କାଳୀଦହ ଆୟୋ ।
ସୌଭରି ମୁନିକେ ଶାପ ଜବତର୍ତୈଂ ପ୍ରାନ ବଚାୟୋ ॥
ରହେ ତହାଁ ବିଷ ବମନ କରି, ଜଲ ଅପେୟ ସବ କରି ଦେୟା ।
ମରହିଁ ଅଚର ଚର ଜୀବ ସବ, ହବ କୌତୁକ ଅଦ୍‌ଭୁତ କେୟା ॥



# କାଳୀୟ ହ୍ରଦକୁ ଶ୍ରୀକୃଷ୍ଣଙ୍କର ଲମ୍ଫ ପ୍ରଦାନ

ତଂ ଚଣ୍ଡବେଗବିଷବୀର୍ଯ୍ୟମବେକ୍ଷ୍ୟ ତେନ
ଦୁଷ୍ଟାଂ ନଦୀଂ ଚ ଖଲସଂଯମନାବତାରଃ ।
କୃଷ୍ଣଃ କଦମ୍ବମଧିରୁହ୍ୟ ତତୋଽତିତୁଙ୍ଗ—
ମାସ୍ଫୋଟ୍ୟ ଗାଢ଼ରସନୋନ୍ୟପତଦ୍ ବିଷୋଦେ ॥

(ଶ୍ରୀ ଭା ୧୦ସ୍କ. ୧୬ଅ, ୬. ଶ୍ଳୋକ)

### ଛପ୍‌ପୟ

ଚଢ଼େ କଦଁମପୈ କୃଷ୍ଣ କୂଦ କାଳୀଦହ ମାହୀଂ ।
ଉଠି ଉଛାଲ ତରଙ୍ଗ ଉଛଲି ଜଲ ତଟନ ତୁବାହୀଂ ॥
ସାଗରମହଁ ଜନୁ ତରୀ କରେଂ ଡଗମଗ ତେଂ୍ୟାଂ ନଟବର ।
ନୀଚେ ଉପର ଉଛର କରେଂ କ୍ରୀଡ଼ା ବିଶ୍ୱମ୍ଭର ॥
ନିଜର ଭବନତେଂ ଅନୁ ଲକ୍ଷେ୍ୟ, ଶିଶୁ ସୁକୁମାର ସ୍ୱଭାବନୋ ।
କର, ପଦ, ସବ ଅଁଗ ଅତ ମୃଦୁଲ, ମୁଖ ପ୍ୟାରୋ ମନଭାବନୋ ॥

ଶକ୍ତିଶାଳୀ ହୋଇ କୌଣସି ପ୍ରାଣୀ ନିଜର ପରାଭବକୁ ସହ୍ୟକରି ପାରେ ନାହିଁ । ଯେତେବେଳେ ପ୍ରାଣୀ ଅବଶ ହୋଇଯାଏ, ସେତେବେଳେ ସେ ଆତ୍ମସମର୍ପଣ କରେ, ସେତେବେଳେ ସେ ଅନ୍ୟ ନିକଟରେ ନତମସ୍ତକ ହୋଇଯାଏ । ଯେ ପର୍ଯ୍ୟନ୍ତ କେହି ଆମକୁ ଛଳ, ବଳ, କୌଶଳ ପ୍ରଭାବ, ପ୍ରଲୋଭନ ଓ ପ୍ରେମରେ ବିବଶ ନ କରନ୍ତି, ସେ ପର୍ଯ୍ୟନ୍ତ ଆମେ ନଇଁଯାଉ ନାହିଁ, ଦୈନ୍ୟତା ପ୍ରକାଶ କରୁନାହିଁ କିମ୍ବା ଯୋଡ଼ହସ୍ତ ହେଉନାହିଁ । ସ୍ୱ-ଇଚ୍ଛାରେ କେହି କେବେ ସାନ ହେବାକୁ ଚାହେଁ ନାହିଁ । ଶ୍ରୀକୃଷ୍ଣ ନିଜର ରୂପମାଧୁରୀ, ବେଣୁମାଧୁରୀ ତଥା ଲୀଳାମାଧୁରୀ ଦ୍ୱାରା ଯାହାଙ୍କ ଚିତ୍ତକୁ ଚୋରାଇ ନିଅନ୍ତି, ଅଥବା ନିଜର ବଳ ପୁରୁଷାର୍ଥ ଦ୍ୱାରା ଯାହାଙ୍କୁ ଦଳନ କରନ୍ତି, ସେ ତାଙ୍କର ଶରଣ ନେଇଥାଏ । ତାଙ୍କର ନିଜର ହୋଇ ଯାଇଥାଏ । ପ୍ରଭୁ ତାଙ୍କୁ ଆପଣାର କରି ନିଅନ୍ତି । କାରଣ ସେ ସର୍ବଭୂତର ବାସ୍ତବ ସୁହୃଦ୍ ଅଟନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ଯେତେବେଳେ ସମସ୍ତ ଗୋରୁ ତଥା ଗୋପବାଳକ ଜୀବିତ ହୋଇଗଲେ, ସେତେବେଳେ ଭଗବାନ ଗୋପବାଳକମାନଙ୍କ ସହିତ ପେଣ୍ଡୁ ଖେଳିବାରେ ଲାଗିଲେ । ପେଣ୍ଡୁଟି ଥିଲା ଶ୍ରୀଦାମାଙ୍କର । ଖେଳୁ ଖେଳୁ ଭଗବାନ ଜାଣିଶୁଣି ଶ୍ରୀଦାମଙ୍କ ପେଣ୍ଡୁକୁ କାଳୀୟ ହ୍ରଦକୁ ଫିଙ୍ଗିଦେଲେ । ଏବେ ଶ୍ରୀଦାମ ଶ୍ରୀକୃଷ୍ଣଙ୍କର ପିନ୍ଧିଥିବା ବସ୍ତ୍ରକୁ ଭିଡ଼ିଧରି ରାଗିଯାଇ କହିଲେ—"ମୋ' ପେଣ୍ଡୁ ଦିଅ !"

ଭଗବାନ କହିଲେ—"ଭାଇ ! ପେଣ୍ଡୁଟି ତ ଏହି କାଳୀୟ ହ୍ରଦରେ ପଡ଼ିଗଲା । ସେଠାରେ କାଳୀୟ ନାଗ ରହୁଛି । ସେହି ହ୍ରଦର ଜଳ ବିଷାକ୍ତ, ତୁ ଘରକୁ ଚାଲ୍ ମୁଁ ତତେ ସେଠାରେ ଗୋଟାଏ କାହିଁକି, ଦୁଇଟା ପେଣ୍ଡୁ ତିଆରି କରାଇ ଦେବି ।"

ଶ୍ରୀଦାମ କହିଲେ—"ମୋତେ ତୁ ଥରେ ବୁଝା ବା ଶହେଥର ବୁଝା, ଯେତେ ଯାହା କହିଲେ ମୁଁ ଭଲ ପେଣ୍ଡୁ ନେବାକୁ ଚାହୁଁନାହିଁ । ତୁ ମୋତେ ସେହି ପେଣ୍ଡୁଟି ଆଣି ଦେ ।"

ଭଗବାନ ନିଜ ସଖା ହୃଦୟରେ ଏହିପରି କହିବାକୁ ହିଁ ପ୍ରେରଣା ଦେଇଥିଲେ ।ସେ ଥରେ ସେହି ଯମୁନା ସଂଲଗ୍ନ କାଳୀୟ ହ୍ରଦ ଉପରେ ଦୃଷ୍ଟି ପକାଇ ନେଲେ । ଯାହାର ଜଳ କ କାଳୀୟ ମୁଖରୁ ବାହାରୁଥିବା ବିଷଜ୍ୱାଳାରେ ସର୍ବଦା ଉତ୍ତପ୍ତ ହୋଇ ତହିଁରୁ ବୁଦ୍‌ବୁଦ ଉଠୁଥିଲା । ତନ୍ମଧ୍ୟରେ ଜଳଜୀବ ରହିବା କଥା ଦୂରେଥାଉ, ସେହି ହ୍ରଦ ଉପର ଦେଇ ଉଡ଼ି ଯାଉଥିବା ପକ୍ଷୀ ତାହାର ଦୀପ୍ତିରେ ଜଳ ମଧ୍ୟରେ ଖସି ପଡ଼ୁଥିଲେ । ସେହି ହ୍ରଦର ଜଳରେ ଉଠୁଥିବା ଉତ୍ତାଳ ତରଙ୍ଗକୁ ସ୍ପର୍ଶକରି ବହି ଆସୁଥିବା ଥଣ୍ଡା ପବନର ସଂସର୍ଗରୁ କୂଳରେ ଥିବା ବୃକ୍ଷରାଜି ତଥା ଗୁଳ୍ମଲତା ଏବଂ ବୃକ୍ଷ ଉପରେ ବସାକରି ରହୁଥିବା ପକ୍ଷୀ ନିର୍ଜୀବ ହୋଇ ଭସ୍ମସାତ୍ ହୋଇ ଯାଉଥିଲେ ।

ଭଗବାନ ମନେ ମନେ ଚିନ୍ତାକଲେ—"ଏହି ଦୁଷ୍ଟ କାଳୀୟ ନାଗ ତାହାର ପ୍ରଚଣ୍ଡ ବେଗଯୁକ୍ତ ଉତ୍କଟ ବିଷ ବଳରେ ଅତ୍ୟନ୍ତ ବଳୀୟାନ୍ ହୋଇଛି । ଏହି ବିଷଦ୍ୱାରା ହିଁ ସେ ଏହି ହ୍ରଦକୁ ଓ ଯମୁନା ଜଳକୁ ବିଷାକ୍ତ କରି ଦୂଷିତ କରିଅଛି । ମୁଁ ଏହି ଦୁଷ୍ଟକୁ ଦମନ କରିବି । ମାମୁ କଂସଙ୍କ ସକାଶେ ପଦ୍ମଫୁଲ ନେବି ଓ ଶ୍ରୀଦାମର ପେଣ୍ଡୁ ମଧ୍ୟ ବାହାର କରିବି । ମୋର ମୁଖ୍ୟ କାର୍ଯ୍ୟ ହେଉଛି, ଏହି ଦୁର୍ଦ୍ଦମନୀୟ ଦୁଷ୍ଟ କାଳୀୟର ଦର୍ପଚୂର୍ଣ୍ଣ କରିବା, କାରଣ ମୁଁ ଏହି ସବୁ କାର୍ଯ୍ୟ କରିବାପାଇଁ ଅବତୀର୍ଣ୍ଣ ହୋଇଛି ।'

ଏହି ସବୁ କଥା ଚିନ୍ତା କରି ଶ୍ୟାମସୁନ୍ଦର ସେହି ବିଶାଳ କଦମ୍ବ ବୃକ୍ଷ ଆରୋହଣ କଲେ, ଯେଉଁ ବୃକ୍ଷ କ ଅମୃତ ପ୍ରଭାବରୁ କାଳିନ୍ଦୀ ହ୍ରଦ ନିକଟରେ ରହିଥିଲେ ମଧ୍ୟ ସବୁଜିମା ଭରି ହୃଷ୍ଟପୁଷ୍ଟ ହୋଇ ବଞ୍ଚି ରହିଥିଲା । ସେ ନିଜର ପୀତବସ୍ତ୍ରକୁ କଷି କରି କମରରେ ଭିଡ଼ି ଜୋର୍‌ରେ ତାଳି ମାରିଲେ ଓ ଗଛ ଉପରୁ ସେହି ବିଷପୂର୍ଣ୍ଣ ହ୍ରଦକୁ ଲୁଙ୍ଘକରି ଡେଇଁ

ପଡ଼ିଲେ । ସେହି ହ୍ରଦର ଜଳ ସହଜେ ସର୍ପବିଷରେ ଭରପୁର ହୋଇ ଉଚ୍ଛୁଳି ଉଠୁଥିଲା । ଏବେ ଶ୍ରୀକୃଷ୍ଣ ଖୁବ୍ ବେଗରେ ଲମ୍ଫପ୍ରଦାନ କରିବାରୁ ତାହା ଅଧିକ ଶବ୍ଦକରି ତରଙ୍ଗାୟିତ ହୋଇ ଉଠିଲା ।

ଯେଉଁ ଜଳରେ ବିଷ ମିଶିଯାଇଥାଏ, ତାହାର ବୁଦ୍‌ବୁଦ ଉତ୍ତାଳ ତରଙ୍ଗରେ ନୀଳ, ହଳଦୀ, ନାଲି ଆଦି ରଙ୍ଗରେ ଝଲସି ଉଠେ । ସୂର୍ଯ୍ୟ କିରଣର ସ୍ପର୍ଶରେ ତାହା ଭଗ୍ନ ଇନ୍ଦ୍ରଧନୁ ପରି ପ୍ରତୀତ ହୁଏ । ସେହିପରି ହ୍ରଦର ଜଳ ନାନାପ୍ରକାର ରଙ୍ଗରେ ରଞ୍ଜିତ ହୋଇ ତରଙ୍ଗ ଆକାରରେ ୪୦୦ ହାତ ଉପରକୁ ଉଚ୍ଛୁଳି ଉଠିଲା ତଥା ହ୍ରଦର ଚତୁର୍ପାର୍ଶ୍ୱ ବୁଡ଼ାଇ ଅନେକ ଦୂର ପର୍ଯ୍ୟନ୍ତ ମାଡ଼ିଗଲା । ସେତେବେଳେ ସେହି ଉତ୍ତାଳ ତରଙ୍ଗ ଉପରେ ଭଗବାନ୍ କ୍ରୀଡ଼ା କରୁଥିବା ସମୟରେ ଏପରି ପ୍ରତୀତ ହେଉଥିଲେ ଯେ, ଯେତେ ଯେପରି କୌଣସି ମହାନ୍ ସରୋବରରେ କୌଣସି ଗଜରାଜ କ୍ରୀଡ଼ା କରୁଅଛି ଅଥବା ସମୁଦ୍ରର ଉତ୍ତାଳ ତରଙ୍ଗମାଳାରେ କୌଣସି ଜାହାଜ ଅସ୍ଥିର ହୋଇ ହବୁଡ଼ୁବୁ ହେଉଛି । ଅଥବା ପ୍ରଳୟକାଳୀନ ସମୁଦ୍ରରେ ବାଳମୁକୁନ୍ଦ ବିହାର କରୁଅଛନ୍ତି କିମ୍ବା ସମୁଦ୍ର ମନ୍ଥନ କାଳରେ ବିଷ ବାହାରିବା ସମୟରେ ଭଗବାନ କଚ୍ଛପ ଅବତାର ହୋଇ ଆବିର୍ଭୂତ ହୋଇଛନ୍ତି ।

ଭଗବାନ ଶ୍ରୀକୃଷ୍ଣ ନିଜର ଦୁଇ ବିଶାଳ ଭୁଜରେ ପାଣିକୁ ବାଡ଼େଇ, ତରଙ୍ଗକୁ ଦୁଇଭାଗ କରି ହ୍ରଦ ମଧ୍ୟରେ ସ୍ୱଚ୍ଛନ୍ଦରେ ସନ୍ତରଣ କରିବାକୁ ଲାଗିଲେ । ହସ୍ତଚାଳନା ଦ୍ୱାରା ଜଳ ମଧ୍ୟରେ ଖୁବ୍ ଜୋରରେ ଶବ୍ଦ ହେବାକୁ ଲାଗିଲା, ସେହି ଶବ୍ଦରେ ଦିଗବିଦିଗ ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ସେହି ଭୟଙ୍କର ଶବ୍ଦ ଶ୍ରବଣ କରି କାଳୀୟ ନାଗର କର୍ଣ୍ଣ ସ୍ତବ୍ଧ ହୋଇଗଲା । ସେ ଭାବିଲା ଆଜିପର୍ଯ୍ୟନ୍ତ କେହି ହେଲେ ତା' ହ୍ରଦକୁ ପ୍ରବେଶ କରିବାର ସାହସ କରି ନ ଥିଲା । ସେ ନିଜେ ବିଦେଶୀ ହୋଇଥିଲେ ମଧ୍ୟ ସେହି ଅଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରିଥିଲା । ତା' ସମ୍ମୁଖକୁ କେହି ଆସୁ ନ ଥିଲେ । ଏହି ଶବ୍ଦ ଶୁଣି ସେ ବୁଝିପାରିଲା କେହି ମୋତେ ତିରସ୍କାର କରୁଅଛି । କେହି ବୋଧହୁଏ ମୋତେ ଯୁଦ୍ଧ କରିବାପାଇଁ ଆହ୍ୱାନ କରୁଛି । ଏହି ଅପମାନକୁ ସହ୍ୟକରି ନ ପାରି, ସେ ନିଜ ଘରଭିତରୁ ବାହାରି ଆସିଲା । ଘରୁ ବାହାରି ଆସି ସେ ଭଗବାନ ବାସୁଦେବଙ୍କ ସମ୍ମୁଖରେ ଉପସ୍ଥିତ ହେଲା ।

ଭଗବାନଙ୍କର ଭୁବନମୋହନୀ ବଙ୍କିମ ଠାଣିକୁ ନିରୀକ୍ଷଣ କରି ସେ କୃତାର୍ଥ ହୋଇଗଲା । ସେ ଦେଖିଲା ତାଙ୍କର ନବୀନ ନୀରଦ ଦ୍ୟୁତି ଭଳି ସୁନ୍ଦର, ସୁକୁମାର, ସୁଗଠିତ, ସୁଖଦ, ସୁଠାମ ଶରୀର । ତାଙ୍କ ବିଶାଳ ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ, ବିଦ୍ୟୁତ୍‌ଭଳି ତାଙ୍କର ପୀତାମ୍ବର କୃଷ୍ଣବର୍ଣ୍ଣର ଶ୍ରୀଅଙ୍ଗରେ ଝଟକୁଅଛି ଓ ପବନରେ ତାହା ଦୋଳାୟମାନ ହେଉଅଛି । ସେ ଦେଖିଲା ତାଙ୍କର ମନୋହର ମଧୁର ମୁଖରେ ମନ୍ଦ ମନ୍ଦ ହାସ ଛଟା,

ତାଙ୍କର ଚରଣଯୁଗଳ ପଦ୍ମକେଶର ସଦୃଶ ଅତ୍ୟନ୍ତ ସୁକୋମଳ । ସେ ଦେଖିଲା ଅତି ମନୋହର ମନୋଜ୍ଞ ବାଳକଟିଏ ନିର୍ଭୟରେ କାଳନ୍ଦୀ ଜଳରେ କ୍ରୀଡ଼ା କରୁଅଛି । ତାଙ୍କ ମୁଖମଣ୍ଡଳରେ ଟିକିଏ ହେଲେ ବିଷାଦର ଚହ୍ନଦର୍ଶୁ ନାହିଁ । ତାଙ୍କ ଶରୀର ଉପରେ ବିଷର କୌଣସି ପ୍ରଭାବ ପଡ଼ୁ ନାହିଁ । ସେ ହସି ହସି ପାଣି ବାଡ଼େଇ ଘୂରିଆଡ଼େ ସନ୍ତରଣ କରୁଅଛି ।

ସ୍ୱଭାବତଃ ସର୍ପ ଅତ୍ୟନ୍ତ କ୍ରୋଧୀ, ପୁନଶ୍ଚ କାଳୀୟ ନିଜର ବିଷ, ବୀର୍ଯ୍ୟ ତଥା ବଳରେ ବଳୀୟାନ ହୋଇ ଅତି ଅଭିମାନୀ ହୋଇଯାଇଛି । ତେଣୁ ସେ ଆଖିପିଛୁଡ଼ାକେ ଧାଇଁ ଆସି ଭଗବାନ ଶ୍ରୀକୃଷ୍ଣଙ୍କୁ ଚତୁର୍ଦ୍ଦିଗରୁ ନିଜର ନାଗପାଶରେ ଏପରି ଛନ୍ଦି ଦେଲା ଯେ, ସେ ଯେପରି ତହିଁରୁ ଆଉ ମୁକୁଳି ପାରିବେ ନାହିଁ । ଏହିପରି ସେ ନିଜର ଶରୀର ବନ୍ଧନରେ (ନାଗପାଶରେ) ଭିଡ଼ି ନିଜର ଶତ ଫଣାଦ୍ୱାରା ଭଗବାନଙ୍କ ମର୍ମ ସ୍ଥଳରେ ଦଂଶନ କରିବାରେ ଲାଗିଲା ।

ସୂତ କହୁଛନ୍ତି—"ମୁନିଗଣ ! ଏହି ପ୍ରକାର ନିଜର ସଖା ସୁହୃଦ୍ ତଥା ସର୍ବସ୍ୱ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ କାଳୀୟ ନାଗର ପାଶରେ ବନ୍ଧା ହେବା ତଥା ନିଶ୍ଚେଷ୍ଟ ଅବସ୍ଥାରେ ଦେଖି ସମସ୍ତ ଗୋପବାଳକ ଅତ୍ୟନ୍ତ ମର୍ମାହତ ହେଲେ । ସେମାନେ ଶ୍ରୀଦାମଙ୍କୁ ବାରମ୍ବାର ଧିକ୍କାର କରିବାକୁ ଲାଗିଲେ । ଶ୍ରୀଦାମ ମଧ୍ୟ ବାରମ୍ବାର ପଶ୍ଚାତାପ କରୁଥିଲେ ଯେ, ମୁଁ ଶ୍ରୀକୃଷ୍ଣଙ୍କୁ ଏପରି ଆଗ୍ରହ ଅନୁରୋଧ କାହିଁକି କଲି । ସମସ୍ତେ ଅତ୍ୟନ୍ତ ଭୟଭୀତ ହୋଇ ମୂର୍ଚ୍ଛିତ ହୋଇଗଲେ ଓ ଅଚେତାବସ୍ଥାରେ ଦୁଲ୍‌ଦାଲ୍ ହୋଇ ଭୂମିରେ କଚାଡ଼ି ହୋଇ ପଡ଼ିଲେ । କାରଣ ସେମାନେ ନିଜ ନିଜର ଶରୀର, ମନ, ଧନ ଓ ପରିବାର ସମସ୍ତ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରି ଦେଇଥିଲେ । ଏପରିକି ସେମାନେ ନିଜ ନିଜର ସମସ୍ତ ଇଚ୍ଛାକୁ ମଧ୍ୟ ଶ୍ରୀକୃଷ୍ଣଙ୍କ ଇଚ୍ଛାରେ ମିଶାଇ ଦେଇଥିଲେ । ଏପ୍ରକାର ଅନନ୍ୟଗତି ଯୋଗୁଁ ସୁହୃଦଙ୍କର ଏହିପରି ଅତ୍ୟଧିକ ଦୁଃଖ ହେବା ସ୍ୱାଭାବିକ । ଗୋପବାଳକମାନଙ୍କର ଏହିଭଳି ଦଶା ହେବା ତ ସ୍ୱାଭାବିକ । ସେଠାରେ ଯେତେ ଗାଈ, ବଳଦ ଓ ବାଛୁରି ଥିଲେ, ସେମାନେ ଅତ୍ୟନ୍ତ ଦୁଃଖିତ ହୋଇ ହମ୍ବାରଡ଼ି କଲେ । ସମସ୍ତେ ଶ୍ରୀକୃଷ୍ଣ ଆଡ଼କୁ ଅପଲକ ନୟନରେ ଚାହିଁ ନିଶ୍ଚେଷ୍ଟ ହୋଇ ଚିତ୍ରପ୍ରତିମା ପରି ଠିଆ ହୋଇ ରହିଲେ । ସେମାନଙ୍କର ନିଜ ଶରୀର ଜ୍ଞାନ ମଧ୍ୟ ରହିଲା ନାହିଁ ।"

## ଛପ୍‌ପୟ

ଦହମହିଁ କ୍ରୀଡ଼ା କରେ ନ କଛୁ ଭୟ ମନମହିଁ ମାନେ ।
ନେତେ ଶ୍ୟା କିଷ ଅଙ୍ଗ ଉଗ ଅଙ୍ଗ ବାଳକ ନହିଁ ଜାନେ ॥

ଏସୋ ମନମହଁ ସୋଚ କ୍ରୋଧ କର କାଲୀୟ୍ ଆୟୌ ।
ତପୌ ଦୁଷ୍ଟ କର କୋପ କୃଷ୍ଣ ତନୁ ଅଁଗ ଲପଟାୟୌ ॥
ଅହି ବନ୍ଧନମହଁ ଶ୍ୟାମକୁଁ, ନରଖି ବାଲ ବ୍ୟାକୁଲ ଭୟେ ।
ଗୌ ବଛବ ଅରୁ ଗ୍ୱାଲ ତହଁ, ମୂର୍ଚ୍ଛିତ ସବରେ ହ୍ୱୈଂ ଗୟେ ॥

●

# ନାଗପାଶରେ ଆବଦ୍ଧ ଶ୍ରୀକୃଷ୍ଣଙ୍କୁ ଦେଖି ବ୍ରଜବାସୀମାନଙ୍କର ବିଳାପ

ଅନ୍ତର୍ହ୍ରଦେ ଭୁଜଗ ଭୋଗପରୀତମାରାତ୍
କୃଷ୍ଣଂ ନିରୀହମୁପଲଭ୍ୟ ଜଲାଶୟାନ୍ତେ ।
ଗୋପାଂଶ୍ଚ ମୂଢ଼ଧିଷଣାପ୍ୟନ୍ ଭତଃ ପଶୂଂଶ୍ଚ
ସଂକ୍ରନ୍ଦତଃ ପରମକଶ୍ମଲମାପୁରାର୍ତାଃ ॥

(ଶ୍ରୀ ଭା ୧୦ ସ୍କ, ୧୬ ଅ, ୧୯, ଶ୍ଳୋକ)

## ଛପ୍‌ପୟ

ଇତ ବ୍ରଜମହଁ ଉତ୍‌ପାତ ହୋହିଁ ଅତ ଉଗ୍ର ଭୟଙ୍କର ।
ତନ, ମନ, ଭୂ, ଆକାଶ ସବନ ମହଁ ଉଠେ ବବଂଡ଼ର ॥
ଆଜ ବନା ବଲ ଗୟୌ ଶ୍ୟାମ ବନ ଗାୟ ଚରାବନ ।
ନର-ନାରୀ ଅତ ଦୁଃଖିତ ଲଗେ ସବ ବନ-ବନ ଖୋଜନ ॥
ଧ୍ୱଜ ଅଂକୁଶ ବଜ୍ରାଦତେଂ, ଚହ୍ନିତ ପଦ ପହିଚାନକେଂ ।
ପହୁଁଚେ କାଲୀୟ୍ ଦହ ନକଟ, ଡରେ ମୃତକ ସବ ଜାନକେଂ ॥

ନଜ ଶରୀରରେ ଦୁଃଖ କଷ୍ଟ ଭୋଗ କଲେ ସେତେ କ୍ଳେଶ ହୁଏନାହିଁ; କିନ୍ତୁ ନଜର ପ୍ରିୟ ଲୋକର କଷ୍ଟ ଦେଖିଲେ ତଦ୍‌ପେକ୍ଷା ଅଧିକ କଷ୍ଟ ହୁଏ । ଯେ ଆମକୁ ପ୍ରାଣଠାରୁ

ବଳି ଅଧିକ ସ୍ନେହ କରନ୍ତି, ତାଙ୍କର ଦୁଃଖକୁ ପ୍ରାଣପଣେ ଚେଷ୍ଟା କରି ଦୂର କରାଯାଇ ପାରେ । ତାହାହେଲେ ପ୍ରେମର ମର୍ମ ବୁଝିଥିବା ବ୍ୟକ୍ତି ହସି ହସି ନିଜର ପ୍ରିୟ ଲୋକର ଅତ୍ୟଧିକ ଶ୍ରଦ୍ଧାଭାଜନ ହେବା ସକାଶେ ପ୍ରାଣ ଉତ୍ସର୍ଗ କରିଥାଏ । କେବଳ ସେତିକି ନୁହେଁ, ଯଦି ନିଜ ପ୍ରିୟର ପ୍ରାଣରକ୍ଷା କରିବାର କୌଣସି ଆଶା ନ ଥାଏ ଓ ନିଜେ ସମସ୍ତ ପ୍ରକାର ଚେଷ୍ଟା କରି ବିଫଳ ହୋଇଥାଏ, ତେବେ ସେହି ଲୋକର ମୃତ୍ୟୁ ପୂର୍ବରୁ ନିଜେ ମୃତ୍ୟୁବରଣ କରିବା ଶ୍ରେୟସ୍କର ବୋଲି ପ୍ରେମୀଗଣ ମନେ କରି ଥାଆନ୍ତି । ଏହିପରି ଅନେକ ଉଦାହରଣ ଶୁଣିବାକୁ ଓ ଦେଖିବାକୁ ମିଳିଥାଏ ଯେ, ଯେଉଁ ପତ୍ନୀ ନିଜର ପତି ପରମେଶ୍ୱରଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଇ ଥାଆନ୍ତି, ଯେତେବେଳେ ତାଙ୍କ ପତି କୌଣସି ଅସାଧ୍ୟ ରୋଗରେ ପୀଡ଼ିତ ହୁଏ ଏବଂ ଚିକିତ୍ସକ ନିଶ୍ଚିତରୂପେ କହି ଦିଅନ୍ତି ଯେ—"ଏ ଆଉ ବଞ୍ଚି ପାରିବେ ନାହିଁ, ତାହାହେଲେ ପତ୍ନୀ ଜଳରେ ବା ବିଷ ଖାଇ ପତିଙ୍କର ମୃତ୍ୟୁପୂର୍ବରୁ ନିଜର ପ୍ରାଣତ୍ୟାଗ କରିଥାଏ । ଏହା ତ ଭାବନାରେ ପତି ମନେ କରୁଥିବା ଲୋକଙ୍କ ଘଟଣା; କିନ୍ତୁ ଯେ ସ୍ୱୟଂ ସାକ୍ଷାତ୍ ଜଗତ୍ପିତା, ପରମେଶ୍ୱର, ତାଙ୍କୁ ଯେଉଁମାନେ ନିଜର ସର୍ବସ୍ୱ ବୋଲି ଧରି ନେଇଛନ୍ତି, ସେହି ବ୍ରଜାଙ୍ଗନାଗଣ ଶ୍ରୀକୃଷ୍ଣ ବିପଦରେ ପଡ଼ିଥିବାର ଦେଖି ସେମାନଙ୍କର କପରି ଦଶା ହୋଇଥିବ, ତାହା କଥାରେ ବା ଲିଖିତ ଆକାରରେ ବ୍ୟକ୍ତ କରିବା ଅସମ୍ଭବ । ପାଠକଗଣ ନିଜ ନିଜ ମନ ମଧ୍ୟରେ ହିଁ ସେହି ଦୁଃଖକୁ ଅନୁମାନ କରିନେବେ ।

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଚନ୍ଦ୍ର ଯେତେବେଳେ ଗୋ-ଗୋଷ୍ଠ ନେଇ ବନକୁ ଚାଲି ଯାଉଥିଲେ, ସେତେବେଳେ ଗୋପୀକାଙ୍କ ହୃଦୟ ତାଙ୍କ ବିଚ୍ଛେଦରେ ସନ୍ତପ୍ତ ହୋଇ ଯାଉଥିଲା । ସେହି ତପ୍ତ ହୃଦୟାଙ୍କ ପାଇଁ ଏକମାତ୍ର ଔଷଧ ଥିଲା ଶ୍ରୀକୃଷ୍ଣଙ୍କ ଗୁଣ କୀର୍ତ୍ତନ ଓ ତାଙ୍କର ଚର୍ଚ୍ଚା । କୃଷ୍ଣକଥାମୃତ ସିଞ୍ଚନ ଓ ପାନ ରୂପକ ଉପଚାର ଦ୍ୱାରା ସେମାନେ କୌଣସି ପ୍ରକାରେ ନିଜ ନିଜର ସମୟ କଟାଉଥିଲେ । କେହି ଶ୍ରୀକୃଷ୍ଣଙ୍କର ରୂପମାଧୁରୀର ବର୍ଣ୍ଣନା କରୁଥିଲା ତ, କେହି ତାଙ୍କୁ ଶ୍ରଦ୍ଧାର ସହିତ ତନ୍ମୟ ହୋଇ ଶ୍ରବଣ କରୁଥିଲା । କେହି ଲୀଳାମାଧୁରୀ ସମ୍ବନ୍ଧରେ ବର୍ଣ୍ଣନା କରୁଥିଲା ତ କେହି କେବଳ ବେଣୁ ମାଧୁରୀର ମହିମା ଗାନ କରୁଥିଲା । ଏହି ପ୍ରକାର ବର୍ଣ୍ଣନା କରି ଓ ଶ୍ରବଣ କରି ସେମାନେ ସମୟ କଟାଉଥିଲେ । ସନ୍ଧ୍ୟା ସମୟକୁ ସେମାନେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ନିଜର ଶ୍ରମ ସଫଳ ହୋଇଛି ବୋଲି ମନେ କରୁଥିଲେ ।

ପ୍ରେମର ସମ୍ବନ୍ଧ ଉଭୟ ପକ୍ଷରୁ ହୋଇଥାଏ, ଯାହାକୁ ଯେ ଚିନ୍ତା କରେ, ତାକୁ ଅନ୍ୟ ଜଣକ ନିଶ୍ଚୟ ମନେ ପକାଏ । ଦୁଇ ପ୍ରେମୀ ଲୋକଙ୍କର ମନ କେବଳ ଏକ ହୋଇ ନ ଥାଏ, ସମୟ ସମୟରେ ବି ଉଭୟଙ୍କ ଶରୀରରେ ଏକପ୍ରକାର ପ୍ରତିକ୍ରିୟା ଦେଖା-

ଯାଇଥାଏ । ସେମାନଙ୍କର ଦାରୁଣ ଆଘାତ ଦ୍ୱାରା ଅନ୍ୟର ରକ୍ତପାତ ହୋଇଥାଏ । ଶ୍ରୀକୃଷ୍ଣ ଯେତେବେଳେ ନାଗପାଶରେ ବନ୍ଦୀ ହୋଇଥିଲେ ଓ ଗୋପବାଳକ ଏବଂ ଗାଈ ବାଛୁରୀ ସବୁ ମୂର୍ଚ୍ଛିତ ହୋଇ ଯାଇଥିଲେ, ସେତେବେଳେ ବ୍ରଜରେ ମଧ୍ୟ ସମସ୍ତଙ୍କର ମନ ଏକସଙ୍ଗେ କ୍ଷୁଭିତ ହୋଇ ଯାଇଥିଲା । କୌଣସି କାର୍ଯ୍ୟଧନ୍ଦା ଓ କଥାବାର୍ତ୍ତାରେ କାହାର ମନ ଲାଗି ନ ଥିଲା । ପୃଥିବୀ ପୃଷ୍ଠରେ ସେହି ସମୟରେ ବଡ଼ ବଡ଼ ବିପତ୍ତି ଦେଖାଯାଇ ଥିଲା । ଆକାଶରୁ ରକ୍ତବୃଷ୍ଟି ହୋଇଥିଲା । ସମସ୍ତଙ୍କ ଶରୀରରେ ଜ୍ୱାଳା ଅନୁଭୂତ ହେଉଥିଲା, ଯିପରି ଯେପରି କେହି ବିଷ ପ୍ରୟୋଗ କରି ଦେଇଛି । ସମସ୍ତଙ୍କ ମନରେ ଭୟ, ଉଦ୍‌ବିଗ୍ନତା ଓ ଅଶାନ୍ତି ଭରି ଯାଇଥିଲା । ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ତିନିପ୍ରକାରର ଭୟଙ୍କର ଉତ୍ପାତ ଦୃଷ୍ଟିଗୋଚର ହେବାକୁ ଲାଗିଲା । ଜଣେ ଏପରି ଦଶା ଭୋଗ କରୁଥିଲେ କିଛି କଥା ନ ଥାନ୍ତା; କିନ୍ତୁ ଆବାଳବୃଦ୍ଧବନିତା ସମସ୍ତ ବ୍ରଜବାସୀଙ୍କର ସେହି ଏକ ଦଶା ଥିଲା । ନନ୍ଦ ଆଦି ସମସ୍ତ ଗୋପାଳଗଣ ଏହାର କାରଣ ଅନୁସନ୍ଧାନ କରିବାକୁ ଲାଗିଲେ । ଶ୍ରୀକୃଷ୍ଣଚନ୍ଦ୍ର ତ ଥିଲେ ତାଙ୍କର ଏକମାତ୍ର ଆଧାର, ପ୍ରେମରେ ତ ଟିକେ ଟିକେକେ ଶଙ୍କା ଉପୁଜେ, ସମସ୍ତଙ୍କର ଦୃଷ୍ଟି ଶ୍ରୀକୃଷ୍ଣଙ୍କ ଆଡ଼କୁ ପଡ଼ିଲା । ସମସ୍ତେ ନିଜ ନିଜ ମଧ୍ୟରେ ପଚରା ପଚରି ହେଲେ ଯେ—"ଆଜି ଶ୍ରୀକୃଷ୍ଣଚନ୍ଦ୍ର ଗାଈ ବାଛୁରୀ ନେଇ କେଉଁଠିକି ଯାଇଥିଲେ ?"

କେହି ଜଣେ କହିଲେ—"ଆଜି ତ ତାଙ୍କର କୌଣସି ଖବର ନାହିଁ । କାଳୀୟ ହ୍ରଦ ଆଡ଼କୁ ଗୋରୁମାନେ ଯାଉଥିବାର ଘଣ୍ଟିଶବ୍ଦ କେବଳ ଶୁଭୁଥିଲା ।"

ଏହା ଶୁଣିବାମାତ୍ରେ ସମସ୍ତେ ସ୍ତବ୍ଧ ହୋଇଗଲେ । ଏହା ଜାଣିକରି କ'ଣ କୃଷ୍ଣଚନ୍ଦ୍ର ସଙ୍ଗରେ ବଳରାମଙ୍କୁ ନ ନେଇ ଏକା ଗୋରୁ ଚରାଇବାକୁ ଚାଲିଗଲେ, ଏହା ସ୍ମରଣ କରି ସେ ଭୟଭୀତ ହୋଇଯାଇ ଅଧିକ ବ୍ୟାକୁଳ ହେଲେ । ତାଙ୍କର ଭଗବାନଙ୍କ-ଠାରେ ମାଧୁର୍ଯ୍ୟ ଭାବ ଥିଲା । ମାଧୁର୍ଯ୍ୟରେ ଐଶ୍ୱର୍ଯ୍ୟ ବିଲୀନ ହୋଇଯାଏ । ଯାହାଙ୍କୁ ଆମେ ହୃଦୟରେ ଅଧିକ ଆପଣାର ବୋଲି ଭାବି ନେଉଥାଉ, ସେ ଯେତେ ଐଶ୍ୱର୍ଯ୍ୟଶାଳୀ ହୋଇ ଥାଆନ୍ତୁ ନା କାହିଁକି, ତାହାଙ୍କର ମହିମା ଆମର ସ୍ମରଣ ହୋଇ ନ ଥାଏ । ବ୍ରଜବାସୀଗଣ ଭଗବାନ କୃଷ୍ଣଚନ୍ଦ୍ରଙ୍କର ଅନେକ ଅଦ୍ଭୁତ ଅଲୌକିକ କାର୍ଯ୍ୟ ଯଦି ବି ଦେଖିଥିଲେ, ତଥାପି ପ୍ରେମବଶତଃ ସେ ସବୁ ସେମାନେ ଭୁଲି ଯାଇଥିଲେ । ସେମାନଙ୍କ ମନରେ ଏହି ଦୃଢ଼ ଧାରଣା ହୋଇଥିଲା ଯେ, ଏହି ଭୟଙ୍କର ଉତ୍ପାତ ଘୋର ଅନିଷ୍ଟର ସୂଚନା ଦେଉଛି । ଅବଶ୍ୟ ଏବେ ଶ୍ରୀକୃଷ୍ଣଙ୍କର ପ୍ରାଣସଂଶୟ ଉପସ୍ଥିତ ହୋଇଛି, ଯିବେ କ'ଣ ଆମ୍ଭେମାନେ ଅଉ ଶ୍ରୀକୃଷ୍ଣଙ୍କ ଜୀବିତାବସ୍ଥାରେ ଦେଖି ପାରିବା ? ଏହି କଥା ମନରେ ସଂଶୟ ହେବାରୁ ସମସ୍ତେ ଦୁଃଖ, ଶୋକ ଓ ଭୟରେ ବ୍ୟାକୁଳ ହୋଇ ଅତ୍ୟନ୍ତ ଅଧୈର୍ଯ୍ୟ ହୋଇ ପଡ଼ିଲେ । ସେହି ବ୍ରଜବାସୀଗଣଙ୍କ ପ୍ରାଣ ତଥା ମନ ସଦା ସର୍ବଦା ଶ୍ୟାମସୁନ୍ଦରଙ୍କଠାରେ ହିଁ ଲାଗି

ରହୁଥିଲା । ଗାଈ ଯେପରି ବତ୍ସ ଜନ୍ମ ହେବାମାତ୍ରେ ତାକୁ ସ୍ନେହ କରେ, ପ୍ରତ୍ୟେକ ବ୍ରଜବାସୀ ସେହିପରି ଶ୍ରୀକୃଷ୍ଣଙ୍କୁ ସ୍ନେହ କରୁଥିଲେ । ଶ୍ରୀକୃଷ୍ଣଙ୍କ ଅନିଷ୍ଟ କଥା ମନରେ ଭାବି ଭାବି ସମସ୍ତ ବ୍ରଜବାସୀ ଆବାଳବୃଦ୍ଧବନିତା ନିଜ ନିଜ ଘରୁ ଅତି ବ୍ୟାକୁଳ ହୋଇ ବାହାରି ପଡ଼ିଲେ । ତାଙ୍କର ଏକମାତ୍ର ଧ୍ୟେୟ ଥିଲା, କିପରି ଯାଇ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବେ । କୌଣସିପ୍ରକାରେ ସେମାନେ ଶ୍ରୀକୃଷ୍ଣଙ୍କୁ ଯେପରି ଜୀବିତାବସ୍ଥାରେ ଦର୍ଶନ କରିବେ, ତାଙ୍କ ମନ୍ଦ ମନ୍ଦ ହାସ୍ୟଯୁକ୍ତ ମୁଖକମଳ ଦର୍ଶନ କରି ପାରିବେ । ପ୍ରତ୍ୟେକଙ୍କର ଏହି ଅଭିଳାଷ ଥିଲା । ସେମାନଙ୍କ ସଙ୍ଗେ ସଙ୍କର୍ଷଣାବତାର ଭଗବାନ ବଳଦେବ ମଧ୍ୟ ଯାଇଥିଲେ । ଶ୍ରୀକୃଷ୍ଣଙ୍କ ସକାଶେ ବ୍ରଜବାସୀଗଣ ଏପରି ଅଧୀର ହେଉଥିବାର ଦେଖି ସେ ମନେ ମନେ ହସୁଥିଲେ । କାରଣ ସେ ନିଜ ସାନଭାଇର ପ୍ରଭାବ ଭଲଭାବେ ଜାଣିଥିଲେ ଓ ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ସେହି ପରାତ୍ପର ପ୍ରଭୁଙ୍କର କେହି କିଛି ଅନିଷ୍ଟ କରିପାରିବେ ନାହିଁ । କୃଷ୍ଣ ଭୟକୁ ବି ଭୟ ଦେଖାଇବା ପିଲା, ମୃତ୍ୟୁ ଦେବତାର ମୃତ୍ୟୁର କାରଣ ଓ କାଳର ନିୟାମକ । ଏହା ଜାଣି ମଧ୍ୟ ବଳରାମ ବ୍ରଜବାସୀମାନଙ୍କୁ କିଛି କହିଲେ ନାହିଁ । ସେ ଚିନ୍ତାକଲେ—"ଏହା ଅତି ଉତ୍ତମ କଥା ଯେ, ହୃଦୟରେ ଯେତେ ଅଧିକ ବିରହ ବୃଦ୍ଧି ପାଇବ, ଦର୍ଶନର ଲାଳସା ଯେତେ ଉତ୍କଟ ହେବ ଏବଂ ଅନ୍ତଃକରଣ ସେତେ ଅଧିକ ଶୁଦ୍ଧ ହେବ । ବାହ୍ୟ ସଂଯୋଗରୁ ବିରହରେ ମନର ସଂଯୋଗ ସର୍ବଶ୍ରେଷ୍ଠ ହୋଇଥାଏ ।" ଏଥିପାଇଁ କ୍ରନ୍ଦନ କରୁଥିବା ନରନାରୀଙ୍କ ସଙ୍ଗେ ସେ ମଧ୍ୟ ସେହି ଭାବ ପ୍ରଦର୍ଶନ କରି ସେମାନଙ୍କ ସହିତ ଚାଲିଲେ ।

ଶ୍ରୀକୃଷ୍ଣଙ୍କୁ ଖୋଜିବା କୌଣସି କଠିନ କାର୍ଯ୍ୟ ନ ଥିଲା । ଏକେତ ଗୋରୁଙ୍କ ଖୁରା ଚିହ୍ନରୁ ସହଜେ ଜାଣିହେବ ଯେ, ଆଜି ଗୋରୁପଲ କେଉଁଆଡ଼େ ଯାଇଛନ୍ତି । ପୁନଶ୍ଚ ସବୁଠାରୁ ପ୍ରାମାଣିକ କଥା ଏହାଥିଲା ଯେ, ଶ୍ରୀକୃଷ୍ଣଙ୍କ ଚରଣରେ ଧ୍ୱଜ, ବଜ୍ର, ଅଙ୍କୁଶ ଓ କମଳ ଆଦି ଚିହ୍ନ ଥିଲା । ସମସ୍ତ ବ୍ରଜବାସୀ ଏ କଥା ଭଲଭାବରେ ଜାଣିଥିଲେ । ସେହି ପରମପାବନ ପୁଣ୍ୟପ୍ରଦ ପାଦପଦ୍ମର ଚିହ୍ନକୁ ଅନୁସରଣ କରି ବ୍ରଜବାସୀ ସେହି ଦିଗକୁ ଅଗ୍ରସର ହେଲେ । ପଥ ମଧ୍ୟରେ ସେମାନେ ସେହିଦିନ ଅସଂଖ୍ୟ ଗୋ-ଖୁରା ଚିହ୍ନ ପଡ଼ିଥିବାର ଦେଖିଲେ । ଗୋପାଳ ବାଳକଗଣଙ୍କର ପଦଚିହ୍ନ ପଡ଼ିଥିବାର ମଧ୍ୟ ଦେଖିଲେ । ସେହି ପଦଚିହ୍ନ ମଧ୍ୟରେ ଗୋପାଳକ ଗୋବିନ୍ଦର ଚରଣ ଚିହ୍ନ ସୁଶୋଭିତ ହେଉଥିଲା । ସେମାନେ ଦ୍ରୁତ ଗତିରେ ଚାଲୁ ଚାଲୁ ଦୂରରୁ କାଳୀୟ ହ୍ରଦରେ ସର୍ପ ଦେହରେ ଭିଡ଼ରେ ବନ୍ଧା ହୋଇଥିବା ଦାମୋଦରଙ୍କୁ ଦେଖିଲେ । ସେମାନେ ଅନୁଭବ କଲେ ଯେ, ଶ୍ୟାମସୁନ୍ଦର ସେହି ସର୍ପଶରୀରରେ ଜାକ ହୋଇ ଯାଇଥିବା କାରଣରୁ ନିଶ୍ଚେଷ୍ଟ ହୋଇ ପଡ଼ିଛନ୍ତି, ଏବେ ତାଙ୍କ ବଳ ଓ ପୌରୁଷ କିଛି କାମ ଦେଉନାହିଁ । ଏଣେ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଦଶା ତ ଏହିପରି ଥିଲା, ତାହାଛଡ଼ା ଗୋପବାଳକଗଣ ତେଣେ ହ୍ରଦକୂଳରେ

ଅଚେତନାବସ୍ଥାରେ ପଡ଼ି ରହିଥିଲେ । ସମସ୍ତ ଗାଈ ବାଛୁରୀ ନେତ୍ରରୁ ଲୁହ ଗଡ଼ାଇ ଆର୍ତ୍ତସ୍ୱରରେ ହମ୍ବାରଡ଼ି କରୁଥିଲେ । ଏମାନଙ୍କୁ ଏପରି ଦୁର୍ଦ୍ଦଶାରେ ପଡ଼ିଥିବାର ଦେଖି ଓ ଶ୍ୟାମସୁନ୍ଦରଙ୍କୁ ନାଗପାଶରେ ବନ୍ଧା ହୋଇଥିବାର ଦେଖି ଏମାନେ ମୂର୍ଚ୍ଛିତ ହୋଇଗଲେ ।

ଗୋପାଙ୍ଗନାମାନଙ୍କର ଦଶା ଅତି ଦୟନୀୟ ହୋଇ ପଡ଼ିଲା । ସେହି ଅଚ୍ୟୁତ ଅନନ୍ତଙ୍କ ପ୍ରତି ସେମାନଙ୍କର ଅନୁପମ ଅନୁରାଗ ଥିଲା । ଯେ ନିଜର ବାହୁପାଶରେ ସେମାନଙ୍କୁ ବାନ୍ଧି ଅନୁରାଗଭରା ହୃଦୟରେ ଆଲିଙ୍ଗନ କରୁଥିଲେ, ସେମାନଙ୍କର ସେହି ପ୍ରିୟତମ, ପ୍ରାଣବଲ୍ଲଭ ଆଜି ନାଗପାଶରେ ବନ୍ଧା ହୋଇ ପଡ଼ିଛନ୍ତି । ଏହା ଚିନ୍ତା କରି, ତଥା ତାଙ୍କର ମନ୍ଦ ମନ୍ଦ ହସ, ଅତ୍ୟନ୍ତ ଆକର୍ଷଣୀୟ ବଙ୍କିମଚାଣି, ପ୍ରେମପୂର୍ବକ ମିଳନ ଓ ପ୍ରେମାଳାପ ଆଦି ସୌହାର୍ଦ୍ଦ କଥାକୁ ବାରମ୍ବାର ସ୍ମରଣ କରି ଅତ୍ୟନ୍ତ ଅଧୀର ହୋଇ ଉଠିଲେ । ସେମାନଙ୍କ ହୃଦୟ ଅତ୍ୟଧିକ ସନ୍ତପ୍ତ ଥିଲା । ପ୍ରାଣାଧିକ ପ୍ରିୟବ୍ରଜବଲ୍ଲଭଙ୍କ ବିନା ସାରାସଂସାର ସେମାନଙ୍କୁ ଶୂନ୍ୟବୋଧ ହେଉଥିଲା ।

ଅନ୍ୟାନ୍ୟ ଗୋପୀମାନଙ୍କ ଅବସ୍ଥା ଯେତେବେଳେ ଏପରି ଥିଲା, ଯଶୋଦାଙ୍କ ଅବସ୍ଥା ସେତେବେଳେ ଯାହା ହୋଇଥିବ ତାହା ବର୍ଣ୍ଣନା କରିବା ଅସମ୍ଭବ । ତାଙ୍କର ଦୁଇ ନୟନରୁ ଶ୍ରାବଣର ବର୍ଷାଧାରା ପରି ଅଶ୍ରୁ ଝରୁଥିଲା, ସେ ନିଜର ଦୁଇ ହାତରେ ଛାତିକୁ ବାଡ଼େଇ ଆର୍ତ୍ତନାଦରେ କୁରରୀ ଭଳି ଶ୍ରୀକୃଷ୍ଣଙ୍କ ସୁମଧୁର ନାମ ଉଚ୍ଚାରଣ କରି ତାଙ୍କୁ ଡାକି ଛାଡ଼ୁଥିଲେ । ସେ ବଳପୂର୍ବକ ନିଜର ପ୍ରାଣ ନାଶ କରିବା ପାଇଁ କାଳୀୟ ହ୍ରଦରେ ପ୍ରବେଶ କରିବାକୁ ପ୍ରଯତ୍ନ କରୁଥିଲେ । ଅନ୍ୟ ଗୋପ-ଗୋପୀ କାନ୍ଦି କାନ୍ଦି ତାଙ୍କୁ ଏଥିରୁ ନିବାରଣ କରୁଥିଲେ । ଶୋକରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇ ବିଳାପ କରି ମାତା କହୁଥିଲେ—"ଭଉଣୀମାନେ ! ମୋତେ ଛାଡ଼ିଦିଅ, ଛାଡ଼ିଦିଅ । ମୋର ସ୍ନେହର କୃଷ୍ଣ ବିନା ମୁଁ ଜୀବନ ଧାରଣ କରି ପାରିବି ନାହିଁ । ତାହାର ମୁଖକମଳକୁ ମ୍ଳାନ ପଡ଼ିଥିବାର ମୁଁ ଦେଖି ପାରେନି ନାହିଁ । ସେ ବଡ଼ ବଡ଼ ଅସୁରଙ୍କୁ ମାରିଥିଲା; କିନ୍ତୁ ଆଜି କାଳୀୟର ପାଶରେ ଆବଦ୍ଧ ହୋଇ ବିବଶ ହୋଇ ପଡ଼ିଛି । ଏବେ ସେ ହାତ ଗୋଡ଼ ହଲାଇ ପାରୁ ନାହିଁ । ଏହି ସର୍ପ ତାକୁ ଭିଡ଼ି ଧରିଛି ।" ମା ଯଶୋଦା ଏହିପ୍ରକାର ପ୍ରାଣପ୍ରିୟଙ୍କ ପରି ହୋଇ ଯାଇ ବ୍ରଜଜୀବନ ଘନଶ୍ୟାମସୁନ୍ଦରଙ୍କ ଗୁଣ ବାହୁନି କାନ୍ଦୁ ଥାଆନ୍ତି ଓ ଦୁଃଖ ଶୋକରେ ମ୍ରିୟମାଣ ହୋଇ ପଡ଼ୁଥାନ୍ତି ।

ଗୋପୀକାମାନେ ଯଶୋଦାଙ୍କୁ ଧରି ଥାଆନ୍ତି ; କିନ୍ତୁ ନନ୍ଦାଦି ଗୋପାଳଗଣଙ୍କର ଦଶା ଅଧିକ ଦୟନୀୟ ହୋଇ ପଡ଼ୁଥାଏ । ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଶ୍ରୀକୃଷ୍ଣଙ୍କୁ ଉଦ୍ଧାର କରିବା ପାଇଁ କାଳୀୟ ହ୍ରଦକୁ ଡେଇଁପଡ଼ୁ ଥାଆନ୍ତି । ହଜାର ହଜାର ଗୋପାଳ ନିଜ ନିଜର ପ୍ରାଣକୁ ତୁଚ୍ଛ ମନେକରି କାଳୀୟ ଉପରେ ଆକ୍ରମଣ କରିବା ନିମନ୍ତେ ଅଗ୍ରସର ହେଉଥାଆନ୍ତି ।

ସେମାନଙ୍କୁ କାଳ ମୁଖକୁ ଧାଇଁଥିବାର ଦେଖି ଓ ସର୍ବ ପ୍ରଥମେ ନନ୍ଦଙ୍କୁ ହ୍ରଦ ମଧ୍ୟକୁ ଡେଇଁବା ପାଇଁ ଉଦ୍ୟତ ହେଉଥିବାର ଦେଖି ବଳରାମ ଦଉଡ଼ିଯାଇ ଅତ୍ୟନ୍ତ ଧୈର୍ଯ୍ୟର ସହିତ ସେମାନଙ୍କ ଆଗରେ ପହଞ୍ଚି କହୁଥାଆନ୍ତି—"ବାବା ! ବାବା ! ତୁମେ ଏ କ'ଣ କରିବାକୁ ଯାଉଛ ? ତୁମେ ଯଦି ଏପରି ଅଧୀର ହେବ, ତେବେ ଆମ୍ଭମାନଙ୍କର ଦଶା କ'ଣ ହେବ ? ତୁମେ ଆମ୍ଭମାନଙ୍କୁ ବୁଝାଇବା କଥା । ତୁମେ କ'ଣ ଶ୍ରୀକୃଷ୍ଣଙ୍କ ମହିମା ଜାଣ ନାହିଁ ? ତୁମେ କ'ଣ ସର୍ବଜ୍ଞ ଭଗବାନ ଗର୍ଗ ମୁନିଙ୍କ କଥା ଭୁଲିଯାଉଛ ? ଏ ଦୁଷ୍ଟ କାଳୀୟ ମୋ ସାନଭାଇର କି ଅନିଷ୍ଟ କରି ପାରିବ ? ତୁମେ ଧୈର୍ଯ୍ୟଧର । କିଛି ସମୟପରେ ତୁମେ ଦେଖିବ କୃଷ୍ଣ ଏହି ସର୍ପର ଦର୍ପ ଚୂର୍ଣ୍ଣ କରି ନିର୍ବିଘ୍ନରେ ହ୍ରଦରୁ ବାହାରି ଆସିବ । ମୁଁ ଶ୍ରୀକୃଷ୍ଣର ପ୍ରଭାବ ଜାଣେ । ତୁମେ ତା' ପାଇଁ ଚିନ୍ତା କର ନାହିଁ ।" ଏହା କହି ବଳରାମ ସଙ୍ଗେ ସଙ୍ଗେ କୃଷ୍ଣଙ୍କୁ କହିଲେ—"କୃଷ୍ଣ ! ତୁ କାହିଁକି ଏପରି ମାନୁଷୀ ଲୀଳା କରୁଛୁ ? ଦେଖ୍ ତୋ' ବିଚ୍ଛେଦରେ ଏ ବ୍ରଜବାସୀଗଣ କେତେ ବ୍ୟାକୁଳ ହେଉଛନ୍ତି । ଆଉ ଏ ଦୃଶ୍ୟକୁ ଅଧିକ ଲମ୍ବାଇ ନ କରି ଅତଶୀଘ୍ର ଏ ଦୁଷ୍ଟକୁ ଦମନ କରି ଜଳ ମଧ୍ୟରୁ ଉପରକୁ ଚାଲିଆ ।"

ସୂତ କହୁଛନ୍ତି—"ମୁନିଗଣ ! ନିଜ ବଡ଼ଭାଇଙ୍କର ଏପ୍ରକାର କଥା ଶୁଣି ଶ୍ୟାମସୁନ୍ଦର ହସି ଉଠିଲେ । ସେ ତ ସହଜେ ନଟବର । ଅନ୍ୟର ଦୁଃଖ ସମ୍ବନ୍ଧରେ ସେ କାହିଁକି ଅବା ଚିନ୍ତା କରନ୍ତେ ? ଖେଳ ଖେଳିବାକୁ ତ ତାଙ୍କର ଇଚ୍ଛା । ସେ ଭାରି କ୍ରୀଡ଼ା ପ୍ରିୟ । ନାଚିବା, ଗାଇବା, ଖେଳିବା, କୁଦିବା ହିଁ ତାଙ୍କ ଜୀବିକା । ଏବେ କାଳୀୟ ହ୍ରଦରେ ନାଚିବାକୁ ତାଙ୍କର ମନ ହେଲା । ସେ ଭାବିଲେ—ଅନେକ ଲୋକ ପବନରେ ନାଚନ୍ତି, ଅନେକ ଖଣ୍ଡାଧାର ଉପରେ ନାଚନ୍ତି ଓ ଅନେକ ମୁଣ୍ଡ ଉପରେ କଳସ ରଖି ନାଚନ୍ତି । ମୁଁ ଆଜି ସର୍ପର ଫଣା ଉପରେ ଯଦି ନାଚେଁ, ତାହାହେଲେ ମୋର ନଟନାଗର ନାମ ସାର୍ଥକ ହେବ । ଏହା ଚିନ୍ତାକରି ସମସ୍ତଙ୍କୁ ଖୁସି କରିବାପାଇଁ ବନମାଳୀ କାଳୀୟର ଫଣା ଉପରେ ତାଳମାରି ନୃତ୍ୟ କରିବାକୁ ଉଦ୍ୟତ ହେଲେ । ଭଗବାନ କାଳୀୟ ଫଣା ଉପରେ ଯେପରି ନୃତ୍ୟ କଲେ, ସେହି ପ୍ରସଙ୍ଗ ମୁଁ ଆପଣମାନଙ୍କୁ ଏହାପରେ କହିବି ।"

## ଛପ୍‌ପୟ

ଲକ୍ଷି ଅହି ଅଙ୍ଗନ ବନ୍ଧେ ଶ୍ୟାମ ଗୋପିନ ସୁଖ ଦେନୋଁ ।
ଭୟୋ ନିରଖ ଅତ କରୁନ ଦୃଶ୍ୟ ସବବେ ଜଗ ସୁନୋଂ ।।
କର କର ହରକୀ ୟାଦ ଦୁଃଖିତ ହୋବେଂ ଡକରବେଂ ।
ଦୌର ଦୌରକେ ମାତୁ ଡୂବବେ ଦହମହଁ ଜାବେଂ ।।
ହ୍ୱୈ ମୂର୍ଚ୍ଛିତ ସବ ଗୋପଗନ, ଗିରେଂ ପରେଂ ଦହମହଁ ଧଁସେ ।
ବାର ବାର ବଲ ବରଜିକେଂ, ହରି ଲୀଳା ଲକ୍ଷିକେଂ ହଁସେ ।।

●

# କାଳୀୟର ଫଣାବଳୀ ଉପରେ
# ବନମାଳୀଙ୍କର ନୃତ୍ୟ

ତସ୍ୟାକ୍ଷିଭିର୍ଗରଳମୁଦ୍‌ବମତଃ ଶିରସ୍ସୁ
ଯଦ୍‌-ଯଦ୍‌ ସମୁନ୍ନମତି ନିଃଶ୍ୱସତୋ ରୁଷୋଚ୍ଚୈଃ ।
ନୃତ୍ୟନ୍‌ ପଦାନୁନମୟନ୍‌ ଦମୟାମ୍ବଭୂବ
ପୁଷ୍ପୈଃ ପ୍ରପୂଜିତ ଇବେହ ପୁମାନ୍‌ ପୁରାଣଃ ॥
(ଶ୍ରୀ ଭା ୧୦ ସ୍କ, ୧୬ ଅ, ୨୬ ଶ୍ଳୋକ)

## ଛପ୍‌ପୟ

ସମୁଝେ ହର ସବ ଦୁଃଖୀ ସୁନୀ ବଲଦାଊ ବାନୀ ।
କାଲୀୟ ଫନପେ ନୃତ୍ୟ କରନ ନଟବର ମନ ଠାନୀ ॥
ସମୟ ଶ୍ୟାମ ସଂକେତ ସୁମନ ସୁରଗନ ବରସାବେଂ ।
ବୀଣା ପଣବ ବଜାଇ ତାଲମହଁ ତାଲ ମିଲାବେଂ ॥
ମଧୁର ମଧୁର ବୀଣା ବଜହୁଁ, ନାଚେଂ ନଟବର ଫନନପେ ।
ଜୋ ନ ନବେଂ ରୌଂଦେଂ ତିନହୁଁ, ଚରନ ଚଲବେଂ ସବନପେ ॥

ଯେ ଲୀଳା କରିବାପାଇଁ ଅବତୀର୍ଣ୍ଣ ହୋଇଛନ୍ତି, କ୍ରୀଡ଼ା କରିବା ଯାହାଙ୍କର ଉଦ୍ଦେଶ୍ୟ, ସେ ପ୍ରତ୍ୟେକ କାର୍ଯ୍ୟରେ କ୍ରୀଡ଼ା ହିଁ ଦେଖନ୍ତି । ସେ ଯେଉଁଠାକୁ ଯାଆନ୍ତି, ସେଠାରେ କ୍ରୀଡ଼ା କରନ୍ତି । କ୍ରୀଡ଼ାରେ ଭଲ ମନ୍ଦ, ସ୍ଥାନ ଅସ୍ଥାନର ବିଚାର ନ ଥାଏ । ଭୂମି ତ ସବୁ ଗୋପାଳଙ୍କର । ଗୋପାଳ ଯେଉଁଠାକୁ ଯାଆନ୍ତି, ସେଠାରେ କ୍ରୀଡ଼ା କରନ୍ତି । ଏ ବିଶ୍ୱ ତାଙ୍କର କ୍ରୀଡ଼ାଭୂମି । ନଟବରଙ୍କ ପାଇଁ ସବୁସ୍ଥଳ ନାଟ୍ୟସ୍ଥଳ, ସମସ୍ତ ରଙ୍ଗମଞ୍ଚ । ସେ ଯେଉଁଠାକୁ ଯାଆନ୍ତି, ସେଠାରେ ନିଜର ଚରଣ ରଖି ନୃତ୍ୟ କରନ୍ତି । ନୃତ୍ୟ ହିଁ ତାଙ୍କର କୃତ୍ୟ । ସେଥିପାଇଁ ତାଙ୍କୁ ନଟବର, ନଟନାଗର, ନଟରାଜ ଓ ନଟେଶ୍ୱର, ବୋଲି କୁହାଯାଏ । ତାଙ୍କ ନୃତ୍ୟରେ ନିରନ୍ତର ବିଶ୍ୱର କଲ୍ୟାଣ ହୋଇଥାଏ । କାରଣ ସେ ସ୍ୱୟଂ କଲ୍ୟାଣ ଧାମ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ କଲ୍ୟାଣ ନିହିତ ଅଛି ।

ସୂତ କହୁଛନ୍ତି—"ମୁନିଗଣ ! ଭଗବାନ ନିଜର ଆଶ୍ରିତ ସମସ୍ତ ବ୍ରଜବାସୀଙ୍କୁ ଶୋକ, ଚିନ୍ତା, ଦୁଃଖରେ କ୍ରନ୍ଦନ କରିବାର ଦେଖି ଚିନ୍ତାକଲେ, "ଆରେ, ଏ ଲୀଳା ତ ଆବଶ୍ୟକତାଠାରୁ ଅଧିକ କାରୁଣିକ ହୋଇଗଲା । ମୁଁ ଏବେ ଅଧିକ ପରିମାଣରେ ମନୁଷ୍ୟଭାବ ଅନୁକରଣ କଲି । ଏବେ ମୋତେ ନିଜର କିଛି ବଳବୀର୍ଯ୍ୟ ପ୍ରକାଶ କରି ଏମାନଙ୍କୁ ପ୍ରସନ୍ନ କରିବି । ନୃତ୍ୟ ହେଉଛି ଏପରି ଏକ କଳା, ଯେଉଁଥିରେ କି ସମସ୍ତଙ୍କର ମନ ଆନନ୍ଦିତ ହୋଇଥାଏ । ନୃତ୍ୟରେ ସଙ୍ଗୀତର ଗାୟନ, ବାଦ୍ୟ ଓ ଅଙ୍ଗର ଭାବଭଙ୍ଗୀ ପ୍ରଦର୍ଶନ କରିବା ଏହିତିନି ଅଙ୍ଗ ଅନ୍ତର୍ଗତ । ଏଥିପାଇଁ ନୃତ୍ୟରେ ପ୍ରତ୍ୟେକଙ୍କର ମନୋରଞ୍ଜନ ହୋଇଥାଏ । ମୁଁ ଆଜି ଏହି କାଳୀୟର ଫଣା ଉପରେ ନୃତ୍ୟକରି ବ୍ରଜବାସୀମାନଙ୍କୁ ପ୍ରମୁଦିତ ଓ ଆଶ୍ଚର୍ଯ୍ୟାନ୍ୱିତ କରିବି ।" ଏହା ଚିନ୍ତାକରି ଆଉ ମୁହୂର୍ତ୍ତେ ମାତ୍ର କାଳୀୟ ବନ୍ଧନରେ ଆବଦ୍ଧରହି ତା' ପାଶରୁ ମୁକୁଳିବା ପାଇଁ ସଂକଳ୍ପ କଲେ ।

ଭଗବାନ ନିଜର ଶ୍ରୀଅଙ୍ଗରେ ବାୟୁ ନିରୋଧ କରି ତାହା ଫୁଲାଇବାକୁ ଆରମ୍ଭ କଲେ । ଶ୍ରୀଅଙ୍ଗ ଫୁଲିବାକ୍ଷଣି କାଳୀୟର ଶରୀର ଅତ୍ୟନ୍ତ ବ୍ୟଥିତ ହେଲା । ଏ ପର୍ଯ୍ୟନ୍ତ ସେ କୁଣ୍ଡଳୀ ଦ୍ୱାରା ଭଗବାନଙ୍କୁ ଜାକି ଧରିଥିଲା । ଏବେ ଭଗବାନ ଯେତେବେଳେ ଶ୍ରୀଅଙ୍ଗ ଫୁଲାଇଲେ, ସେ ଆଉ କୁଣ୍ଡଳୀରେ ଭିଡ଼ିଧରି ପାରିଲା ନାହିଁ । ସଙ୍ଗେ ସଙ୍ଗେ ତାହାର ପାଶ ଖୋଲିଗଲା । ଭଗବାନ ସଙ୍ଗେ ସଙ୍ଗେ ତା' ପାଶରୁ ମୁକୁଳି ଯାଇ ତାକୁ ବ୍ୟଥିତ କରିବା ନିମନ୍ତେ କୌତୁକ ଆରମ୍ଭ କରିଦେଲେ ।

ସର୍ପର ସ୍ୱଭାବ ହେଉଛି, ସେ ସଙ୍ଗେ ସଙ୍ଗେ ମୋଡ଼ି ହୁଏ ନାହିଁ, ତାହାର ଗତି ତ ଦେଢ଼ା । ଯଦି ସିଧା ଗ୍ଲୁଥାଏ ତ ସିଧା ହୋଇ ଯାଉ ଯାଉ ତାକୁ ମୋଡ଼ ନେବାକୁ ହୁଏ । କିନ୍ତୁ ହଠାତ୍ ମୋଡ଼ ନେଇ ପାରେ ନାହିଁ । ବୁଲିପଡ଼ି ମୋଡ଼ ନିଏ । ଭଗବାନ ଯେତେବେଳେ ନାଗପାଶରୁ ମୁକ୍ତ ହେଲେ, ସେତେବେଳେ କାଳୀୟ ତାଙ୍କୁ ଆଘାତ କରିବାକୁ ଇଚ୍ଛା କରି କ୍ରୋଧରେ ତା' ଫଣାକୁ ଉଠାଇ ଫୁତ୍କାର ଶବ୍ଦ କରି ଭଗବାନ ବାଳକୃଷ୍ଣଙ୍କ ଆଡ଼କୁ କଟମଟ କରି ଚାହିଁଲା । ସେତେବେଳେ ତା' ନାସିକାରୁ ବିଷ ନିର୍ଗତ ହେଉଥିଲା । ତାହାର ରକ୍ତବର୍ଣ୍ଣର ଅଚଞ୍ଚଳ ନେତ୍ର କମାର ଭାଟିରେ ତତା ଯାଇଥିବା ଲୁହାଭଳି, ପ୍ରଳୟକାଳୀନ ସୂର୍ଯ୍ୟଙ୍କ ତୀକ୍ଷ୍ଣ ତେଜ ଭଳି ତଥା ଶିବଙ୍କର ତୃତୀୟ ନେତ୍ରଭଳି ଅତ୍ୟନ୍ତ ଲାଲ ହୋଇଯାଇଥିଲା ।

ତାହାର ପ୍ରତ୍ୟେକ ମୁଖରୁ ପ୍ରଜ୍ୱଳିତ ଅଗ୍ନି ସମାନ ଶିଖା ବାହାରୁଥିଲା । ସେ ନିଜର ମଝିରୁ ଦୁଇଭାଗ ହୋଇଥିବା ଶତ ଶତ ଜିହ୍ୱା ଲହ ଲହ କରୁଥିଲା । ଭୟଙ୍କର ବିଷାଗ୍ନିମୟ ଦୃଷ୍ଟି ବିଶିଷ୍ଟ ସେହି ସର୍ପର ଶରୀରର ଚତୁର୍ପାର୍ଶ୍ୱରେ ଶ୍ରୀକୃଷ୍ଣ କ୍ରୀଡ଼ା କରୁଥିଲେ ।

ଭଗବାନ ତ ସହଜେ କ୍ରୀଡ଼ାପ୍ରିୟ ନଟବର । ତାଙ୍କର ଅଙ୍ଗପ୍ରତ୍ୟଙ୍ଗରେ ଅଦ୍ଭୁତ ସ୍ଫୂର୍ତ୍ତି ବିରାଜମାନ କରୁଥିଲା । ସେ ଆଖିପିଛୁଳାକେ ଏଣେତେଣେ ଘୂରି ପଡ଼ୁଥିଲେ । କାଳୀୟ

ଯେଉଁ ସ୍ଥାନରେ ଶ୍ରେଷ୍ଠ ମାରିବାକୁ ଇଚ୍ଛା କରି ବୁଲି ପଡ଼ୁଥିଲା ସେ ସେଠାରୁ ଖସି ଯାଉଥିଲେ । ଯେପରି ଅତି ଦ୍ରୁତଗାମୀ ଅଶ୍ୱକୁ ତାହାର ପ୍ରଭୁ (ଅଶ୍ୱାରୋହୀ) ଦୌଡ଼ାଇ ପ୍ରଥମେ ପ୍ରଥମେ ଥକ୍କା ମାରିଏ ଓ ତାହାପରେ ଶିକ୍ଷା ଦିଏ, ସେହିପରି ପ୍ରଥମେ ଭଗବାନ ସର୍ପକୁ ଏଣେ ତେଣେ ଘୂମା ଘୁମି କରାଇ ବଳହୀନ କରି ଦେଲେ । ବାରମ୍ବାର ଏଣେତେଣେ ଘୂରୁଥିବାରୁ ସର୍ପର ବଳ କ୍ଷୀଣ ହୋଇ ଆସିଲା । ଭଗବାନ ତ ମାତୃଗର୍ଭରୁ ଚୌଷଠୀ କଳାନେଇ ଜନ୍ମ ଗ୍ରହଣ କରିଥିଲେ । ସେ ଭାବିନେଲେ, ଏବେ ନୃତ୍ୟକଳା ପ୍ରଦର୍ଶନ କରିବେ । ଏହା ଚିନ୍ତା କରି ସେ ସଙ୍ଗେ ସଙ୍ଗେ ଉସିଉଠି କାଳୀୟର ଫଣା ଉପରେ ଚଢ଼ିଗଲେ ଓ ତା' ଉପରେ ଥେଇ ଥେଇ ହୋଇ ନାଚିବା ଆରମ୍ଭ କରିଦେଲେ ।

ସମସ୍ତ ବିଦ୍ୟାର ଆଦିଗୁରୁ ଭଗବାନ୍ ବାସୁଦେବ, ବଳବୀର୍ଯ୍ୟରେ ଦୀପ୍ତ, ଦର୍ପରେ ଉନ୍ନତ ମସ୍ତକବିଶିଷ୍ଟ ହେଇ ସର୍ପର ଶିରକୁ ନୁଆଁଇ, ତାହାର ସ୍ଥୂଳ ଓ ନରମ ଫଣା ଉପରେ ଚଢ଼ି ନିଜ ଚରଣର ନୂପୁର ବଜାଇ ନୃତ୍ୟ କରିବାକୁ ଲାଗିଲେ । ଭଗବାନଙ୍କ ଚରଣ ରକ୍ତବର୍ଣ୍ଣର ପଦ୍ମଫୁଲ ପରି କୋମଳ ଓ ଲାଲବର୍ଣ୍ଣ ଥିଲା । କାଳୀୟର ଫଣା ଉପରେ ମଣିଗୁଡ଼ିକ ଝଲସି ଉଠୁଥିଲା । ସେହି ମଣିଗୁଡ଼ିକର ତେଜରେ ଭଗବାନଙ୍କ ଚରଣର ଲାଲବର୍ଣ୍ଣ ଆହୁରି ଅଧିକ ଅରୁଣବର୍ଣ୍ଣ ଦେଖା ଯାଉଥିଲା ।

ସ୍ୱର୍ଗରେ ବିମାନରେ ବସି, ଦେବତା, ଗନ୍ଧର୍ବ, କିନ୍ନର ଓ ସିଦ୍ଧଗଣ ଏହି ଦୃଶ୍ୟ ଦେଖୁଥିଲେ । ସେମାନେ ଭାବୁଥିଲେ ସେବା କରିବାର ଏହା ହିଁ ସୁ-ଅବସର । ଭଗବାନ ତା' ସ୍ୱର ଓ ତାଳରେ ନୃତ୍ୟ କରୁଅଛନ୍ତି; କିନ୍ତୁ ତାଙ୍କ ତାଳ ସହିତ ତାଳ ମିଳାଇବାର ବାଦ୍ୟ ନ ହେଲେ ତ ନୃତ୍ୟକାରଙ୍କର ଉତ୍ସାହ ବଢ଼େ ନାହିଁ । ଏହା ଚିନ୍ତାକରି ସେମାନେ ଯାହା ବହୁତ ଦୂରରେ ରହି ନୃତ୍ୟ ଦେଖୁ ଥିଲେ, ଏବେ ଭଗବାନଙ୍କ ନିକଟକୁ ଆସିଗଲେ । ସେମାନେ ଭଗବାନଙ୍କ ତାଳ ସହିତ ତାଳ ମିଳାଇ ମୃଦଙ୍ଗ, ପଣବ, ଆନକ, ବୀଣା, ବେଣୁ, ମଞ୍ଜୀରା ଓ ଆହୁରି ଅନେକ ପ୍ରକାର ବାଦ୍ୟ ବଜାଇବାକୁ ଲାଗିଲେ । ଅପ୍‌ସରାମାନେ ମୁଖରେ ଏକ୍, ଦୁଇ, ତିନ୍, ଏକ୍ ଦୁଇ, ତିନ୍ ଏହି ପ୍ରକାର ଶବ୍ଦ ଉଚ୍ଚାରଣ କରି ଭଗବାନଙ୍କର ନୃତ୍ୟର ଅନୁକରଣ କରିବାକୁ ଲାଗିଲେ । ବନମାଳୀ କାଳୀୟର ଫଣା ଉପରେ ନୃତ୍ୟ କରୁଥାଆନ୍ତି, ଆକାଶମାର୍ଗରେ ବିମାନରେ ବସି ଅପ୍‌ସରାଗଣ ତାନ ଛାଡ଼ୁଥାନ୍ତି ଓ ଦେବତାଗଣ ମଧ୍ୟେ ମଧ୍ୟେ ଜୟ ଜୟ, ନମୋ ନମଃ, ସାଧୁ ସାଧୁ ଆଦି ଧ୍ୱନି କରି ପୁଷ୍ପ ବର୍ଷା କରୁଥାଆନ୍ତି । ଆହୁରି ମଧ୍ୟ କୃତଜ୍ଞତା ପ୍ରଦର୍ଶନ କରି ସେମାନେ ବାରମ୍ବାର ନତମସ୍ତକ ହେଉଥାଆନ୍ତି ।

ସିତାରର ତାରକୁ ଅଙ୍ଗୁଳି ଦ୍ୱାରା ଦାବିଲେ ତହିଁରୁ ଯେପରି ବିଚିତ୍ର ସ୍ୱର ବାହାରେ, ନିଜ ଚରଣରେ କାଳୀୟର ଫଣାକୁ ପ୍ରହାର କରି, ଦବାଇ ଅଖିଳ କଳାର

ଗୁରୁ ଶ୍ୟାମସୁନ୍ଦର ସେହିପରି ନୃତ୍ୟର ଏକ ବଡ଼ଶ ଆଖି ପ୍ରଦର୍ଶନ କରୁଥିଲେ । ସେହି ଅଭିମାନୀ ନାଗ ନିଜର ଯେଉଁ ଯେଉଁ ଫଣାକୁ ନୁଆଁଉ ନ ଥିଲା, ପ୍ରଚଣ୍ଡ ଦଣ୍ଡଧାରୀ ଭଗବାନ ତାହାର ସେହି ସେହି ଫଣାକୁ ନିଜର ପାଦ ପ୍ରହାର ଦ୍ୱାରା ଦାବି ଦେଉଥିଲେ । ତାହାର ଗର୍ବକୁ ଖର୍ବ କରି ଦେଉଥିଲେ ।

ଏବେ ନାଗର ଅଭିମାନ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ସେ ବାରମ୍ବାର ବିଷ ବମନ କଲା । ଲମ୍ବା ଲମ୍ବା ଫୁତ୍କାର ଛାଡ଼ିଲା । ଶ୍ରୀକୃଷ୍ଣଙ୍କୁ ମାରିବାର ସୁଯୋଗ ଖୋଜିଲା; କିନ୍ତୁ ଯେତେ ଚେଷ୍ଟା କଲା ତାହା ବିଫଳ ହେଲା । ଭଗବାନଙ୍କ ପାଦ ପ୍ରହାରରେ ସେ ମୃତବତ୍ ହୋଇଗଲା । ସମସ୍ତ ମୁହଁ ଓ ନାସିକାରୁ ରକ୍ତ ଝରିଲା । ତାହାର ମୁଣ୍ଡ ଘୂରିଲା ଓ ସେ ଚେତନାଶୂନ୍ୟ ହୋଇ ଢଳିପଡ଼ିଲା । ପୁରାଣପୁରୁଷଙ୍କ ନିକଟରେ ତାହାର ବଳ ପୁରୁଷାର୍ଥ କିଛି କାମ ଦେଲା ନାହିଁ । ତାହାର ଫଣାଗୁଡ଼ିକ ଛିନ୍ନଭିନ୍ନ ହୋଇଗଲା । ଅଙ୍ଗ ପ୍ରତ୍ୟଙ୍ଗ ଦଳି ହୋଇଗଲା । ଦେବତାମାନେ ଏତେ ପୁଷ୍ପ ବୃଷ୍ଟି କଲେ ଯେ, ଭଗବାନ ପୁଷ୍ପରେ ବୁଡ଼ିଗଲେ । ସତେ ଯେପରି ତାହା ଶେଷ ନାଗ ଉପରେ ପୁଷ୍ପ ବୃଷ୍ଟି ଆସ୍ତରଣ ଭରିଯାଇଛି । ଏବେ ତା'ର ଆଉ ଉପାୟ କ'ଣ ? ନିର୍ବଳର ବଳଗର୍ବ ଯେତେବେଳେ ତାହାର ସମସ୍ତ ବଳ ପୁରୁଷାର୍ଥ ଶେଷ କରିଦେଲେ, ସେତେବେଳେ ଅନ୍ୟ କେହି ଶରଣ ଦେବା ବ୍ୟକ୍ତି ନ ଥିବା ଜାଣି ସେହି ଅଶରଣର ଶରଣ ଦୟାସାଗର, ଚରାଚର ଜଗତର ଗୁରୁ ପୁରାଣ ପୁରୁଷ ଭଗବାନ ଶ୍ରୀହରିଙ୍କର ଶରଣ ପଶିଲା ।

ଭଗବାନଙ୍କ ଚରଣତଳେ ଦବି ହୋଇଥିବାରୁ ସେ ନିଜେ କିଛି ତ କରି ପାରିଲା ନାହିଁ, ଅନନ୍ତ ବ୍ରହ୍ମାଣ୍ଡ ଯାହାଙ୍କ ଉଦରରେ ପରମାଣୁ ଭଳି ବିରାଜିତ, ତାଙ୍କର ଭାରକୁ ଭଲା କାଳୀୟ କିପରି ଅବା ସହ୍ୟ କରି ପାରନ୍ତା ?ସେ ତ ତାଙ୍କର ଶକ୍ତିରେ, ତାଙ୍କର କୃପାରେ ଏପରି କରିବା ସକାଶେ କିଛିକାଳ ପାଇଁ ସମର୍ଥ ହୋଇ ପାରିଥିଲା । ତାହାର ଶତ ଶତ ପତ୍ନୀ ଷୋଡ଼ଶ ଶୃଙ୍ଗାର ହୋଇ ଏହି ଦୃଶ୍ୟକୁ ଦୂରରେ ରହି ଦର୍ଶନ କରୁଥିଲେ । ସେମାନେ ଯେତେବେଳେ ଦେଖିଲେ ଯେ, ସେମାନଙ୍କର ପତି ଅଚେତ ହୋଇ ପଡ଼ିଛନ୍ତି, ସେତେବେଳେ ଜାଣିଲେ ଏ ଦମନକାରୀ ଅନ୍ୟ କୌଣସି ସାଧାରଣ ପୁରୁଷ ନୁହନ୍ତି । ଏ ତ ସ୍ୱୟଂ ଅଖିଳକୋଟି ବ୍ରହ୍ମାଣ୍ଡନାୟକ ପୁରାଣପୁରୁଷ ନାରାୟଣ । ସେମାନେ କାଳ ବିଳମ୍ବ ନ କରି ଭଗବାନଙ୍କ ନିକଟକୁ ଆସିଲେ । ପତିଙ୍କ ଦୁଃଖ ଦେଖି ସେମାନେ ଅତ୍ୟନ୍ତ ବ୍ୟାକୁଳ ହେଉଥିଲେ । ଅଧିରତା ଓ ଆତୁରତାବଶତଃ ସେମାନଙ୍କର ବହୁ ମୂଲ୍ୟବାନ୍ ବସ୍ତ୍ର, ଦ୍ରବ୍ୟ ଆଭୂଷଣ ତଥା ସୁଗନ୍ଧିତ ପୁଷ୍ପମାଳାଗୁଚ୍ଛିକଦ୍ୱାରା ସୁଶୋଭିତ କେଶପାଶ ଶିଥିଳ ହୋଇ ଯାଇଥିଲା ।

ମନୁଷ୍ୟ ଯେତେ ରାଗିଥାଉ ନା କାହିଁକି, ଯଦି ଦୈନ୍ୟତାପୂର୍ବକ ଅଶ୍ରୁ ବିସର୍ଜନ କରି ସ୍ତ୍ରୀ ସମ୍ମୁଖକୁ ଆସିଯାଏ, ତେବେ ତାହାର କ୍ରୋଧ କର୍ପୂର ସଦୃଶ ଉଡ଼ିଯାଏ । ଯଦି

ତାହାର କୋଳରେ ପୁଷ୍ପପରି କୋମଳ ଶିଶୁ ଥାଆନ୍ତି, ତେବେ ପାଷାଣ ହୃଦୟ ମଧ୍ୟ ତରଳି ନ ଯାଇ ରହିପାରେ ନାହିଁ । "ନାଗପତ୍ନୀଗଣ ଦେଖିଲେ, ଚରାଚର ବିଶ୍ୱର ସ୍ୱାମୀ ଭଗବାନ ବାସୁଦେବ ସେମାନଙ୍କ ସ୍ୱାମୀଙ୍କ ଅପରାଧ କାରଣରୁ ତାଙ୍କ ଉପରେ ଭଗବାନ କ୍ରୋଧ କରି ଅଛନ୍ତି, ତେଣୁ କରୁଣାସାଗରଙ୍କ ହୃଦୟରେ ଆମେ ବିନୟ ଦ୍ୱାରା ସ୍ୱାମୀଙ୍କ ପ୍ରତି କରୁଣା ଉତ୍ପନ୍ନ କରିବା ଉଚିତ୍ତ ।" ଏହା ଚିନ୍ତାକରି ସେମାନେ ପ୍ରତ୍ୟେକ ନିଜ ନିଜର ସାନ ବଡ଼ ପିଲାଙ୍କୁ ଆଗରେ ରଖି ଅତ୍ୟନ୍ତ ଉଦ୍‌ବିଗ୍ନ ଚିତ୍ତରେ ଭଗବାନଙ୍କ ନିକଟକୁ ଗଲେ । ସେଠାକୁ ଯାଇ ସେମାନେ ନିଖିଳଭୂତପତି ଭଗବାନ ବିଶ୍ୱମ୍ଭରଙ୍କ ପାଦପଦ୍ମରେ ଭୂମିରେ ଲୋଟିବାକୁ ଲାଗିଲେ । ପ୍ରଣାମ କଲେ । ଯଦିଓ ସ୍ତ୍ରୀଲୋକମାନଙ୍କର ସାଷ୍ଟାଙ୍ଗ ପ୍ରଣାମ କରିବାର ବିଧାନ ନାହିଁ, ପ୍ରଣାମ କରିବା ସମୟରେ ସେମାନଙ୍କର ସ୍ତନ ଭୂପୃଷ୍ଠକୁ ଯଦି ସ୍ପର୍ଶ କରେ, ତେବେ ଏହା ଦୋଷ ବୋଲି ଧରାଯାଏ, କିନ୍ତୁ ଅଧୀରତା ଓ ଆତୁରତା ଯୋଗୁଁ ସେମାନେ ଏହି ନିୟମକୁ ଭୁଲି ଯାଇଥିଲେ । ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇଥିବାରୁ ନିଜ ନିଜର ଅତି ତୁଚ୍ଛତା ପ୍ରତିପାଦନ କରିବା ପାଇଁ ତଥା ଭଗବାନଙ୍କ ହୃଦୟରେ ଦୟା ପ୍ରତି କରୁଣା ଉତ୍ପନ୍ନ କରିବାପାଇଁ ସେମାନେ ଅଭ୍ରମରେ ସହସା ଏ ପ୍ରକାର ଆଚରଣ କରିଥିଲେ । ସାଷ୍ଟାଙ୍ଗ ପ୍ରଣାମ କରିବା ପରେ ସେମାନଙ୍କର ଅପରାଧୀ ପତିଙ୍କ ବନ୍ଧନମୁକ୍ତ କରିବା ଇଚ୍ଛାରେ ସେମାନେ ଶ୍ରୀହରିଙ୍କ ସମ୍ମୁଖରେ କୃତାଞ୍ଜଳିପୁଟରେ ପ୍ରାର୍ଥନା କଲେ । ଶରଣାଗତବତ୍ସଳ ଶ୍ୟାମସୁନ୍ଦରଙ୍କର ଶରଣାଗତିକୁ ସ୍ୱୀକାର କରି ସେମାନେ ଦୀନତା ପୂର୍ବକ ଶୋକଗଦ୍‌ଗଦ କଣ୍ଠରେ ସ୍ତୁତି କରିବାକୁ ଲାଗିଲେ ।

ସୂତ କହୁଛନ୍ତି—"ମୁନିଗଣ ! ସେହି ନାଗପତ୍ନୀଗଣ ଭଗବାନଙ୍କୁ ଯେଉଁ ଦିବ୍ୟ ସ୍ତୋତ୍ରରେ ସ୍ତୁତି କରିଥିଲେ, ସେଥିରୁ ସେମାନଙ୍କର ଅଗାଧ ଜ୍ଞାନ ଥିବାର ପ୍ରକାଶ ପାଇଥିଲା । ସେହି ସ୍ତୁତି ସମଗ୍ର ବେଦଶାସ୍ତ୍ରର ସାର ଥିଲା । ସେଥିରୁ ପ୍ରତୀତ ହେଉଥିଲା, ସେହିସବୁ ନାଗପତ୍ନୀମାନେ ପରମବିଦୁଷୀ ଅଟନ୍ତି । ସେହି ସ୍ତୁତିର ଗୋଟିଏ ଗୋଟିଏ ଅକ୍ଷରରେ ଅଗାଧ ଜ୍ଞାନ ଭରି ରହିଥିଲା । ସେହି ସ୍ତୋତ୍ରକୁ ମୁଁ ପ୍ରସଙ୍ଗକ୍ରମେ ସ୍ତୁତି ପ୍ରକରଣରେ କହିବି । ସେମାନଙ୍କ ସ୍ତୁତି ଅତ୍ୟନ୍ତ ବଡ଼ । ସ୍ତୁତିର ଅନ୍ତରେ ସେମାନେ କହିଥିଲେ—"ହେ ପ୍ରତ୍ୟେକଙ୍କର ଆଶ୍ରୟଦାତା ଭଗବାନ୍ ! ଆମେ ଅବଳାଗଣ ଆପଣଙ୍କ ଶରଣାଗତ ହେଉଛୁ । ଆପଣଙ୍କ ଦ୍ୱାର ଦେଶରେ ଭିକ୍ଷା ମାଗୁଅଛୁ । ଆପଣ ଆମ୍ଭମାନଙ୍କୁ ଖୁସିରେ ଭିକ୍ଷା ଦିଅନ୍ତୁ । ଆମ ସିନ୍ଦୂର ଆମର ଆବଶ୍ୟକ । ସ୍ତ୍ରୀମାନେ ସଦା ସର୍ବଦା ସାଧୁ ପୁରୁଷଙ୍କର ଦୟାର ପାତ୍ର ବୋଲି ସ୍ୱୀକାର କରାଯାଏ । ସଜ୍ଜନ ପୁରୁଷ ସ୍ତ୍ରୀଲୋକମାନଙ୍କୁ କେବେହେଲେ ଅପମାନିତ କରନ୍ତି ନାହିଁ । ସେମାନଙ୍କର ଯେତେ ଅପରାଧ ହୋଇଥାଉ, ତାହା କ୍ଷମା କରି ଥାଆନ୍ତି । ଆମ୍ଭମାନଙ୍କର ପ୍ରାଣ ତ ପତି, ପତିଙ୍କ ବିନା ଆମେ ପତିବ୍ରତାଗଣ କପରି ଜୀବନ ଧାରଣ କରିବୁ ? ଏଣୁ ଆମ୍ଭମାନଙ୍କର ପ୍ରାଣସ୍ୱରୂପ ପତିଙ୍କୁ ଆପଣ ପ୍ରସନ୍ନତାପୂର୍ବକ ଆମ୍ଭମାନଙ୍କୁ

ପ୍ରଦାନ କରନ୍ତୁ । ଏବେ ସେ ଅନେକ ଦଣ୍ଡ ଭୋଗ କଲେଣି । ଆପଣ ତାଙ୍କୁ ଆଉ ଅଧିକ ଦଣ୍ଡ ଦିଅନ୍ତୁ ନାହିଁ ।

ନାଗପତ୍ନୀଗଣଙ୍କର ଏ ପ୍ରକାର ପ୍ରାର୍ଥନା ଶୁଣି ଭଗବାନ ପାଦପ୍ରହାର କରି ଚେତନା-ଶୂନ୍ୟ କରିଥିବା କାଳୀୟକୁ ଛାଡ଼ିଦେଲେ । ତାହାପରେ ଧୀରେ ଧୀରେ କାଳୀୟର ପ୍ରାଣ ସଞ୍ଚାର ହେଲା, ସେ ସାମାନ୍ୟ ଚେତନା ପାଇ ଅତ୍ୟନ୍ତ ଦୈନ୍ୟ ହୋଇ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲା ।

ଶୌନକ ପଚାରିଲେ—"ହେ ସୂତ ! କ୍ରନ୍ଦନ କରୁଥିବା ସ୍ନେହି ବ୍ରଜବାସୀଗଣଙ୍କର ତାହାପରେ କ'ଣ ହେଲା ?"

ସୂତ କହିଲେ—"ଯାହା ତ ହେବାକୁ ଥିଲା ତାହା ହୋଇଗଲା । ଏବେ ଯାହା ଘଟିଲା, ସେ କଥା ମୁଁ ଆପଣମାନଙ୍କୁ ଆଗକୁ କହିବି । ସେମାନେ ଯେପରି ପ୍ରସନ୍ନ ହୋଇଥିଲେ ଓ କାଳୀୟ ବ୍ରଜର କିପରି ବିତାଡ଼ିତ ହୋଇଥିଲା, ସେ ବିଷୟ ମୁଁ ଆପଣ-ମାନଙ୍କୁ ଏବେ କହୁଅଛି, ଆପଣମାନେ ସାବଧାନ ହୋଇ ସେହି ସୁଖଦ ପ୍ରସଙ୍ଗ ଶ୍ରବଣ କରନ୍ତୁ ।"

## ଛପ୍ପୟ

ବହୁତ ମୁଖନତେ ଗକ୍ତ ଭୟୋ କାଳୀୟ ମୂର୍ଚ୍ଛିତ ତବ ।
ଛିନ୍ନ ଭିନ୍ନ ହ୍ୱୈ ଗୟେ ନାଗଫଣ ଛତ୍ର ରୂପ ସବ ॥
ଅନତ ଶରନ ନହିଁ ନରଖି ଶରନ ହରିକୀ ଅହି ଆୟୋ ।
ଅଖିଲ ଭୁବନପତ ପାଦପଦ୍ମମହଁ ଶିର ଲଗାୟୋ ॥
ପତ୍ନୀ ସବରୀ ନଗକୀ ଅଇଁ ପତକୁଁ ବିକଲ ଲଖି ।
ଶିଶୁ ସମ୍ମୁଖ କରି ନୟନ ଭରି, ଶ୍ରୀହରିତେଁ ବୋଲି ବଲଖି ॥



# କାଳୀୟନାଗର ବ୍ରଜରୁ ବିତାଡ଼ନ

ସକଳତ୍ରସୁହୃତ୍ପୁତ୍ରୋ ଦ୍ୱୀପମବ୍ଧେର୍ଜଗାମହ ।
ତଦୈବ ସାମୃତଜଳା ଯମୁନା ନିର୍ବିଷାଭବତ୍ ।
ଅନୁଗ୍ରହାଦ୍ ଭଗବତଃ କ୍ରୀଡାମାନୁଷରୂପିଣଃ ।।
(ଶ୍ରୀ ଭା ୧୦ ସ୍କ, ୧୬ ଅ, ୬୭ଶ୍ଳୋକ)

### ଛପ୍ପୟ

ହମ ସବକେ ପଞ୍ଚ ପ୍ରାନ ପ୍ରାଣପଞ୍ଚ ଭିକ୍ଷା ଦୀଜୈ ।
ଦେହୁଁ ଅବଙ୍ଗ ଭୟଭୀତ ଅଭୟ ଅଖିଳେଶ୍ୱର କୀଜୈ ।।
ନାଗ ବଧୂନକୀ ବିନୟ କରୁନ ସ୍ୱର ମୁରଲୀଧର ମୂନ ।
କରେ୍ୟା ନ ପାଦପ୍ରହାର ଫନନପେ ନଟନାଗର ପ୍ରଭୁ ।।
ନାଗ ତଜେ୍ୟା ତବ ସୋ କହେ, ନାଥ! ତୁମହୁଁ ସବ କଛୁ କରେ ।
ତୁମ ହୀ ଡାରେ ଜଗତମହଁ, ଜୀବ ବିପତ୍ତି ତୁମହୀ ହରେ ।।

ଯାହାର ସଂସ୍କୃତି ପୃଥକ୍, ଏପରି ବିଦେଶୀ ଆର୍ଯ୍ୟଭୂମିକୁ ଆସି ସେ ସ୍ଥାନର ଅନ୍ନଜଳ କେବଳ ଦୂଷିତ କରନ୍ତି ନାହିଁ, ସେ ସ୍ଥାନର ବାୟୁମଣ୍ଡଳକୁ ମଧ୍ୟ ବିଷାକ୍ତ କରି ଦିଅନ୍ତି । ସେ ସ୍ଥାନର ସମାଜରେ ସଙ୍କରତା ଦୋଷ ମଧ୍ୟ ଉତ୍ପନ୍ନ କରିଦିଅନ୍ତି । ତେଣୁ ପୃଥକ୍ ସଂସ୍କୃତିବିଶିଷ୍ଟ ବ୍ୟକ୍ତିଙ୍କୁ ଯଦି ଦେଶରେ ରଖିବାର ଆବଶ୍ୟକତା ହୁଏ, ତେବେ ତାଙ୍କୁ ନିଜ ସଂସ୍କୃତିରେ ଜଡ଼ିତ କରିଦେବା ଆବଶ୍ୟକ । ନିଜର ପୃଥକ୍ ଅଧିପତ୍ୟ ସ୍ଥାପନ କରି ସେ ସ୍ଥାନର ବିଶୁଦ୍ଧ ପରମ୍ପରାକୁ ଦୂଷିତ କରିଦେଇଥାଏ । ତେଣୁ ଏପରି ଲୋକଙ୍କୁ ଦେଶରୁ ତଡ଼ିବା ହିଁ ସର୍ବଶ୍ରେଷ୍ଠ ଉପାୟ । ତାଙ୍କୁ ଦମନ କରିବାର ଉପାୟ ହେଉଛି, ତା' ଦେଶକୁ ତାଙ୍କୁ ଲେଉଟାଇ ଦେବା । ଏପରି ବିଷୋଦ୍ଗାର କରୁଥିବା ବ୍ୟକ୍ତି ବାୟୁମଣ୍ଡଳରେ ବିଦ୍ୱେଷ ତଥା ବିଗ୍ରହର ବୀଜ ବପନ କରି ବିଦ୍ରୋହ ଆରମ୍ଭ କରି ଦେଇଥାଏ । ଦୁଷ୍ଟ ଦଳନକାରୀ ଶ୍ରୀହରି ତା' ଶିର ଉପରେ ପାଦ ରଖି ତାଙ୍କୁ ଦେଶରୁ ବିତାଡ଼ିତ କରି ଦିଅନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ନାଗପତ୍ନୀଗଣ ଯେତେବେଳେ ନିଜ ପତିଙ୍କର ପ୍ରାଣଭିକ୍ଷା କଲେ, ସେତେବେଳେ ଭଗବାନ ଶ୍ରୀକୃଷ୍ଣ ତାକୁ ଛାଡ଼ିଦେଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଉଥିଲା । ଭଗବାନ ତାକୁ ଦଳି ଦେଇଥିଲେ । ତାହାର ଅଙ୍ଗ ପ୍ରତ୍ୟଙ୍ଗକୁ ମୋଡ଼ିମାଡ଼ି ପକାଇଥିଲେ । କିଛି ସମୟ ପରେ ସେ ଚେତନାପ୍ରାପ୍ତ ହେଲା । ସେ ନିଜ ସମ୍ମୁଖରେ ସଜଳ ଜଳଧର ସମାନ ଶ୍ରୀ ଶ୍ୟାମସୁନ୍ଦରଙ୍କୁ ଦେଖିଲା । ସେତେବେଳେ ସେ ଦୀର୍ଘନିଃଶ୍ୱାସ ପକାଇ ଅତି କଷ୍ଟରେ ଦୈନ୍ୟବାଣୀରେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ କହିବାକୁ ଲାଗିଲା—"ପ୍ରଭୋ ! ମୁଁ ଜାଣିଶୁଣି ଅପରାଧ କରିନାହିଁ ।"

ଭଗବାନ କହିଲେ—"ଆରେ ଖଳ ! ଏଥିରେ ତୋର କେଉଁ ବଡ଼ ଅପରାଧଟା ହୋଇଗଲା ? ତୁ ନିଜ ବିଷରେ ଯମୁନା ଜଳକୁ ପୂର୍ଣ୍ଣରୂପେ ଦୂଷିତ କରି ରଖିଥିଲୁ ।"

କାଳୀୟ କହିଲା—"ଭଗବାନ ! ଏ ସୃଷ୍ଟି ହେଉଛି ତ୍ରିଗୁଣାତ୍ମିକା । କେହି ସ୍ୱଭାବରେ ସାତ୍ତ୍ୱିକ ତ, କେହି ରାଜସିକ ଏବଂ କେହି ତାମସିକ । ଜୀବ ଜନ୍ତୁ ଜଗତରେ ସର୍ପଜାତି ଅତ୍ୟନ୍ତ କ୍ରୂର । ଏହା ତା'ର ଜନ୍ମଗତ ସ୍ୱଭାବ । ସେ ତମୋଗୁଣୀ ଓ ମହାକ୍ରୋଧୀ । ତେଣୁ ଆମେ ଯେଉଁଠାରେ ରହୁ, ସେଠାରେ ଦୁଷ୍ଟତା ହିଁ ଆଚରଣ କରୁ ।"

ଭଗବାନ କହିଲେ—"ଯଦି ତୁ ଏହା ଜାଣୁ, ତେବେ ତୋର ତମୋଗୁଣୀ ସ୍ୱଭାବକୁ ବଦଳା ।"

କାଳୀୟ କହିଲା—"ଭଗବନ୍ ! କେବଳ ଜାଣିଲେ ସ୍ୱଭାବ ବଦଳିପାରେ ନାହିଁ । ଜୀବମାନଙ୍କର ଦୁଃଖରେ ସୁଖ, ଅନିତ୍ୟରେ ନିତ୍ୟର ମିଥ୍ୟା ଅଭିନିବେଶ ହୋଇଯାଇଛି । ଅନାତ୍ମରେ ଯେଉଁ ଆତ୍ମପ୍ରତୀତି ହେଉଛି, ତାକୁ ଛାଡ଼ିବା ଯେପରି କଷ୍ଟ, ସେହିପରି ପ୍ରତ୍ୟେକ ଜୀବଙ୍କ ପାଇଁ ନିଜର ସ୍ୱଭାବତ୍ୟାଗ ଅତ୍ୟନ୍ତ କଷ୍ଟସାଧ୍ୟ । ମନୀଷିଗଣ ସ୍ୱଭାବକୁ ଦୁରତିକ୍ରମ ବୋଲି କହିଅଛନ୍ତି । ନିଜ ନିଜ ସ୍ୱଭାବରେ ସମସ୍ତେ ବିବଶ । ଯଦି ମୋର ଅପରାଧ କ୍ଷମା କରିବେ, ହେ ପ୍ରଭୁ ! ମୁଁ ଆପଣଙ୍କୁ ଆଉ ଗୋଟିଏ କଥା କହିବି ।"

ଭଗବାନ କହିଲେ—"ହଁ, ତେବେ କ'ଣ କହିବାକୁ ଚାହୁଁଚୁ କହ ?"

କାଳୀୟନାଗ କହିଲା—"ଦୀନବନ୍ଧୋ ! ମୁଁ ଏତିକି ନିବେଦନ କରୁଛି ଯେ, ଆପଣ ତ ନିଜେ ସମସ୍ତଙ୍କ ସ୍ୱଭାବର ସ୍ରଷ୍ଟା । ଆପଣ ସ୍ୱୟଂ ଏହି ତ୍ରିଗୁଣାତ୍ମକ ଜଗତକୁ ସୃଷ୍ଟି କରି ଅଛନ୍ତି । ସମସ୍ତଙ୍କର ସ୍ୱଭାବକୁ ଆପଣ ଭିନ୍ନ ଭିନ୍ନ ପ୍ରକାର ଗଢ଼ିଛନ୍ତି । ସମସ୍ତଙ୍କ ବଳବୀର୍ଯ୍ୟ ବି ପୃଥକ୍ ପୃଥକ୍ । ଆପଣ ଯଦିଓ ହାତୀ ଏବଂ କ୍ଷୁଦ୍ର ପିମ୍ପୁଡ଼ି ମଧ୍ୟରେ ସମାନ ଭାବରେ ସ୍ଥିତ, ତଥାପି ପିମ୍ପୁଡ଼ି ଓ ହାତୀଙ୍କ ବଳବୀର୍ଯ୍ୟରେ ଅନ୍ତର ରହିଛି । ସେହିପରି ଆପଣ ନାନା ଯୋନି ସୃଷ୍ଟି କରି ଅଛନ୍ତି । ସମସ୍ତଙ୍କର ଜନ୍ମ ପୃଥକ୍ ପୃଥକ୍, ସମସ୍ତଙ୍କ

ଆକାର ପୃଥକ୍ ପୃଥକ୍ । ସମସ୍ତଙ୍କ ଚରିତ୍ରବୃତ୍ତି ଭିନ୍ନ ଭିନ୍ନ । ଏହି ପୃଥକତାକୁ ଆପଣ ହିଁ ରଚନା କରିଅଛନ୍ତି । ଆମ ସର୍ପଜାତିକୁ ଆପଣ ହିଁ କ୍ରୋଧୀ କରିଅଛନ୍ତି । ପୁନଶ୍ଚ ଆମେ ମାୟାମୋହିତ ଜୀବ ଆପଣଙ୍କ ଦୁସ୍ତ୍ୟଜ୍ୟ ମାୟାକୁ ଆପଣଙ୍କ କୃପା ବିନା କିଏ ଅବା କିପରି ଛାଡ଼ିପାରିବ ? ଆପଣଙ୍କୁ କିଛି କହିବା, ସୂର୍ଯ୍ୟଙ୍କ ଆଗରେ ଦୀପ ଦେଖାଇବା ସହିତ ସମାନ । ଆପଣ ତ ସର୍ବଜ୍ଞ ଅଟନ୍ତି । ଏହି ନିଖିଳ ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ଅଧୀଶ୍ୱର ହିଁ ଆପଣ । ଆମେ ତ ଆପଣଙ୍କ ମାୟାରେ ହିଁ ସମସ୍ତ ଚେଷ୍ଟା କରିଥାଉଁ । ସେଥିରେ ଆପଣ ହିଁ ବାନ୍ଧିରଖି ଅଛନ୍ତି ଓ ଆପଣ ହିଁ ମୁକ୍ତିଦାତା । ମୋ ଦୁଷ୍କାମୀ ପାଇଁ ଆପଣ ମୋତେ ଚାହିଁଲେ ଦଣ୍ଡ ଦେଇପାରନ୍ତି କିମ୍ବା କ୍ଷମା କରିପାରନ୍ତି । ଆପଣ ନିଗ୍ରହ ଅନୁଗ୍ରହ ସବୁକିଛି କରିବାରେ ସମର୍ଥ । ଆପଣଙ୍କର ଶରଣାଗତ ହେଲେ ଜୀବ ଆଉ ଦୁର୍ଗତି ଭୋଗ କରେନାହିଁ । ଏହା ତ ନିଶ୍ଚିତ ସିଦ୍ଧାନ୍ତ ।"

ସୂତ କହୁଛନ୍ତି—"ମୁନିଗଣ ! କାଳୀୟର ଏପରି ଯୁକ୍ତିଯୁକ୍ତ ବଚନ ଶୁଣି ଶ୍ୟାମସୁନ୍ଦର ହସି ହସି କହିଲେ, "ଦେଖ ଭାଇ କାଳୀୟ ! ମୁଁ ତୋତେ ମାରିବାକୁ ଚାହୁଁ ନାହିଁ ; କିନ୍ତୁ ମୋର ଗୋଟିଏ କଥା ତୋତେ ମାନିବାକୁ ପଡ଼ିବ ।"

କାଳୀୟ ଦୀନତା ସ୍ୱରରେ କହିଲା—"ପ୍ରଭୋ ! ଆଜ୍ଞା କରନ୍ତୁ । ବର୍ତ୍ତମାନ ଆପଣଙ୍କ କୃପାରୁ, ଆପଣଙ୍କ ପାଦପଦ୍ମର ପ୍ରହାରରୁ ମୋର ଗର୍ବ ଚୂର୍ଣ୍ଣ ହୋଇ ଯାଇଛି, ଆପଣଙ୍କ ଆଦେଶ ପାଳନ କରିବା ମୋର ବର୍ତ୍ତମାନ ପ୍ରଧାନ କର୍ତ୍ତବ୍ୟ ।"

ଭଗବାନ କହିଲେ—"ଦେଖ୍ ନାଗରାଜ ! ଏହି ବୃନ୍ଦାବନ ପବିତ୍ର ଭୂମି । ଏଠାରେ ତୁ ସ୍ତ୍ରୀ, ପୁତ୍ର ଓ ବନ୍ଧୁ ବାନ୍ଧବଙ୍କ ସହିତ ବାସ କରିବା ଉଚିତ୍ ନୁହେଁ । ତୁ ବିଷାକ୍ତ ଓ କ୍ରୋଧ ସ୍ୱଭାବ ବିଶିଷ୍ଟ । ତୁ ଏଠାରେ ରହିବା ଦ୍ୱାରା ଏ ସ୍ଥାନ ବାୟୁମଣ୍ଡଳ ଦୂଷିତ ଓ ବିଷାକ୍ତ ହେଉଅଛି । ତୁ ସମୁଦ୍ର ମଝିରେ ଥିବା କୌଣସି ସ୍ଥାନରେ ରହିବା ଜୀବ । ତେଣୁ ତୁ ତୋର ପିଲା କୁଟୁମ୍ବ ଓ ବନ୍ଧୁ ବାନ୍ଧବଙ୍କ ସହିତ ନିଜ ଦ୍ୱୀପକୁ ଚାଲି ଯା' । ହଁ, ତୋତେ ଗୋଟାଏ ପ୍ରତିଜ୍ଞା କରିବାକୁ ହେବ ।"

କାଳୀୟ କହିଲା—"ହଁ ପ୍ରଭୋ ! ଆଜ୍ଞା କରନ୍ତୁ, ତାହା ବି ପାଳନ କରିବି ।"

ଭଗବାନ୍ କହିଲେ—"ଦେଖ୍, ମୋର ତୋ ସହିତ ଏହିଲୀଳା କଥା ପ୍ରସଙ୍ଗକୁ ଯେଉଁ ବ୍ୟକ୍ତି ଶ୍ରଦ୍ଧା ଓ ଭକ୍ତି ସହିତ ଶ୍ରବଣ କରିବେ, ସେମାନେ କେବଳ ତୋତେ ନୁହେଁ, ତୋର ସମସ୍ତ ନାଗ ଜାତିକୁ ସେମାନେ ଭୟ କରିବେ ନାହିଁ, କେହିହେଲେ ସେମାନଙ୍କୁ ଦଂଶନ କରିବେ ନାହିଁ ।"

କାଳୀୟ କହିଲା—"ତେବେ ଠିକ୍ ଅଛି ପ୍ରଭୋ ! କାଳୀୟ ଦମନ ଲୀଳାଠାରୁ ଆରମ୍ଭକରି କାଳୀୟର ନିଷ୍କାସନ ଲୀଳାପ୍ରସଙ୍ଗ ପର୍ଯ୍ୟନ୍ତ ଯେଉଁ ବ୍ୟକ୍ତି ସମସ୍ତ ସମୟରେ

ଶ୍ରଦ୍ଧାର ସହିତ ପଢ଼ିବେ ଓ ଶୁଣିବେ, ସେହି ବ୍ୟକ୍ତି ଆମ ଜାତିକୁ କୌଣସି ପ୍ରକାର ଭୟ କରିବେ ନାହିଁ ।"

ଭଗବାନ କହିଲେ—"ମୁଁ ନିଜ ତରଫରୁ ଗୋଟିଏ ବର ଦେଇ କହୁଛି ଯେ, ମୋର ଏହି କ୍ରୀଡ଼ାସ୍ଥଳ କାଳୀୟ ହ୍ରଦକୁ ଆସି ଯେଉଁ ବ୍ୟକ୍ତି ସ୍ନାନ, ଧ୍ୟାନ, ପୂଜନ କରି ଦେବତା ପିତୃ ତଥା ଋଷିମାନଙ୍କୁ ତର୍ପଣ କରିବେ, ଉପବାସ କରି ମୋର ଧ୍ୟାନ ଓ ପୂଜନ କରିବେ, ସେ ପାପମୁକ୍ତ ହୋଇଯିବେ । ଏବେ ତୁ ତୋର ସ୍ତ୍ରୀ ପୁତ୍ର ଓ ଜାତି କୁଟୁମ୍ବଙ୍କୁ ସଙ୍ଗରେ ନେଇ ସମୁଦ୍ର ମଧ୍ୟସ୍ଥ ନିଜ ଟାପୁକୁ ଚାଲିଯା' ।"

କାଳୀୟ ନିଡର ହୋଇ କହିଲା—"ଭଗବନ୍ ! ମୁଁ ମୋ' ନିଜ ଦେଶକୁ ଫେରିଯିବାରେ କୌଣସି ଆପତ୍ତି ନାହିଁ, କିନ୍ତୁ ଗରୁଡ଼ଙ୍କ ସହିତ ମୋର ଦ୍ୱେଷ ହୋଇ ଯାଇଛି । ମୁଁ ସେଠାକୁ ଯିବାମାତ୍ରେ ସେ ମୋତେ ପ୍ରହାର କରିବେ, ମୋର ବନ୍ଧୁ ବାନ୍ଧବ ତଥା ପରିବାରବର୍ଗଙ୍କୁ କ୍ଳେଶ ଦେବେ ।"

ଭଗବାନ ପ୍ରସନ୍ନ ହୋଇ କହିଲେ—"ତୁ ଯେଉଁ ଗରୁଡ଼ଙ୍କ ଭୟରେ ନିଜ ଦେଶ ଛାଡ଼ି ଆସିଥିଲୁ ଏବେ ତୁ ଆଉ ତାଙ୍କୁ ଭୟ କରିବୁ ନାହିଁ । ମୋର ଚରଣ ଚିହ୍ନରେ ଚିହ୍ନିତ ତୋ ଫଣାକୁ ଦେଖି ଗରୁଡ଼ ତୋତେ ଦେଖିବାମାତ୍ରେ ପଳାଇ ଯିବେ । ସେ ତୋତେ ଭକ୍ଷଣ କରିବେ ନାହିଁ ।"

ଭଗବାନ କାଳୀୟ ନାଗକୁ ଜୟ କରିଥିଲେ । ସେ ବିଜୟୀ ଥିଲେ । ଅନ୍ୟଲୋକ ତାଙ୍କ ଘରକୁ ଆସିଥିଲେ, ତେଣୁ ସର୍ବଶ୍ରେଷ୍ଠ ଅତିଥି ଥିଲେ । ଏଥିପାଇଁ ନିଜର ପତ୍ନୀ ଓ ପୁତ୍ରଙ୍କ ସହିତ କାଳୀୟ ପ୍ରସନ୍ନତା ପୂର୍ବକ ଶାସ୍ତ୍ରୀୟ ବିଧାନରେ ଭଗବାନଙ୍କର ପୂଜାର୍ଚ୍ଚନା କଲା । ନାଗଙ୍କ ପାଖରେ ବଡ଼ ବଡ଼ ବହୁମୂଲ୍ୟ ମଣି ଥାଏ । ଭଲ ଭଲ ଆଭୂଷଣ ଥାଏ । ଦେବତାମାନଙ୍କ ବସ୍ତ୍ର, ଆଭୂଷଣ, ମାଳା ଓ ଦିବ୍ୟଗନ୍ଧମୟ ଚନ୍ଦନାଦି ଲେପ ସେମାନଙ୍କ ନିକଟରେ ଥାଏ । ନାଗ ଏ ସମସ୍ତ ବସ୍ତୁ ଉପହାର ସ୍ୱରୂପ ଭଗବାନଙ୍କୁ ପ୍ରଦାନ କଲା । ଭଗବାନଙ୍କୁ ରେଶମୀ ବସ୍ତ୍ର ପିନ୍ଧାଇଲା, ମଣି ମୁକ୍ତାଯୁକ୍ତ ଆଭୂଷଣ ପିନ୍ଧାଇଲା ଓ ମହାମୂଲ୍ୟବାନ୍ ମଣିର ମନୋହର ମାଳମାନ ପିନ୍ଧାଇଲା । ପଦ୍ମଫୁଲ ଓ ପଦ୍ମଫୁଲର ମାଳାରେ ତାଙ୍କର ପୂଜାର୍ଚ୍ଚନା କଲା ।

କାଳୀୟଦ୍ୱାରା ଅନୁଷ୍ଠିତ ପୂଜାର୍ଚ୍ଚନାକୁ ଭଗବାନ ବିଧିପୂର୍ବକ ସ୍ୱୀକାର କରି କାଳୀୟକୁ କହିଲେ—"ଏବେ ତୁମେ ସବୁ ଆନନ୍ଦରେ ଏଠାରୁ ବିଦାୟ ନିଅ ।"

ସୂତ କହୁଛନ୍ତି—"ମୁନିଗଣ ! ଭଗବାନଙ୍କର ଆଜ୍ଞାପାଇ କାଳୀୟନାଗ ନିଜର ବନ୍ଧୁ ବାନ୍ଧବ, ସ୍ତ୍ରୀ ପୁତ୍ରଙ୍କ ସହିତ ଭଗବାନଙ୍କୁ ପରିକ୍ରମା କରି ଯମୁନା କୂଳେ କୂଳେ

ରମଣକଦ୍ୱୀପକୁ ଗ୍ଭଲିଗଲା । ସେହି ମାର୍ଗରେ ଯିବାବେଳେ ସେ ପ୍ରୟାଗ ତୀର୍ଥରେ କଛି ଦିନ ରହିଥିଲା । ଏପର୍ଯ୍ୟନ୍ତ ବଳୁଆଘାଟ ସମ୍ମୁଖରେ ଯମୁନା ନଦୀ ତଟରେ କାଳୀୟହ୍ରଦ ତୀର୍ଥ ବିଖ୍ୟାତ ହୋଇ ଅଛି ଓ ତା' ନାମ ଅନୁସାରେ "ଅହିୟାପୁର" ନାମକ ମହଲ୍ଲା ବି ପ୍ରୟାଗ ତୀର୍ଥରେ ବିଦ୍ୟମାନ ଅଛି ।"

ଭଗବାନ ଶ୍ରୀକୃଷ୍ଣ ଏହି ପ୍ରକାର ସେହି ଦୁଷ୍ଟ ସର୍ପକୁ ଯମୁନା ନଦୀ ନିକଟସ୍ଥ କାଳୀୟ ହ୍ରଦରୁ ତଡ଼ିଥିଲେ । ତେଣୁ ଦିନଠାରୁ ଗାଈ, ବାଛୁରି ଓ ଗୋପାଳଗଣ ନିର୍ଭୟରେ ସେହି ହ୍ରଦର ଜଳ ପାନ କରି ଆସୁଛନ୍ତି । କାଳୀୟନାଗ ବିତାଡ଼ିତ ହେବାରୁ ସମସ୍ତ ବ୍ରଜବାସୀ ଅତ୍ୟନ୍ତ ଆନନ୍ଦିତ ହେଲେ । କାଳୀୟକୁ ହ୍ରଦରୁ ତଡ଼ି ଏବେ ଭଗବାନ ଅତି ଆନନ୍ଦରେ କାଳୀୟ ହ୍ରଦରୁ ସଜବାଜ ହୋଇ ବାହାରି ଆସିଲେ । ତାଙ୍କୁ ଦେଖି ବ୍ରଜବାସୀଗଣ ଯେଉଁଭଳି ଆନନ୍ଦ ପ୍ରକାଶ କରିଥିଲେ, ତାହାର ବିସ୍ତର୍ଣ୍ଣନ ପରବର୍ତ୍ତୀ ଅଧ୍ୟାୟରେ କରାଯିବ ।

### ଛପ୍ପୟ

ସୁନ ବୋଲେ ଘନଶ୍ୟାମ-ଯହାଁତେଂ ଅହି ତୁମ ଜାଓ ।
ଅବ ସ୍ୱଦେଶମହିଁ ରହୋ ସଦାପ୍ରେମରେ ଗୁନ ଗାଓ ॥
ମମ ପଦ ଅଙ୍କିତ ଶୀଶ ଗରୁଡ଼ ଲଖି ତଂଗ ନହିଁ ଆବେ ।
କାଳୀୟଦହ ମହଁହ୍ନାୟ ସୁକୃତ କରି ନର ସୁଖ ପାବେ ॥
କାଳୀୟଦହ ଅରୁ କୃଷ୍ଣକୋ, ଅତି ପାବନ ସୁଖକର ଚରିତ ।
ରହହିଁ ଅଭୟତେ ଅହିଜନତେଂ, ପଢ଼ହିଁ ସୁନହିଁ ଶ୍ରଦ୍ଧା ସହିତ ॥



## ଶ୍ରୀହରିଙ୍କର ବନ୍ଧୁମାନଙ୍କ ସହିତ ସମ୍ମିଳନ ଓ ଦାବାନଳ ପାନ

ତାଂ ରାତ୍ରିଂ ତତ୍ର ରାଜେନ୍ଦ୍ର କ୍ଷୁତ୍‌ତୃଡ଼୍‌ଭ୍ୟାଂ ଶ୍ରମକର୍ଷିତାଃ ।
ଊଷୁର୍ବ୍ରଜୌକସୋ ଗାବଃ କାଳିନ୍ଦ୍ୟା ଉପକୂଳତଃ ॥

(ଶ୍ରୀ ଭା: ୧୦ ସ୍କ, ୧୭ ଅ, ୨୦ ଶ୍ଳୋକ)

## ଛପ୍ପୟ

ଦିବ୍ୟ ବସ୍ତ୍ର, ମଣି, ମାଲ ପହିରି ହରି ଦମକତେଁ ଜକସେ ।
ମନହୁ ଉଦଧିମହଁ ନୀଲ ସରୋରୁହ ମଣିଯୁତ ବିକସେ ॥
ମୃତକ ଦେହ ଜନୁ ପ୍ରାନ ଲୌଟିକେଂ ଫିରତେଂ ଆୟେ ।
ତେୟାଂ ଉଠି ସବନେ ପ୍ରେମ ସହିତ ହରି ହୃଦୟ ଲଗାୟେ ॥
ଆଲିଙ୍ଗନ ପୁନି-ପୁନି କରେଂ, ଦୟେ ଦାନ ପ୍ରମୁଦିତ ଭୟେ ।
ଭୂଖେ ପ୍ୟାସେ ଗ୍ୱାଲ ଗୌ-ଗ୍ୱା ଦନ ତଟ ନେ ବସି ଗୟେ ॥

ଅନେକ ଦିନର ବିଚ୍ଛେଦ ପରେ ପ୍ରାଣାନ୍ତକ ବିପତ୍ତିରୁ ରକ୍ଷା ପାଇବା ପରେ ଯଦି ନିଜର ପ୍ରିୟଙ୍କ ସହିତ ଭେଟ ହୁଏ, ତେବେ ତାଙ୍କଠାରେ ଅତ୍ୟନ୍ତ ଉତ୍କଣ୍ଠା ତଥା ଉତ୍ସାହ ଦେଖାଯାଇଥାଏ । ସେତେବେଳେ ପ୍ରତ୍ୟେକ ଅଙ୍ଗ ଚାହାନ୍ତି, ଆମେ ତାଙ୍କ ଅଙ୍ଗରେ କପରି ମିଶିଯାଉ । ନେତ୍ର ଚାହାନ୍ତି ଆମେ ତାଙ୍କୁ ନେତ୍ରଭରି ପାନ କରୁଁ, ରସନା ଚାହେଁ ମୁଁ ତାଙ୍କ ସୌନ୍ଦର୍ଯ୍ୟର ସ୍ୱାଦ କିପରି ଆସ୍ୱାଦନ କରି ପକାଏ । ମାତା ପିତାଙ୍କ ପ୍ରେମ ସନ୍ତାନ ପ୍ରତି ଅତ୍ୟଧିକ ହୋଇଥାଏ । ହୃଦୟ କାନ୍ଦେ, ବିୟୋଗରେ ଓ ମିଳନରେ ସର୍ବଦା ସନ୍ତାନ ନିମନ୍ତେ ସେମାନଙ୍କ ନେତ୍ରରୁ ଅଶ୍ରୁ ଝରୁଥାଏ । ସେମାନଙ୍କ ଅନ୍ତର ଏପରି ବ୍ୟାକୁଳିତ ହୁଏ ଯେ, ବିଚ୍ଛେଦରେ ଯେଉଁ ଅଶ୍ରୁ ବିସର୍ଜନ ହୋଇଥାଏ, ତାହା ଶୋକାକୁଳ ଅଶ୍ରୁ; କିନ୍ତୁ ପୁନର୍ମିଳନରେ ଯେଉଁ ଅଶ୍ରୁ ବିସର୍ଜନ ହୁଏ, ତାହା ଆନନ୍ଦାଶ୍ରୁ ତଥା ପ୍ରେମାଶ୍ରୁ । ସନ୍ତାନ କୌଣସି ବଡ଼ ବିପତ୍ତିରୁ ଯଦି ଉଦ୍ଧାର ପାଇଯାଏ, ତେବେ ପିତା ମାତା ଏତେ ଆନନ୍ଦିତ ହୁଅନ୍ତି ଯେ, ସେହି ଆନନ୍ଦରେ ସେମାନେ ଧନରତ୍ନକୁ ତୁଚ୍ଛ ମନେକରନ୍ତି ଓ ସନ୍ତାନର ମଙ୍ଗଳ କାମନାରେ ଦୁଇହାତରେ ତାକୁ ଆଉଁସି ପକାନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! କାଳୀୟ ନାଗକୁ ବ୍ରଜରୁ ବିତାଡ଼ିତ କରି ଏବେ ନଟବର ନିଜେ ହ୍ରଦରୁ ବାହାରି ଆସିଲେ । ସେ ସମୟରେ ତାଙ୍କ ଶ୍ରୀ ଅଙ୍ଗର ତେଜ ପ୍ରଭାବ, କାନ୍ତି, ବିଜୟ ତଥା ଦିବ୍ୟ ବସ୍ତ୍ର ଆଭୂଷଣର ପ୍ରଭାବରେ ଝଲସି ଉଠୁଥାଏ । ନାଗ ଓ ନାଗପତ୍ନୀଗଣଙ୍କ ଦ୍ୱାରା ପୂଜିତ ହୋଇ ତାଙ୍କୁ ସେମାନେ ପ୍ରଦାନ କରିଥିବା ଜାଜ୍ୱଲ୍ୟମାନ ଦିବ୍ୟ ପୀତବସ୍ତ୍ରକୁ ଭଗବାନ ଧାରଣ କରି ଥାଅନ୍ତି । କଣ୍ଠଦେଶରେ ଅତି ମୂଲ୍ୟବାନ୍ ମଣିର ମନୋହର ମାଳାମାନ, ସୁଶୋଭିତ ହେଉଥାଏ । ତାଙ୍କର ସର୍ବାଙ୍ଗ ଦିବ୍ୟଗନ୍ଧ ଚନ୍ଦନରେ ଅନୁଲେପିତ ହୋଇଥାଏ । ସୁବର୍ଣ୍ଣମୟ ଆଭୂଷଣ ଯେଉଁଥିରେ କି, ସ୍ଥାନେ ସ୍ଥାନେ ବହୁମୂଲ୍ୟରତ୍ନ ବିଜଡ଼ିତ, ତାହା ତାଙ୍କ ଶ୍ରୀଅଙ୍ଗରେ ସ୍ଥାନପାଇ ନିଜର ଜ୍ୟୋତି ବିକିରଣ କରୁଥାଏ । ଦିବ୍ୟମଣି ଜ୍ୟୋତିରେ ଦଶଦିଗ ଆଲୋକିତ ହେଉଥାଏ ।

ଭଗବାନଙ୍କୁ କାଳୀୟ ହ୍ରଦରୁ ବାହାରି ଆସିବାର ଦେଖି ମୃତବତ୍ ନିଶ୍ଚେଷ୍ଟ ତଥା ଚେତାଶୂନ୍ୟ ହୋଇ ପଡ଼ିଥିବା ବ୍ରଜବାସୀଗଣ ଓ ଗୋବତ୍ସାଗଣଙ୍କ ଶରୀରରେ ସତେ ଯେପରି ଏକସଙ୍ଗେ ନବଜୀବନର ସଞ୍ଚାର ହୋଇଗଲା । ମୃତ ବ୍ୟକ୍ତିର ଶରୀର ଯେତେବେଳେ ପୁନର୍ଜୀବିତ ହୋଇ ଉଠେ, ସେତେବେଳେ ତାହାର ସମସ୍ତ ଇନ୍ଦ୍ରିୟ ପୂର୍ବଭଳି କର୍ମ ତତ୍ପର ହୋଇ ଉଠନ୍ତି । ସେହିପରି ଶ୍ରୀକୃଷ୍ଣଙ୍କ ଦର୍ଶନରେ ମୂର୍ଚ୍ଛାଭଙ୍ଗ ହେବାରୁ ବ୍ରଜବାସୀଗଣ ସଙ୍ଗେ ସଙ୍ଗେ ଉଠି ଦଣ୍ଡାୟମାନ ହେଲେ । ସମସ୍ତଙ୍କର ନେତ୍ର ଅନନ୍ଦାଶ୍ରୁରେ ଭରିଗଲା । ଏବେ ଭଗବାନ୍ ସେମାନଙ୍କ ନିକଟକୁ ଯେତେବେଳେ ଆସି ନ ଥାନ୍ତି । ସେ ପାଖକୁ ନ ଆସିଥିଲେ ମଧ୍ୟ ସେମାନେ ମନେ ମନେ ତାଙ୍କୁ ଆଲିଙ୍ଗନ କରି ପକାଉ ଥାଆନ୍ତି । ଯଶୋଦା, ରୋହିଣୀ, ନନ୍ଦ ଓ ତାଙ୍କର ସମସ୍ତ ଗୋପମାନଙ୍କର ଆନନ୍ଦ କହିଲେ ନ ସରେ । ତାହା କବିଙ୍କ ପକ୍ଷେ ବର୍ଣ୍ଣନା କରିବା ମଧ୍ୟ ଅସମ୍ଭବ । ଶ୍ରୀକୃଷ୍ଣଙ୍କୁ ପାଇ ବ୍ରଜର ଆବାଳବୃଦ୍ଧ-ବନିତା ସମସ୍ତେ ସଫଳ ମନୋରଥ ହୋଇ ସଚେତ ହୋଇ ଉଠିଲେ । ସେମାନେ ଏପରି ଅନୁଭବ କଲେ, ସତେ ଯେପରି ସେମାନଙ୍କର ସର୍ବସ୍ୱ ସଙ୍ଗେ ସଙ୍ଗେ ମୃତ୍ୟୁ ମୁଖରୁ ଫେରି ଆସିଛନ୍ତି ।

ବଳରାମ ତ ଭଗବାନ କୃଷ୍ଣଙ୍କର ପ୍ରଭାବ ଭଲଭାବେ ଜାଣିଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ, ଯଦି ଗୋଟିଏ ମଶା ସାରା ବିଶ୍ୱକୁ ଗ୍ରାସ କରିଦିଏ, ଯଦି ସମସ୍ତ ସମୁଦ୍ରର ଜଳ ଏକ ପିମ୍ପୁଡ଼ି ଗାତରେ ବିଲୀନ ହୋଇଯାଏ, ଏହା ବରଂ ସମ୍ଭବ ହୋଇପାରେ, ତଥାପି କାଳୀୟନାଗ ବିଶ୍ୱମ୍ଭର ଆମ ବନବିହାରୀର କିଛି ଅନିଷ୍ଟ କରି ପାରିବ ନାହିଁ । ଏଥିପାଇଁ ସେ ହସି ହସି ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ । ସେ ମନ୍ଦ ମନ୍ଦ ହସି ଶ୍ରୀକୃଷ୍ଣଙ୍କ ଆଡ଼କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଲେ । ସତେ ଯେପରି ସେ କହିବାକୁ ଚାହୁଁଥିଲେ ଯେ—"ତୁ କାହିଁକି ଏ ପ୍ରକାର ଅଦ୍ଭୁତ ଲୀଳା ରଚନା କରୁଛୁ ?"

ଏହି ଦୃଶ୍ୟକୁ ଦେଖି ପର୍ବତର ଶୁଷ୍କ ଘାସସବୁ କଅଁଳି ଉଠିଲା । ସତେ ଯେପରି ସ୍ୱୟଂ ଗିରିରାଜ ଗୋବର୍ଦ୍ଧନର ଶରୀର ପ୍ରସନ୍ନତାପୂର୍ବକ ରୋମାଞ୍ଚିତ ହୋଇ ଉଠୁଛି । ଗୋରୁମାନଙ୍କର ଆନନ୍ଦ କହିଲେ ନ ସରେ । ସେମାନେ ନିଜ ନିଜର ସ୍ନେହର ଗୋପାଳଙ୍କୁ ପାଇ କାନଡେରି ତାଙ୍କର ଅପାର ସୌନ୍ଦର୍ଯ୍ୟକୁ ଅପଲକ ନୟନରେ ସତେ ଯେପରି ଦୃଷ୍ଟିପଥରେ ପାନ କରୁଅଛନ୍ତି । ବଳଦ ଓ ଷଣ୍ଢମାନେ ଆନନ୍ଦରେ ହମ୍ବାରଡ଼ି କରୁଥାଆନ୍ତି । ବାଛୁରୀମାନେ ଏଣେତେଣେ ଅନନ୍ଦରେ ଡେଉଁଥାଅନ୍ତି ଓ ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗକୁ ନିରୀକ୍ଷଣ କରୁଥାଆନ୍ତି ।

ଗୋପାଳମାନଙ୍କର ଯେ କୁଳଗୁରୁ, ଯେ କି ସେମାନଙ୍କର ସବୁ ସମୟ ପାଇଁ ସୁଖ ଦୁଃଖର ସାଥୀ, ସେମାନେ ନିଜ ନିଜର ପତ୍ନୀଙ୍କ ସହିତ ଆସି ନନ୍ଦଙ୍କୁ ଆଶୀର୍ବାଦ

କରୁଥାଆନ୍ତି, ଶ୍ରୀକୃଷ୍ଣଙ୍କର ମଙ୍ଗଳ କାମନା କରୁଥାଆନ୍ତି ଓ ଆନନ୍ଦିତ ହୋଇ ନନ୍ଦଙ୍କୁ କହୁଥାଆନ୍ତି—"ବ୍ରଜରାଜ ! ଆଜି ତୁମ ପୁତ୍ରର ସତେ ଯେପରି ପୁନର୍ଜନ୍ମ ହୋଇଛି । ତୁମେ ସତେ ଯେପରି ତାଙ୍କ ପ୍ରଥମ ଜନ୍ମୋତ୍ସବ ପାଳନ କରିଥିଲ, ଆଜି ସେହିପରି ପାଳନ କରୁଛ । ଅତି ଆନନ୍ଦ ଉତ୍ସବରେ ମାତି ଯାଇଛ । ଏବେ ବ୍ରାହ୍ମଣମାନଙ୍କୁ ଦାନ ଦକ୍ଷିଣା ପ୍ରଦାନ କର । ହାଲୁଆ, ମାଲପୁଆ, ମିଷ୍ଟାନ୍ନ ଓ କ୍ଷୀରି ଆଦି ଭୂରିଭୋଜନ ପ୍ରଦାନ କର । ମନ ତ ଏବେ ସମ୍ପୂର୍ଣ୍ଣ ଆନନ୍ଦ ହୋଇ ଯାଇଛି । ସମସ୍ତଙ୍କ ମୁଖ ମଧୁର ହେଉ ।"

ଉଦାରମନା ନନ୍ଦ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ—"ତେବେ ଠିକ୍ ଅଛି । ପୂଜ୍ୟ ବ୍ରାହ୍ମଣଗଣ ! ଆପଣମାନଙ୍କ ଆଶୀର୍ବାଦରୁ ହିଁ ଆଜି ମୋର ଦୁଲାଳର ପ୍ରାଣରକ୍ଷା ହେଲା । ଆପଣମାନେ ଯାହା ଆଦେଶ ଦେବେ, ତାହା ମୁଁ କରିବି । ଆପଣମାନଙ୍କ ଆଶୀର୍ବାଦରୁ ତ ମୋର ଧନ, ଜନ, ଗୋପ, ଲକ୍ଷ୍ମୀ ସବୁ ପରିପୂର୍ଣ୍ଣ । ଏହି ସୁବର୍ଣ୍ଣ ଓ ଗୋ-ସମ୍ପଦର ସଙ୍କଳ୍ପ କରିବା ଆଉ ଆବଶ୍ୟକ ନାହିଁ । ଚାଲନ୍ତୁ ଗୋଷ୍ଠରେ ସମସ୍ତ ବିଧି ବିଧାନ ପୂର୍ବକ ଉତ୍ସବ ପାଳନ କରିବା ।" ଏହା କହି ନନ୍ଦରାଜା ସଙ୍ଗେ ସଙ୍ଗେ ସେଠାରେ ବହୁ ସୁବର୍ଣ୍ଣ ଓ ଗାଈ ବ୍ରାହ୍ମଣମାନଙ୍କୁ ଦାନ କଲେ ।

ସେତେବେଳେ ଯଶୋଦାଙ୍କ ପ୍ରାଣ ସତେ ଯେପରି ସମୁଦ୍ର ଲହରିପରି ଆନନ୍ଦରେ ନାଚି ଉଠୁଥିଲା । ସେ ବାରମ୍ବାର ଶ୍ରୀକୃଷ୍ଣଙ୍କୁ କୋଳକୁ ନେଇ ତାଙ୍କୁ ଆଲିଙ୍ଗନ କରି ଗେଲ କରୁଥିଲେ ଓ ନିଜର କମ୍ପିତ ହସ୍ତରେ ତାଙ୍କର ଶ୍ରୀଅଙ୍ଗକୁ ଆଉଁସି ଦେଉଥିଲେ । ଅନେକ ସମୟ ପର୍ଯ୍ୟନ୍ତ ଏହିପରି ଲୀଳା ଚାଲିଥିଲା । ଇତିମଧ୍ୟରେ ଭୁବନଭାସ୍କର ଭଗବାନ ଅସ୍ତାଚଳ ଚୂଡ଼ାକୁ କେତେବେଳେ ଯେ ସ୍ପର୍ଶ କରି ସାରିଥିଲେ, ସେ କଥା କେହି ଜାଣି ପାରିଲେ ନାହିଁ । ସମସ୍ତେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ଆତ୍ମବିଭୋର ହୋଇ ପଡ଼ିଥିଲେ । ଯେତେବେଳେ ସାମାନ୍ୟ ଚେତନା ଆସିଲା, ସେତେବେଳେ ନିଜ ନିଜ ମଧ୍ୟରେ କୁହାକୋହି ହେଲେ—"ଆରେ ! ଏବେ ତ ରାତ୍ରିକାଳ ଉପସ୍ଥିତ । ଆମେ ସବୁ କିପରି ଘରକୁ ଫେରିବା ? ଆମ୍ଭମାନଙ୍କ ସହିତ ସ୍ତ୍ରୀ ଲୋକମାନେ ଅଛନ୍ତି, ଛୋଟ ଛୋଟ ପିଲା ଅଛନ୍ତି ।"

ନନ୍ଦ କହିଲେ—"ଦେଖ, ଭାଇ ! ଆମେ ନିଜ ନିଜ ଗୋଷ୍ଠଠାରୁ ବହୁ ଦୂରକୁ ଆସିଥାଉଁ । ଗୋରୁମାନେ ଆଜି ମୁହଁରେ ତୃଣଟିଏ ବି ଦେଇନାହାନ୍ତି । ଆମ୍ଭେମାନେ ସମସ୍ତେ ଭୋକିଲା । ତେଣୁ ଆଜି ଗୋଷ୍ଠକୁ ଫେରିଯିବାର ବିଚାର ଛାଡ଼ିଦିଅ । କୌଣସି ପ୍ରକାରେ ଆଜି ରାତିଟା ବନ ମଧ୍ୟରେ ଦୁଃଖେ ସୁଖେ କଟାଇ ଦେଇ କାଲି ପ୍ରାତଃକାଳରେ ବ୍ରଜକୁ ଫେରିଯିବା ।"

ନନ୍ଦଙ୍କର ଏହି ପରାମର୍ଶକୁ ସମସ୍ତେ ଆନନ୍ଦରେ ଅନୁମୋଦନ କଲେ । କାଳୀୟ ହ୍ରଦ ନିକଟସ୍ଥ ଯମୁନା କୂଳରେ ସେଦିନ ସମସ୍ତେ ରାତ୍ରି ଯାପନ କଲେ । ଗ୍ରୀଷ୍ମଋତୁ, ଯମୁନା

କୂଳର ଶୀତଳ ମନ୍ଦ ସୁଗନ୍ଧିତ ବାୟୁ ଅତ୍ୟନ୍ତ ଆରାମଦାୟକ ଥିଲା । ଏହିପରି ଗପସପ କରୁ କରୁ ସେଦିନ ରାତି ଅଧ ହୋଇଗଲା । ନିକଟରେ ଘୋର ଅରଣ୍ୟ, ଶୁଖିଲା ପତ୍ରମାନ ଗ୍ରୀଷ୍ମଋତୁ ହେତୁ ବୃକ୍ଷରୁ ଝଡ଼ୁଥାଏ । ପବନରେ ତାହା ଖଡ଼ଖଡ଼ ଶବ୍ଦ ହେଉଥାଏ । କିଛି ଦୂରରେ ବାଂଶବନ ମଧ୍ୟ ଥିଲା । ଜୋର୍‌ରେ ପବନ ବହୁଥିଲେ ତାହା ପରସ୍ପର ମଧ୍ୟରେ ଘସି ହୋଇ ଚର୍‌ମର୍ ଶବ୍ଦ କରୁଥିଲା । ହଠାତ୍ ଦୁର୍ଯୋଗକୁ ସେଦିନ ବାଂଶଗୁଡ଼ିକର ସଂଘର୍ଷରେ ବନ ମଧ୍ୟରେ ଦାବାନଳ ପ୍ରଜ୍ଜ୍ୱଳିତ ହୋଇ ଉଠିଲା । ଚତୁର୍ଦ୍ଦିଗରୁ ପ୍ରଳୟାଗ୍ନି ସମ ବଡ଼ ବଡ଼ ନିଆଁହୁଳା ବ୍ରଜବାସୀମାନଙ୍କୁ ଜାଳିପୋଡ଼ି ପକାଇବା ପାଇଁ ପବନରେ ସେଠାକୁ ଉଡ଼ି ଆସିଲା । ବହୁତ ଗୋପାଳବାଳକ ମା'ମାନଙ୍କ କୋଳରେ ସେତେବେଳକୁ ଶୋଇଯାଇଥିଲେ । ଅନେକ ଗୋପାଳ ମଧ୍ୟ ଦିନସାରା ପରିଶ୍ରମ କରି ଶୋଇ ଯାଇଥିଲେ । ହଠାତ୍ ଅର୍ଦ୍ଧରାତ୍ରରେ ଏପରି ଅପ୍ରତ୍ୟାଶିତ ବିପତ୍ତି ଆସି ପଡ଼ିଲା । ଏଥିରେ ସମସ୍ତେ ଭୟଭୀତ ହୋଇ ଉଠିପଡ଼ିଲେ । ସେମାନେ ଦେଖିଲେ ଅଗ୍ନି କବଳରୁ ରକ୍ଷା ପାଇବାର ଅନ୍ୟ କୌଣସି ଉପାୟ ନାହିଁ । ଚାରିଆଡ଼ୁ ଅଗ୍ନିଶିଖା ଘେରି ଆସିଲାଣି । ଏବେ ସେମାନେ ସ୍ତ୍ରୀ, ପିଲା ଓ ଗୋରୁ ଗାଈଙ୍କୁ ନେଇ ଯିବେ କୁଆଡ଼େ ? ଯେତେବେଳେ ସେମାନେ କୌଣସି ଉପାୟ ନ ପାଇଲେ, ସେମାନେ ଚିନ୍ତା କରିବାକୁ ଲାଗିଲେ— "ଯେଉଁ କୃଷ୍ଣ, ଅଘାସୁର, ବକାସୁର ଓ ଧେନୁକାସୁର ଆଦି ବଡ଼ ବଡ଼ ଅସୁରଙ୍କଠାରୁ ଆମ୍ଭମାନଙ୍କୁ ରକ୍ଷା କରିଛି ଯେ ଏତେ ବଳଶାଳୀ କାଳୀୟକୁ ଦମନ କରି ଅଳ୍ପ ସମୟ ପୂର୍ବରୁ ଏଠାକୁ ବଡ଼ାଇତ କଲା, ସିଏ କ'ଣ ଆମ୍ଭମାନଙ୍କୁ ଏହି ଭୟଙ୍କର ଦାବାନଳରୁ ରକ୍ଷାକରି ପାରିବ ନାହିଁ ? ଆମେ ନାହିଁକି ତା' ଶରଣ ନ ନେବା ?" ଏହା ଚିନ୍ତାକରି ସେମାନେ ସେହି ମାୟାମନୁଷ୍ୟରୂପଧାରୀ ଅଶରଣର ଶରଣ ଶ୍ୟାମସୁନ୍ଦରଙ୍କ ଶରଣ ପଶିଲେ । ସମସ୍ତେ ତା' ନିକଟକୁ ଯାଇ ଦୁଃଖର ସହିତ ଜଣାଇଲେ—"ହେ କୃଷ୍ଣ ! ତୁହି ହିଁ ଆମ୍ଭମାନଙ୍କ ଭଳି ଅଶରଣର ଶରଣ । ହେ ଅମିତବିକ୍ରମ ! ବଳରାମ ! ତୁ ଯଦି ସ୍ୱୟଂ ତେବେ ଆମ୍ଭମାନଙ୍କୁ ଏ ବିପଦରୁ ରକ୍ଷାକରି ପାରୁ । ତୁମେ ତୁହେଁ ଆମ୍ଭ-ମାନଙ୍କ ମନୁଷ୍ୟ ପ୍ରଭୃତି ହେଉନାହିଁ, ତୁମେ କେବଳ ଆମରି ନୁହଁ, ଏ ଚରାଚର ଜଗତର ମଧ୍ୟ ସ୍ୱାମୀ ! ଦେଖ, ତୁମେ ଆମ୍ଭମାନଙ୍କୁ ଆପଣାର ଲୋକ ବୋଲି ସ୍ୱୀକାର କରିଛ । ତୁମେ ଦୁହେଁ ଥାଉଁ ଥାଉ ଆମ୍ଭମାନଙ୍କ ଉପରେ ଏଭଳି ଘୋର ବିପତ୍ତି ପଡ଼ିବା ଉଚିତ୍ ନୁହେଁ । ତୁମେ ଆମ୍ଭମାନଙ୍କୁ ବହୁ ବଡ଼ ବଡ଼ ବିପତ୍ତିରୁ ରକ୍ଷା କରି ଆସିଛ । ଆଜି ଏ ବିପତ୍ତିରୁ ଆମ୍ଭମାନଙ୍କୁ ରକ୍ଷାକର । ଏ ଭୟଙ୍କର ଦାବାନଳରୁ ଆମ୍ଭମାନଙ୍କୁ ବଞ୍ଚାଅ । ତୁମ ଶ୍ରୀଚରଣ କମଳ ଅକୁତୋ-ଭୟ, ଯେଉଁମାନେ ସେହି ଚରଣକମଳର ଆଶ୍ରୟ ନିଅନ୍ତି, ଏହି ଶ୍ରେଷ୍ଠ ଶ୍ରେଷ୍ଠ ଦୁଃଖକଷ୍ଟକୁ ପଛରେ କଏ, ସେମାନଙ୍କୁ ସଂସାର ଦୁଃଖ ମଧ୍ୟ ସ୍ପର୍ଶକରେ ନାହିଁ । ତେଣୁ ତୁମେ ଆମ୍ଭମାନଙ୍କୁ ଏ ବିପତ୍ତିରୁ ରକ୍ଷାକର ।"

ଆପଣାର ଲୋକ ଗୋପବାଳକ ଓ ଗୋପାଳଗଣଙ୍କର ଏ ପ୍ରକାର ଦୀନ ଓ କାତରବାଣୀ ଶୁଣି ଶ୍ୟାମସୁନ୍ଦର ହସି ହସି କହିଲେ—"ଆରେ ଯାଅ, ଏଠୁ ସବୁ ପଳାଅ ! ଏ ସାମାନ୍ୟ କଥାକୁ ତୁମ୍ଭମାନଙ୍କର ଏତେ ଡର । ଆଚ୍ଛା, ତୁମ୍ଭେମାନେ ସମସ୍ତେ ଆଖି ବନ୍ଦ କର ତ ।"

ସୂତ କହୁଛନ୍ତି—"ମହାରାଜ ! ଭଗବାନଙ୍କର ଆଜ୍ଞା ପାଇବାମାତ୍ରେ ସମସ୍ତ ଗୋପାଳ ଦୁଇ ହାତରେ ନିଜ ନିଜର ଦୁଇ ଆଖିକୁ ଭଲଭାବରେ ବନ୍ଦ କରି ନେଲେ । ସଙ୍ଗେ ସଙ୍ଗେ ଅନନ୍ତ ଶକ୍ତିଧାରୀ ସର୍ବସମର୍ଥ ଜଗଦୀଶ୍ୱର ଶ୍ରୀକୃଷ୍ଣଚନ୍ଦ୍ର ସେହି ଅଗ୍ନିକୁ ପାନ କରିନେଲେ । ଯେ ବିଶ୍ୱବ୍ରହ୍ମାଣ୍ଡକୁ ଶ୍ୱାସ-ଶ୍ୱାସକେ ପାନକରି ପାରନ୍ତି, ତାଙ୍କ ପକ୍ଷେ ଏ ସାମାନ୍ୟ ଦାବାଗ୍ନି ପାନ କରିବା କୌଣସି କଷ୍ଟକର ବ୍ୟାପାର ନ ଥିଲା । ପାନ କରିବା ପରେ ଭଗବାନ କହିଲେ—ଏବେ ତୁମ୍ଭେମାନେ ସମସ୍ତେ ନିଜ ନିଜର ଆଖି ଖୋଲ ।"

ଭଗବାନଙ୍କର ଆଜ୍ଞା ପାଇ ସମସ୍ତେ ଆଖି ଖୋଲି ଦେଖିଲେ ଯେ, ସେଠାରେ ଅଗ୍ନି ନାହିଁ କି ଧୂଆଁ ମଧ୍ୟ ନାହିଁ । ଏହା ଦେଖି ସମସ୍ତେ ଅତ୍ୟନ୍ତ ବିସ୍ମିତ ହେଲେ । ଏହାପରେ ସମସ୍ତେ ନିଘୋଡ଼ ନିଦରେ ଶୋଇଗଲେ । ପ୍ରାତଃକାଳ ହେବାକ୍ଷଣି ସମସ୍ତେ ଉଠି ବ୍ରଜକୁ ପ୍ରତ୍ୟାବର୍ତ୍ତନ କଲେ । ଆସିବାକ୍ଷଣି ବ୍ରଜରେ ଖିରି, ପୁରି, ମାଲପୁଆ ଆଦି ପ୍ରସ୍ତୁତ କରି ବ୍ରାହ୍ମଣମାନଙ୍କୁ ଭୋଜନ ଦେଲେ ଓ ସମସ୍ତ ଗୋପ-ଗୋପୀ ମିଳି ପ୍ରଭୁଙ୍କ ସହିତ ପ୍ରସାଦ ସେବନ କଲେ । ମୁଁ ସଂକ୍ଷେପରେ ଆପଣମାନଙ୍କୁ ଏହି କାଳୀୟ ନିଗ୍ରହ ବିଷୟ କହିଲି । ଏବେ ଭଗବାନ ଯେପରି ପ୍ରଲମ୍ବାସୁରକୁ ଉଦ୍ଧାର କଲେ ସେ ବିଷୟ ପ୍ରଥମେ କହିବି । ଆପଣମାନେ ମନଧ୍ୟାନ ଦେଇ ତାହା ଶ୍ରବଣ କରନ୍ତୁ ।

## ଛପ୍‌ପୟ

ଶୀତଲ ମନ୍ଦ ସୁଗନ୍ଧ ପବନ ବାଲୁ ଅତି କୋମଲ ।
ସୋୟେ ଆଧୀ ରାତ ଉଠୀ ବନମହି ଦାବାନଲ ।।
ଦେଖି ଅଗିନକୀ ଲପଟ ଗୋପ ସବରେ ଘବରୟେ ।
ଦୀନ ଦୁଃଖୀ ଅତି ଭୟେ ଶରନ ଶ୍ରୀହରି କୀ ଆୟେ ।।
ବ୍ରଜବାସିନକୁଁ ସଭୟ ଲଖି, ହଁସି ମୋହନ ଠାଢ଼େ ଭୟେ ।
ନୟନ ମୁଁଦାୟେ ସବନକେ, ତୁରତ ଅଗିନ ସବ ପୀ ଗୟେ ।।



# ଘୋଡ଼ାଚଢ଼ା ଖେଳ

ଉନ୍ନ ଚକ୍ରୁଃ ପରିବୃଢ଼ୌ ଗୋପା ରାମଜନାର୍ଦ୍ଦନୌ ।
କୃଷ୍ଣସଂଘଟ୍ଟିନଃ କେଚଦାସନ୍ ରାମସ୍ୟ ଚାପରେ ॥
ଆଚେରୁର୍ବିବିଧାଃ କ୍ରୀଡା ବାହ୍ୟବାହକଲକ୍ଷଣାଃ ।
ଯତ୍ରାରୋହନ୍ତି ଜେତାରୋ ବହନ୍ତି ଚ ପରାଜିତାଃ ॥

(ଶ୍ରୀ ଭା ୧୦ସ୍କ, ୧୮ଅ, ୨୦-୨୧ ଶ୍ଳୋକ)

## ଛପ୍‌ପୟ

କରି କାଳୀୟ ଉଦ୍ଧାର ପ୍ରୀତ ଆସନ୍ତି ବୃନ୍ଦାବନ ॥
ଜୟ ଜୟ ଗାଉଛନ୍ତି ଶ୍ୟାମ ସବୁ ବନ ଧେନୁ ଚରାବନ ॥
ମୋର ମୁକୁଟ ଶିର ଧାଇଁ ଗଲେ ବୈଜୟନ୍ତୀ ମାଳ ।
ବନ ଉପବନକୁ ଯାଆନ୍ତି କରନ୍ତି କ୍ରୀଡ଼ା ନନ୍ଦଲାଲ ॥
ଦାଦୁର, କେକୀ, ହଂସ, ଅଶ୍ୱ, ଚଲିଲେ ଚଂଚଲ ଚପଲ ।
ସମର କରନ୍ତି ନୃପ ଜନ ଜନଙ୍କୁ, କରନ୍ତି ଖେଳ ଜୟ ନବ ନବଲ ॥

ଲୋକେ କହୁଥାଆନ୍ତି—"ଗୋଟିଏ କଥାକୁ କାହିଁକି ବାରମ୍ବାର କହୁଛ, କୌଣସି ନୂଆ କଥା ଯଦି ଅଛି ତେବେ କହ । ସେହି ନିର୍ବୋଧ ଲୋକଟି ବିଚାରି ଜାଣେନାହିଁ ଯେ, ସଂସାରରେ କୌଣସି କଥା ନୂତନ କଥା ନୁହେଁ । ସଦା ସର୍ବଦା ସେହି ସେହି ପୁରାତନ ଘଟଣାକୁ ଆବୃତ୍ତି କରାଯାଉଛି । ଆମ୍ଭେମାନେ ନିତ୍ୟ ଶୌଚ, ସ୍ନାନ, ଭୋଜନ ଓ ଦୈନନ୍ଦିନ କର୍ମ କରୁଥାଉଁ । ଘଟଣାଗୁଡ଼ିକ ମଧ୍ୟ ଷୋଡ଼ଶ ସ୍ୱର ଓ ଚଉତିଶ ବ୍ୟଞ୍ଜନଯୁକ୍ତ ବର୍ଣ୍ଣ ବିଶିଷ୍ଟ । ତୁମେ ଯେତେବଡ଼ ଗ୍ରନ୍ଥରଚନା କର ନା କାହିଁକି, ଯେତେ ଗବେଷଣାତ୍ମକ ତଥ୍ୟ ଲେଖ ନା କାହିଁକି ସେ ସମସ୍ତ ସେହି ସ୍ୱର ବ୍ୟଞ୍ଜନ ସାହାଯ୍ୟରେ ହିଁ ଲେଖିବାକୁ ହେବ । ଏପରି କୌଣସି ଶବ୍ଦ ନାହିଁ, ଯାହାକି ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣକୁ ଛାଡ଼ି ରହିଛି । ଭଗବାନଙ୍କର ଲୀଳାଗୁଡ଼ିକ ସେହିପରି କେତେକ ସ୍ଥାନରେ ବାରମ୍ବାର ବର୍ଣ୍ଣିତ ହୋଇଛି । ଏଥିରେ ପୁନରୁକ୍ତ ଦୋଷ ହୁଏନାହିଁ । ଭକ୍ତ ସେହି ଲୀଳା ଯେତେ ଶୁଣିବେ, ତାଙ୍କୁ ସେତେ ନୂଆ ନୂଆ ଲାଗିବ ।"

ସୂତ କହୁଛନ୍ତି—"ମୁନିଗଣ ! ଭଗବାନ ଆନନ୍ଦକନ୍ଦ ବ୍ରଜଚନ୍ଦ୍ର ଷଡ଼ଋତୁ ବ୍ରଜରେ ନିବାସ କରନ୍ତି । ସେ ନିବାସ କରୁଥିବାରୁ ବ୍ରଜରେ ସମସ୍ତ ଋତୁ ସୁଖଦାୟିନୀ ହୋଇଥାଆନ୍ତି । ଭଗବାନ ତ ଲୀଳା ପାଇଁ ଗୋପାଳରୂପ ଧାରଣ କରିଛନ୍ତି । ସେ ସେହି ବେଶରେ ବ୍ରଜରେ ବିଚିତ୍ର ବିଚିତ୍ର କ୍ରୀଡ଼ା କରନ୍ତି । କାଳୀୟ ଦଳନ ଓ ଦାବାନଳ ପାନ ଭଳି ଲଳିତ ଲୀଳା ସେହି ଲାବଣ୍ୟଧାମ ଶ୍ୟାମ ଗ୍ରୀଷ୍ମଋତୁରେ ହିଁ କରିଥିଲେ । ଗ୍ରୀଷ୍ମଋତୁ ତ ପ୍ରାଣୀମାନଙ୍କୁ ବିଶେଷ କିଛି ସୁଖ ଦିଏ ନାହିଁ, ଯାଗ୍ରତ ଅଗ୍ନି ବର୍ଷା ହେତୁ ସମସ୍ତଙ୍କ ଶରୀର ତାତିଯାଏ । ସର୍ବଦା ଲୋମ ଛିଦ୍ରଦେଇ ଝାଳ ବାହାରେ । କ୍ଷୁଧା କମିଯାଏ ଓ ତୃଷା ବଢ଼ିଯାଏ । ବହୁତ କଷ୍ଟରେ ନିଦ ହୁଏ । ଘାସସବୁ ଶୁଖିଯାଏ, ଭୂମି ତାତିଯାଏ, ବାଲିରେ ଗୁଲି ଗୁଲି ପଦାକୁ ବାହାରିଲେ ମୁଖ୍ୟହନ୍ତୁଣ ପ୍ରଶାନ୍ତ ହୋଇଥାଏ । ମଶା ଓ ଡାଆଁଶଙ୍କର ପ୍ରାଦୁର୍ଭାବ ବଢ଼ିଯାଏ । ଖଟ, ପଲଙ୍କରେ ଗ୍ଭରପୋକଙ୍କର ଦୌରାତ୍ମ୍ୟ-କହିଲେ ନ ସରେ । ନଦୀର ଜଳ ଶୁଖି ଯାଇଥାଏ । ଅଗ୍ନି ସମ୍ମୁଖକୁ ଯିବାକୁ ଭୟଲାଗେ । ବାୟୁ ଉଷ୍ଣ ହୋଇଥାଏ, ଝାଞ୍ଜି ପବନ ବହେ ଓ ଧୂଳି ଉଡ଼େ । ଗ୍ରୀଷ୍ମ ଋତୁର ଗୁଣ କେତେ ବା ବାଢ଼ିବ, ଏହି ସମୟରେ ସବୁ ଉତ୍ତପ୍ତ ହୋଇ ଯାଇଥାଏ; କୌଣସି କାର୍ଯ୍ୟ କରି ହୁଏନାହିଁ । ସେହିପରି ଗ୍ରୀଷ୍ମ ନ ହେଲେ ବର୍ଷା ହୁଏନାହିଁ । ବର୍ଷା ନ ହେଲେ ଅନ୍ନ ହୁଏ ନାହିଁ, ଅନ୍ନ ବିନା ଜୀବନ ଧାରଣ ହୋଇପାରେ ନାହିଁ । ଏଥିପାଇଁ ଗ୍ରୀଷ୍ମ ଉଷ୍ଣତା ଏକାନ୍ତ ଆବଶ୍ୟକ । ଯଦିଓ ଏହି ଋତୁ ପ୍ରାଣୀମାନଙ୍କ ପାଇଁ ସେତେ ସୁଖଦାୟକ ନୁହେଁ, ତଥାପି ବୃନ୍ଦାବନରେ ସେହି ଅସୁବିଧା ଭୋଗ କରିବାକୁ ପଡ଼େନାହିଁ । ସେଠାରେ ସମସ୍ତ ଋତୁ ଭଗବାନଙ୍କୁ ଦର୍ଶନ କରି ନାତିଶୀତୋଷ୍ଣ ହୋଇ ଥାଆନ୍ତି । ଯେଉଁଠାରେ ନିଜର ଅଂଶଭୂତ ବଳଦେବଙ୍କ ସହିତ ବାଙ୍କବିହାରୀ ବିହାର କରୁଥିଲେ, ସେହି ବୃନ୍ଦାବନର ରସମୟୀ ପବିତ୍ର ଭୂମିରେ ବାରମାସଯାକ ବସନ୍ତ ଋତୁ ଭଳି ବିରାଜମାନ କରୁଥିଲେ । ସେଠାରେ ଥିବା ଝରଣାମାନ ସେତେବେଳେ ଆଦୌ ଶୁଖିଯାଉ ନ ଥିଲେ । ସେଗୁଡ଼ିକ କଳକଳ ନାଦରେ ବିହି ଶ୍ରୀକୃଷ୍ଣଙ୍କ ଲୀଳା ସର୍ବଦା ଗାନ କରୁଥିବା ଭଳି ପ୍ରତୀତ ହେଉଥିଲେ । ଘଞ୍ଚ ଅରଣ୍ୟରେ ଯେଉଁ ଝିଲ୍ଲୀଶବ୍ଦ ଝଙ୍କାରିତ ହେଉଥିଲା, ଝରଣା ପ୍ରତି ସ୍ପର୍ଦ୍ଧା କରି ନିଜର କଳକଳ ନିନାଦରେ ସେହି ଶବ୍ଦକୁ ପ୍ରତିହତ କରୁଥିଲେ । ଯଦିଚ ଗ୍ରୀଷ୍ମତାପରେ ସମସ୍ତ ଭୂମି ଉତ୍ତପ୍ତ ହୋଇଯାଇଥିଲା, ଶୁଷ୍କ ହୋଇ ଯାଇଥିଲା ଓ ବାୟୁମଣ୍ଡଳ ଗରମ ହୋଇ ଯାଇଥିଲା, ତଥାପି ବୃନ୍ଦାବନର ଝରଣାଗୁଡ଼ିକରୁ ବାୟୁ ଶୀତଳ ଜଳବିନ୍ଦୁ ବହିନେଇ ଦୁର୍ବାଦଳକୁ ଆର୍ଦ୍ର କରି ଦେଉଥିଲା । ସେ ସ୍ଥାନର ବୃକ୍ଷରାଜି ଶୀତଳ ହୋଇ ଯାଇଥିଲେ ଓ ସେ ସ୍ଥାନର ବାୟୁ ସ୍ପର୍ଶ ସୁଖଦ ହୋଇଥିଲା । ସେ ସ୍ଥାନର ବାୟୁ ଯେ କେବଳ ଶୀତଳ ଥିଲା, ତାହା ନୁହେଁ ତାହା ଅତି ବେଗରେ ବହୁଥ ନ ଥିଲା କମ୍ବା ଅତି ଧୀର ଗତିରେ ବହୁଥ ନ ଥିଲା । ନଦୀ, ସରୋବର, ଝରଣା ଓ ଅତି କ୍ଷୁଦ୍ର ଜଳାଶୟର ସଂସର୍ଗରେ ଆସି ଓ

ତନ୍ମଧ୍ୟରେ ଖେଳୁଥିବା ଲାଲ, ଶ୍ୱେତ ଓ ନୀଳ କମଳଗୁଡ଼ିକର ପରାଗ ସ୍ପର୍ଶ ଯୋଗୁଁ ତାହା ଅତ୍ୟନ୍ତ ସୁଗନ୍ଧିତ ହୋଇଯାଇଥିଲା । ଏ ପ୍ରକାର ଶୀତଳ ମନ୍ଦ ସୁଗନ୍ଧିତ ବାୟୁ ବହୁଥିବା ଯୋଗୁଁ ପଥିକମାନଙ୍କୁ ବୃନ୍ଦାବନର ବୀଥିକା ମାନଙ୍କରେ ବିଚରଣ କରିବା ଦ୍ୱାରା ଶ୍ରମ ହେଉ ନ ଥିଲା ବା ଖେଦ ମଧ୍ୟ ହେଉ ନ ଥିଲା । ସେମାନେ ସନ୍ତାପରୁ ରକ୍ଷାପାଇ ଆନନ୍ଦରେ ଗୃହଆଡ଼େ ଭ୍ରମଣ କରୁଥିଲେ । ବ୍ରଜରେ ପ୍ରବାହିତ ହେଉଥିବା ନଦୀଗୁଡ଼ିକର ଜଳ ଅତି ସୁମଧୁର ସ୍ୱଚ୍ଛ ଓ ଅଗାଧ ଥିଲା । ସେଗୁଡ଼ିକର ଛଳ ଛଳ ତଟ ଦେଶରେ ଧକ୍କା ମାରୁଥିବା ଲହରୀ ତାହାର ନିକଟସ୍ଥ ସ୍ଥଳଭାଗକୁ ଆର୍ଦ୍ର କରୁଥିଲା । ଏହାଦ୍ୱାରା ସେଠାରେ ଥିବା ଘାସ ଅତ୍ୟନ୍ତ ସବୁଜବର୍ଣ୍ଣ ଓ ଚିକ୍‌କଣ ହୋଇଥିଲା । ସମତଳ ଭୂମିରେ ଏକ ପ୍ରକାରର ସବୁଜ ବର୍ଣ୍ଣର ଘାସ ଏପରି ଦେଖା ଯାଉଥିଲା ଯେ, ସତେ ଯେପରି ସେଠାରେ କେହି ସବୁଜ ବର୍ଣ୍ଣର ଚଦର ବିଛାଇ ଦେଇଛି ।

ବୃନ୍ଦାବନର ମର୍କଟ, ମୟୂର, ଖଗ (ପକ୍ଷୀ), ମୃଗ, ଓ ଅନ୍ୟାନ୍ୟ ସ୍ଥଳଚର ଜୀବ ଏବଂ ସାରସ, ଚକ୍ରବାକ, ଜଳ କୁକ୍କୁଟ, ବକ ତଥା ଅନ୍ୟାନ୍ୟ ଜଳଜନ୍ତୁମାନେ କ୍ରୀଡ଼ାପ୍ରିୟ ଓ ଦର୍ଶନୀୟ ଥିଲେ । ସେହି ପଶୁପକ୍ଷୀ ଯଦିଓ ପଶୁ ପକ୍ଷୀ ରୂପରେ ଦେଖା ଯାଉଥିଲେ, ପ୍ରକୃତରେ ସେମାନେ ପଶୁପକ୍ଷୀ ନ ଥିଲେ । ସେମାନେ ଥିଲେ ବଡ଼ ବଡ଼ ସିଦ୍ଧ ଯୋଗୀ ଓ ମୁନି । ଛଦ୍ମ ବେଶଧରି ସେମାନେ ଶ୍ରୀକୃଷ୍ଣ ସେବା କରିବା ନିମିତ୍ତ ଏହି ରୂପରେ ବିଚରଣ କରୁଥିଲେ । ନିଜ ନିଜର ଏହି ପଶୁପକ୍ଷୀ ରୂପରେ ସେମାନେ ଶ୍ରୀକୃଷ୍ଣଙ୍କର ମୁଖକମଳ ମକରନ୍ଦ ପାନ କରୁଥିଲେ । ବୃନ୍ଦାବନ ହେଉଛି ଶ୍ରୀ ବାଙ୍କେବିହାରୀଙ୍କର ବିହାର କରିବାର ଶ୍ରେଷ୍ଠ କ୍ରୀଡ଼ାସ୍ଥଳୀ । ଶ୍ରୀକୃଷ୍ଣ ଯେଉଁଳି କ୍ରୀଡ଼ାକୌତୁକପ୍ରିୟ, ବୃନ୍ଦାବନର ସମସ୍ତ ଜୀବଜନ୍ତୁ ମଧ୍ୟ ସେହିଭଳି କ୍ରୀଡ଼ାପ୍ରିୟ । ସେମାନେ ସମସ୍ତେ ଶ୍ୟାମସୁନ୍ଦରଙ୍କର ସୁମଧୁର ମୁରଲୀଧ୍ୱନି ଶୁଣି ଚିତ୍ରପ୍ରତିମା ପରି ରହି ଯାଉଥିଲେ । ଶ୍ରୀକୃଷ୍ଣ ବନ ମଧ୍ୟରେ ପ୍ରବେଶ କରିବାକ୍ଷଣି ସେମାନେ ଶ୍ରୀକୃଷ୍ଣଙ୍କ ନିକଟକୁ ଧାଇଁ ଆସୁଥିଲେ । ଶ୍ରୀକୃଷ୍ଣ ସର୍ବଦା ବେଶଭୂଷାରେ ସୁଶୋଭିତ ହୋଇଥିଲେ । ସର୍ବଦା ତାଙ୍କ ମୁଖରେ ମନ୍ଦ ମନ୍ଦ ହସ ଫୁଟି ଉଠୁଥିଲା । ବିଷାଦ କ'ଣ ତାଙ୍କୁ ଜଣା ନ ଥିଲା । ଗୋରୁଗାଈଙ୍କୁ ଆଗରେ ରଖି ବଳଦେବ ଓ ଅନ୍ୟ ଗୋପାଳବାଳକ-ମାନଙ୍କ ସହିତ ସେ ବନକୁ ଗୋ-ଗୋଷ୍ଠ ଚରାଇବାକୁ ନେଉଥିଲେ । ଏହା ହିଁ ଥିଲା ତାଙ୍କର ଦୈନନ୍ଦିନ କାର୍ଯ୍ୟ, ଦୈନନ୍ଦିନ ବ୍ୟାପାର ଓ ତାଙ୍କର ଦୈନନ୍ଦିନ ଲୀଳା ।

ଦିନକର ଘଟଣା, ଭଗବାନ ସେହି ନଟବର ବେଶରେ ମୁରଲୀ ବଜାଇ ପଲ୍ଲବିତ, ପୁଷ୍ପିତ ତଥା ଫଳପୂର୍ଣ୍ଣ ଏକ ସୁଶୋଭିତ ବନ ମଧ୍ୟରେ ପ୍ରବେଶ କଲେ । ବସ୍ତ୍ରାଭୂଷଣରେ ସୁସଜ୍ଜିତ ହୋଇ ପ୍ରତ୍ୟେକେ ନିଜ ନିଜ ଘରୁ ତ ଆସିଥିଲେ ; କିନ୍ତୁ ଏଠାକୁ ଆସି କ'ଣ ସେମାନେ ବନରେ ନାଟକ ପ୍ରଦର୍ଶନ କରିବେ ? ଗୋପଲୀଳାର ଅନୁକରଣ କରିବେ ?

ଏଥିପାଇଁ ଘୁଁଘୁଚ, ଗେରୁ, ସେଲଖଡ଼ି, ମୟୂର ପକ୍ଷୀ, ଫୁଲ ଫଳର ସ୍ତବକ ଓ ଫୁଲର ମାଳା ଅତ ବସ୍ତୁ ସଙ୍ଗରେ ଆଣିଥିଲେ । ଏହିସବୁ ଦ୍ରବ୍ୟରେ ଗୋପବାଳକଗଣ ପରସ୍ପର ପରସ୍ପରକୁ ଶୃଙ୍ଗାର କରିବାରେ ତଥା ସଜାଇବାରେ ଲାଗିଯାଉଥିଲେ ।

ଭଗବାନଙ୍କ ସହିତ ସହସ୍ର ଗୋପବାଳକ ଥିଲେ । ବଳରାମ ଓ ଶ୍ୟାମସୁନ୍ଦର ଦୁହେଁ ଥିଲେ ସେମାନଙ୍କର ଅଧିନାୟକ । ତେଣୁ ସେମାନଙ୍କୁ ସେ ଦୁହେଁ ବିଚିତ୍ର ଖେଳ ଖେଳାଉ ଥିଲେ । ଶ୍ରୀକୃଷ୍ଣ ସେଦିନ ସମସ୍ତଙ୍କୁ କହିଲେ—"ଭାଇ ! ଦେଖ, ଆଜି ବିଚିତ୍ର ବିଚିତ୍ର ଖେଳ ଖେଳିବାକୁ ହେବ । ତୁମ୍ଭେମାନେ ନିଜ ନିଜ ରୁଚି ଅନୁସାରେ ମତବ୍ୟକ୍ତ କର । କଏ କେଉଁ ଖେଳକୁ ଅଧିକ ଭଲପାଅ, ତାହା କୁହ । ସମସ୍ତଙ୍କୁ ଏ କଥା ପଚାରିବାର କାରଣ ଥିଲା ଯେ, ମୋର ସବୁପ୍ରକାର ଖେଳ ଖେଳିବାକୁ ତ ମନ ହେଉଛି, ତଥାପି ତୁମ୍ଭେମାନେ ତୁମ୍ଭମାନଙ୍କ ପ୍ରିୟ ଖେଳ କ'ଣ, ତାହା କୁହ ।"

ଏ କଥା ଶୁଣି କୌଣସି ଏକ ଗୋପାଳବାଳକ କହିଲା—"ଭାଇ ! ତୋ ନାଚ ଦେଖିବାକୁ ଆମକୁ ଭାରି ଭଲ ଲାଗେ । ତୁ ଯେତେବେଳେ ନୂପୁର ବଜାଇ, ଭାବଭଙ୍ଗୀ ଦେଖାଇ, ବଂଶୀ ବଜାଇ, ବଂଶୀର ସ୍ୱନ ଅନୁସାରେ ତାଳେ ତାଳେ ନାଚୁ ଓ ଆମେ ତୋ ନୃତ୍ୟ ଅନୁସାରେ ଗୀତ ଗାଉ, ତୋର ତାଳ ସହିତ ତାଳ ମିଳାଇ ବଂଶୀ, ସିଂଘା ଓ ତାଳି ବଜାଉ, ତେବେ ସେତେବେଳର ଆନନ୍ଦ କହିଲେ ନ ସରେ । ଏହି ଖେଳ ଆଗରେ ଅନ୍ୟସବୁ ଖେଳକୁ ଆମେ ତୁଚ୍ଛ ମନେକରୁ ।"

ଅନ୍ୟ ଜଣେ କହିଲା—"ନାଚ ତ ଖୁବ୍ ଭଲ; କିନ୍ତୁ ଏହା ବାସ୍ତବ କଥା ଯେ, ମୋ ମତରେ ଦ୍ୱନ୍ଦ୍ୱଯୁଦ୍ଧ ନାଚଗାନଠାରୁ ଆହୁରି ସରସ ଓ ପ୍ରିୟ ଖେଳ । ଯେତେବେଳେ ପାଇକଙ୍କ ଭଳି, ବାହାସ୍ଫୋଟ ମାରି ପରସ୍ପର ମଧ୍ୟରେ ସମବଳ ବିଶିଷ୍ଟ ଦୁଇ ଜଣ ବାଳକଙ୍କ ମଧ୍ୟରେ ଆଖଡ଼ା ଶାଳରେ ଯୁଦ୍ଧ ଲାଗେ, ସେତେବେଳେ ସେହି ଦଳାଦଳି ଓ ବାହୁଯୁଦ୍ଧକୁ ଦେଖି ମୋତେ ଭାରି ଆନନ୍ଦ ଲାଗେ । ସେତେବେଳେ ଉଭୟଙ୍କ ମଧ୍ୟରେ ତାଳେ ତାଳେ ମଲ୍ଲଯୁଦ୍ଧ ହୋଇଥାଏ । ଜଣେ ଜଣକୁ ମାଡ଼ିବସେ ତ ଅନ୍ୟଜଣେ ତାକୁ ତଳେ ପକାଇ ଗଡ଼ାଗଡ଼ି କରାଏ । ତେଣୁ ମୋ' ମତରେ ଅନ୍ୟ ଖେଳ କମ୍ ହେଉ ପଛକେ, ପ୍ରତିଦିନ ଏହି ମଲ୍ଲଯୁଦ୍ଧ ହେଉ ।"

ଅନ୍ୟ ଜଣେ କହିଲା—"ଭାଇ ! ମୁଁ ତ ପେଣ୍ଡୁ ଖେଳକୁ ଭଲପାଏ । ପେଣ୍ଡୁ ଖେଳିଲେ ତାହା ଉପରକୁ ସାଇଁ ସାଇଁ ଶବ୍ଦ କରି ଉଠେ, ତଳକୁ ଖସେ, ତଳ ଉପର ହୋଇ ନାଚେ । ପେଣ୍ଡୁ ଖେଳିବାରେ ଅତି ଆନନ୍ଦ ମିଳେ, ଏହା ଏକ ଲାଭଦାୟକ ଓ ଅତି ସୁନ୍ଦର ଖେଳ । ଏହି ଖେଳ ସୁଖ ପ୍ରଦାନକାରୀ । ତେଣୁ ସର୍ବଦା ଏହି ପେଣ୍ଡୁ ଖେଳ ହେଉ ।"

ଅନ୍ୟ ଜଣେ କହିଲା—"ମୋତେ ଦୌଡ଼ାଦୌଡ଼ି କରି ଜଣେ ଜଣଙ୍କୁ ଅତିକ୍ରମ କରିଯିବା, ଡେଇଁବା, କୁଦିବା ଓ ଠେକାମାରିବା ଖେଳ ଖୁବ୍ ଭଲଲାଗେ । ଯେ ଯେତେ ଦୌଡ଼ାଦୌଡ଼ି କରି ପାରିବ, ତା'ର ଶରୀର ସେତେ ସ୍ଫୁର୍ତ୍ତି-ଦାୟକ ହୋଇଥାଏ ।"

ଅନ୍ୟ ଜଣେ କହିଲା—"ମୋତେ ବେଲଖେଳ ଖୁବ ଭଲ ଲାଗେ । ବେଲ ହେଉଛି ଏକ ଗୁଣଦାୟକ ଫଳ, ଏହା ପେଟର ଯାବତୀୟ ରୋଗର ଔଷଧ । ଏଥିରେ ସୁନ୍ଦର 'ମୁରବା' ପ୍ରସ୍ତୁତ ହୁଏ । ମୁଁ ମନେ କରୁଛି, ପ୍ରତ୍ୟହ ବେଲ ତୋଳି, ତାକୁ ପକାଇ ଖେଳ କରାଯାଉ ଓ ଖେଳ ଶେଷରେ ତାକୁ ଜୋର ଖିଆଯାଉ । ଗୋଟିଏ ଉଦ୍ଦେଶ୍ୟରେ ଦୁଇଟି କାର୍ଯ୍ୟ ବି ହେବ । ଠାକୁର ଦେଖା ହେବ ଓ କଦଳୀ ବିକା ବି ହେବ । ଆମର ଖେଳକୁ ଖେଳ ହେବ ଓ ଭୋଜନକୁ ଭୋଜନ ବି ହେବ ।"

ଅନ୍ୟ ଜଣେ କହିଲା— "ମୁଁ ତ ବେଲ ଅପେକ୍ଷା ଅଁଳାଫଳ ଖେଳକୁ ଖୁବ୍ ଭଲ ପାଏ । କବିରାଜମାନେ କହନ୍ତି, ଅଁଳାଠାରୁ ବଳି ଲାଭଦାୟକ ଫଳ ଆଉ କିଛି ନାହିଁ । ଧର୍ମଶାସ୍ତ୍ରକାରମାନେ କହନ୍ତି, ଅଁଳାଫଳ ଖାଇବାଦ୍ୱାରା ମୋକ୍ଷ ଲାଭ ହୁଏ । ମୋର ମତ ଅଁଳାଖେଳ ଖେଳିବାଦ୍ୱାରା ଆମେ ମୋକ୍ଷମାର୍ଗରେ ଯାଇ ପାରିବା । ଅଁଳା ତୋଳି ଗୁଳି ବଳ୍ ପରି ପକାଇ ଖେଳିବା । ଜଣେ ଅନ୍ୟଜଣକ ନିକଟକୁ ପକାଇବା ଓ ସେ ତାହା ଧରି ପୁଣି ପକାଇବ । ଗୁଳି ଭଳିରେ ଖେଳିବା ଓ ଖେଳସାରି ନିଜ ନିଜ ଅଣ୍ଟିରେ ନେଇ ମା'ଙ୍କୁ ଘରେ ଦେବା । ମା' ସେଥିରେ ଚଟଣି କରି ରୁଟି ସହିତ ଆମକୁ ଖାଇବାକୁ ଦେବେ ।"

ଅନ୍ୟ ଜଣେ କହିଲା—"ଏ ସବୁ ଖେଳ ତ ସ୍ଥଳଭାଗର ଖେଳ ! ମୋ' ବିଚାରରେ ଗୁଳି ଘଡ଼ାମାନଙ୍କୁ ଏକାଠି କରି ତହିଁରେ ଭେଳା ତିଆରି କରିବା ଓ ସେଥିରେ ବସି ଯମୁନାର ଏ ପାରରୁ ସେପାର ଓ ସେପାରରୁ ଏପାର ହେବା । ସେ ପାରକୁ ଯାଇ ସେଠାରେ ଥିବା ବାଲୁକାପ୍ରାନ୍ତରରେ କବାଡ଼ି ଖେଳିବା ।"

ଅନ୍ୟଜଣେ କହିଲା—"ଆରେ ! ସେପାରକୁ କାହିଁକି ଯିବା ? ଏହି ପାରରେ ସମସ୍ତେ ମିଶି ଆଖିରେ ଅନ୍ଧପୁଟୁଳି ବାନ୍ଧି ଲୁଚକାଳି, ବୋହୂଚୋରି ଖେଳ ଖେଳିବା । ମୋର ଏହା ନିଶ୍ଚିତ ସିଦ୍ଧାନ୍ତ ଯେ, ଅନ୍ଧପୁଟୁଳି ଖେଳ ସଦୃଶ ଖେଳ ଆଉ କୌଣସି ଖେଳ ହୋଇ ନ ପାରେ ।"

ଶେଷରେ ଅନ୍ୟଜଣେ କହିଲା—"ଚାଲ ଝପଟା ଖେଳ ହେଉ, 'ପ୍ରେମର ବଂଶୀ' ହେଉ, କିମ୍ବା ଯେ କୌଣସି ଖେଳ ହେଉ, ତାହା ଏପରି ହୋଇଥିବା ଉଚିତ ଯେ, ଯାହାକୁ ଛୁଇଁବା ପାଇଁ ଯେପରି ସମସ୍ତଙ୍କୁ ଦୌଡ଼ିବାକୁ ପଡ଼ୁଥିବ ଓ ସମସ୍ତଙ୍କୁ ସମାନ ଶ୍ରମ କରିବାକୁ ପଡ଼ୁଥିବ ।"

ଭଗବାନ କହିଲେ—"ଏ ସବୁ ଖେଳ ତ ଆମେ ଖେଳୁ ଥାଉଁ, ଆଜ ବି ଖେଳିବା । ଏବେ ତୁମ୍ଭେମାନେ କୁହ ତୁମ୍ଭମାନଙ୍କ ଭିତରୁ କେଉଁମାନେ କି କି ପକ୍ଷୀର ଚାଲିଚଳନ ଓ ରାବ ରାବିବା ଜାଣିଛ ?"

ଏ କଥା ଶୁଣି ଜଣେ କହିଲା—"ଆରେ କାହ୍ନୁ ଭାଇ ! ମୁଁ ମୟୂରର ଚାଲି କିପରି, ତାହା ଚାଲି ଦେଖାଉଛି ।" ଏହା କହି ସେ ଦୁଇ ହାତକୁ ଭୂମି ଉପରେ ରଖି, ଦୁଇ ଗୋଡ଼କୁ ଉପରକୁ ଉଠାଇଲା ଓ ହାତର ବଳରେ ମୟୂର ଭଳି ଚାଲିବାକୁ ଲାଗିଲା ।"

ଅନ୍ୟ ଜଣେ କହିଲା—"ଦେଖ ମୁଁ ହରିଣ ଭଳି କିପରି ଦଉଡ଼ୁଛି ।"

ଏହା କହି ସେ ହରିଣଙ୍କ ଭଳି ଡେଇଁ ଡେଇଁ ଦୌଡ଼ିଲା । ଅନ୍ୟ ଜଣେ କହିଲା— "ମୁଁ ବେଙ୍ଗ ଭଳି ଡେଇଁପାରେ । କେହି କହିଲା, ମୁଁ ମଗର ଭଳି ଚାଲିପାରେ, କେହି କହିଲା, ମୁଁ ସର୍ପ ଭଳି ଗତି କରିପାରେ, କେହି କୁକ୍‌କୁଟ ଚାଲି ପ୍ରଦର୍ଶନ କଲା । କେହି କୁକୁର ଭଳି ବୋବାଇଲା, କେହି ବଗ୍ରଢ଼ ଭଳି ବୋବାଇଲା, କେହି କୋକିଳ ଭଳି କୂଜନ କରି ହସିଲା ଓ କେହି ଗଧ ଭଳି ହେଁ ଚୁ, ହେଁ ଚୁ କରି ରଡ଼ି କଲା ।"

ଏହା ଦେଖି ଶ୍ରୀଦାମା କହିଲେ—"ଭାଇ ! ଏବେ କୌଣସି ଖେଳ ଆରମ୍ଭ ହେଉ ।"

ଶ୍ରୀକୃଷ୍ଣ କହିଲେ—"ତୋତେ କେଉଁ ଖେଳ ଭଲ ଲାଗେ ଆଗ କହ ।"

ଶ୍ରୀଦାମା କହିଲେ—"ମୋତେ ତ ସବୁ ଖେଳ ଭଲ ଲାଗେ; କିନ୍ତୁ ହାତ ଛଆଣ କଣ୍ଢେଇରେ (ଦୁଇଟି ବରକନ୍ୟା ଢ଼ଆରି ହୋଇଥିବା ମାଟି କଣ୍ଢେଇ) ବାହାଘର ଖେଳ ମୋତେ ସବୁଠାରୁ ଭଲ ଲାଗେ ।"

ଶ୍ରୀକୃଷ୍ଣ ହସି ହସି କହିଲେ—"ଯା, ପଳା ! ତୋତେ ସର୍ବଦା ବାହାଘର ଚନ୍ତା ।"

ଶ୍ରୀଦାମା ଗମ୍ଭୀରତା ଭାବ (ମିଛେ ମିଛେ) ପ୍ରଦର୍ଶନ କରି କହିଲେ—"ଆରେ ଭାଇ ! ତୁ ମତେ କ'ଣ କହୁଚୁ, ବାହାଘର ନିଶା ତ ତତେ ଘାରିଛି ; କିନ୍ତୁ ଏବେ ତୁ ସମସ୍ତଙ୍କ ସାମନାରେ ବାବାଜି ସାଜିଛୁ । ଦେଖାଯାଉ ତୁ କିପରି ବାହା ନ ହେଉ ?"

ଶ୍ରୀକୃଷ୍ଣ କହିଲେ—"ଆରେ ! ବାହାହବାବେଳ ତ ଅଛି, ଏବେ ସେ କଥା କାହିଁକି ? ଏହାପରେ ଭାଇ ବଳରାମଙ୍କ ଆଡ଼କୁ ଚାହିଁ ଭଗବାନ କହିଲେ—"ଭାଇ ! ଆସ୍ତୁ କହ ଦେଖି, ତୁମକୁ କେଉଁ ଖେଳ ଭଲ ଲାଗେ ?"

ବଳରାମ କହିଲେ—"ମୋତେ 'ରାଜା' ଖେଳ ଭାରି ଭଲଲାଗେ । ଜଣେ ରାଜା ହେବ, ତାଙ୍କର ଅନେକ ମନ୍ତ୍ରୀ ହେବେ ଓ ବହୁତ ସୈନିକ ହେବେ । ଅନ୍ୟ ପକ୍ଷେ

ଆଉ ଜଣେ ରାଜା ହେବ, ତା'ର ବ ଅନେକ ମନ୍ତ୍ରୀ ଓ ସେନା ହେବେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେବ । ଏହି ଏକମାତ୍ର ଖେଳରେ ଆମେ ସମସ୍ତେ ସମ୍ମିଳିତ ହୋଇ ଖେଳି ପାରିବା ।

ଏହା ଶୁଣି ଶ୍ରୀକୃଷ୍ଣ କହିଲେ—"ଭାଇ ! ତୁମେ ହିଁ ଆମ୍ଭମାନଙ୍କର ରାଜା ହେବ । ଚାଲ ଏହି ଖେଳ ଖେଳିବା । ତାହାପରେ ଅନେକ ସମୟ ପର୍ଯ୍ୟନ୍ତ ଏହି ଖେଳ ହିଁ ଚାଲିଲା । କୌଣସି ଗୋପ ବାଳକଙ୍କୁ ନାଚବାପାଇଁ ନର୍ତ୍ତକୀ କରାଗଲା ଓ ସେ ରାଜା ହୋଇଥିବା ବଳରାମଙ୍କ ଆଗରେ ନାଚିଲା । ଶ୍ରୀକୃଷ୍ଣ ହେଲେ ପ୍ରଧାନମନ୍ତ୍ରୀ । ସେ ବଳରାମଙ୍କ ପାଖରେ ବସି ରାଜକାର୍ଯ୍ୟ କରିବାରେ ଲାଗିଲେ । ଏତିକିବେଳେ କେତେକ ଗୋପବାଳକ ଭାଟ ହୋଇ ସଭାସ୍ଥଳକୁ ଆସିଲେ, ସେମାନେ ରାଜା ଓ ମନ୍ତ୍ରୀଙ୍କର ପ୍ରଶଂସା କରିବାକୁ ଲାଗିଲେ । ଏହି ଗୋପବାଳକମାନେ ବାସ୍ତବରେ ତ ଦେବତା ଥିଲେ । ତେଣୁ ଏମାନଙ୍କୁ ସବୁ କିଛି ଜଣାଥିଲା ।

ଖେଳରେ ଯେପରି ସ୍ତୁତି କରିବାର କଥା ସେହିପରି ସ୍ତୁତି କରୁଥିଲେ । ଉଭୟଙ୍କର କଣ୍ଠସ୍ୱର ଅତି ସୁନ୍ଦର ଥିଲା ଓ କେଶ ଅତି ଚକ୍‌କଣ ଥିଲା । ଗୋପବାଳକମାନଙ୍କ ସହିତ ବନରେ ସ୍ୱଚ୍ଛନ୍ଦରେ ନାନାପ୍ରକାର କ୍ରୀଡ଼ା କରୁଥିଲେ । ଯେତେବେଳେ ଯିଏ ଯେଉଁ ଖେଳ କଥା ମନେ ପକାଉଥିଲା, ସେ ଦୁହେଁ ସେହି ଖେଳରେ ମାତିଯାଉଥିଲେ । ସେହିପରି ଯେତେ ପ୍ରକାର ଲୋକପ୍ରସିଦ୍ଧ ଖେଳ ପିଲାମାନେ ଖେଳନ୍ତି, ସେମାନେ ସେହି ସମସ୍ତ ଖେଳ ବୃନ୍ଦାବନର ନଦୀ, ପର୍ବତ, କନ୍ଦର, ବନ ଓ କୁଞ୍ଜ ନିକୁଞ୍ଜରେ ସର୍ବଦା ଖେଳୁଥିଲେ । ଖେଳୁ ଖେଳୁ କୃଷ୍ଣଚନ୍ଦ୍ରଙ୍କର ଗୋଟିଏ ଖେଳ କଥା ମନେ ପଡ଼ିଗଲା । ସେ କହିଲେ—ଭାଇ ! "ଘୋଡ଼ାଚଢ଼ା ଖେଳ ଅନେକଦିନ ହେବ ଆମେ ଖେଳି ନ ଥାଉଁ ।"

ସମସ୍ତେ କହିଲେ—"ହଁ, ସେ ଖେଳରେ ଖୁବ୍ ଆନନ୍ଦ ମିଳେ । ଚାଲ ସମସ୍ତେ ମିଶି ସେହି ଖେଳ ଖେଳିବା ।"

ଶ୍ରୀକୃଷ୍ଣ କହିଲେ—"ଖେଳର ଦୁଇଦଳ ମଧ୍ୟରେ କିଏ କିଏ ତେବେ ଦଳପତି ହେବେ ?"

ଶ୍ରୀଦାମା କହିଲେ—"ତୁ ଗୋଟିଏ ଦଳର ଦଳପତି ହୋଇଯା' ଓ ବଳରାମ ଅନ୍ୟ ଦଳର ଦଳପତି ହେଉ ।"

ଏହି କଥାରେ ସମସ୍ତେ ଏକମତ ହେଲେ । ଦୁଇଭାଗ ବସିଗଲେ । ଏହାପରେ ଦୁଇ ଦୁଇଜଣ ବାଳକ ନିଜ ନିଜର ଗୁପ୍ତନାମ ରଖି ପାଖକୁ ଆସିବାକୁ ଲାଗିଲେ । ଆସିବାକ୍ଷଣି କହିଲେ—"ଚୀରଫାଗ୍" । ଏହା ଶୁଣି ଦୁଇ ଦଳପତି କହିଲେ—"ଅର୍ରି-ଫର୍ରି । ଏହାପରେ ଏହି ଦୁଇ ଦଳପତିଙ୍କ ମଧ୍ୟରୁ ଯିଏ "ଚୀରଫାଗ୍" ବୋଲି ନ କହିଲେ, ସେ

ଗୁପ୍ତନାମକୁ ନେଇ ପଚାରଲେ—"ଆମ୍ବ ନେବ ନା ଜାମୁ ନେବ ?" ଏହାଶୁଣି ଅନ୍ୟ ଦଳପତି କହିଲେ—"ଆମ୍ବ"। ଯେଉଁ ପିଲାର ଗୁପ୍ତ ନାମ "ଆମ୍ବ" ରଖାଯାଇଥିଲା, ସେ ସେହି ଦଳରେ ଯାଇ ମିଶିଲା। ଏହିପରି ଭାବରେ ଅନେକ ସମୟ ପର୍ଯ୍ୟନ୍ତ ବଣ୍ଟାବଣ୍ଟି ଚାଲିଲା।

ଯେତେବେଳେ ଗୋପବାଳକମାନେ ଏହି ଖେଳ ଖେଳୁଥିଲେ, ସେତେବେଳେ ଅଘାସୁର (ପ୍ରଲମ୍ବନ) ନାମକ ଏକ ଅସୁର ଶ୍ରୀକୃଷ୍ଣ ଓ ବଳରାମଙ୍କୁ ମାରିବାପାଇଁ ସେଠାକୁ ଆସିଲା। ସେ କୃଷ୍ଣଙ୍କର ବଳ ପରାକ୍ରମ ବିଷୟ ଓ ତାଙ୍କର ପ୍ରଶଂସା ଅନେକଥର ଶୁଣିଥିଲା। ସେଥିପାଇଁ ସେ ଚିନ୍ତାକଲା, ମୁଁ ପ୍ରଥମେ ବଳରାମଙ୍କୁ ମାରିଦେବି। ବଳରାମଙ୍କୁ ମାରିଦେବାପରେ ଶ୍ରୀକୃଷ୍ଣଙ୍କର ବଳ ଅଧା ହୋଇଯିବ। ସେତେବେଳେ ସେ ବଳହୀନ ହୋଇଯିବେ ଓ ମୁଁ ତାଙ୍କୁ ମାରିଦେବି। ଏହା ସ୍ଥିରକରି ସେ ଗୋଟିଏ ଗୋପବାଳକ ବେଶଧାରଣ କଲା। ଯେଉଁ ଗୋପବାଳକ ସେଠାକୁ ଆସି ନ ଥିଲା, ସେ ସେହି ଗୋପବାଳକର ଅବିକଳ ବେଶ ଧାରଣ କଲା। ଅନ୍ୟ କେହି ଏହା ଜାଣି ପାରିଲେ ନାହିଁ। ଭଗବାନ ତାକୁ ନିଜ ଦଳରେ ମିଶାଇଲେ। ତାହାର ଇଚ୍ଛା ମଧ୍ୟ ଥିଲା ଯେ ସେ ଭଗବାନଙ୍କ ପକ୍ଷ ହୋଇ ଖେଳିବ। ଶ୍ରୀକୃଷ୍ଣ ତ ଅନ୍ତର୍ଯାମୀ, ସେ ତ ସମସ୍ତଙ୍କ ଅନ୍ତର କଥା ଜାଣନ୍ତି। ଯେ ତାଙ୍କ ସହିତ ଖେଳିବାକୁ ଚାହୁଁଥିଲା, ତାଙ୍କ ସହିତ ମିଶିବାକୁ ଚାହୁଁଥିଲା, ତାକୁ ଆନନ୍ଦରେ ଖେଳରେ ମିଶାଉଥିଲେ। ତେଣୁ ଯେହି ଗୋପବାଳକରୂପୀ ଛଦ୍ମବେଶଧାରୀ ଅସୁରକୁ ନିଜ ଦଳରେ ମିଶାଇଲେ। ଯେତେବେଳେ ଦୁଇଦଳ ବଣ୍ଟାବଣ୍ଟି ହୋଇ ପୃଥକ୍ ହୋଇଗଲେ, ସେତେବେଳେ ଖେଳ ଆରମ୍ଭ ହୋଇଗଲା।"

ଶୌନକ ଶଙ୍କାଯୁକ୍ତ ହୋଇ ପଚାରିଲେ—"ହେ ସୂତ ! ସେହି ପ୍ରଲମ୍ବନ ଅସୁର (ଅଘାସୁର) କ'ଣ ଖେଳରେ କୌଣସି ଅସୁବିଧା ସୃଷ୍ଟି କଲା ?"

ସୂତ ହସି ହସି କହିଲେ—"ହଁ ମହାରାଜ ! ସେହି ଅଘାସୁର ଭଗବାନଙ୍କ ଖେଳରେ କଣ ବା ବ୍ୟାଘାତ ସୃଷ୍ଟି କରି ପାରନ୍ତା ? ତାହାର ଆଗମନ ମଧ୍ୟ ଏକ ପ୍ରକାର ଖେଳ ଥିଲା। ବଳଦେବ ସେହି ଖେଳରେ ହିଁ ଅଘାସୁର ଓ ଧେନୁକାସୁର ଆଦିଙ୍କୁ ମାର୍ଗ ଦର୍ଶନ କରାଇଥିଲେ। ସେହି ପ୍ରସଙ୍ଗ ମୁଁ ପରେ ଆପଣମାନଙ୍କୁ କହିବି।"

## ଛପ୍ପୟ

ଘୁଡ଼ୁଚଢ଼୍ଢ଼ୀ ଟେକା ଖେଳ ହୋଇ ବୋଲେ ବାଳକ ସବ।
ଦଳପତି ବନି ବଳଶ୍ୟାମ ଉଭୟଦଳ ବାଁଟେ ଗ୍ୱାଲ ତବ ॥

ଶୁଭ ଅବସର ଲଖି ଅସୁର ଗୋପ ବନକେ ତହିଁ ଆୟୋ ।
ପ୍ରଭୁ ପ୍ରଲମ୍ବ ପହ୍ନୁନ ପକ୍ଷ ନଜମାହିଁ ମିଲୟୋ ॥
ହର ହର ନଜ ଦଲ ସହିତ, ଜୀତେ ବଲ ଆଗେ ବଢ଼େ ।
ଶ୍ରୀଦାମା ହରପେ ଚଢ଼୍ୟୋ, ବଲ ପ୍ରଲମ୍ବ ଉପର ଚଢ଼େ ॥



## ପ୍ରଲମ୍ବାସୁର ଉଦ୍ଧାର ଲୀଳା

ପାପେ ପ୍ରଲମ୍ବେ ନିହତେ ଦେବାଃ ପରମନିର୍ବୃତାଃ ।
ଅଭ୍ୟବର୍ଷନ୍ ବଲଂ ମାଲ୍ୟୈଃ ଶଶଂସୁଃ ସାଧୁ ସାଧ୍ୱିତି ॥
(ଶ୍ରୀ ଭା ୧୦ ସ୍କ, ୧୮ ଅ, ୩୨ ଶ୍ଳୋକ)

### ଛପ୍ପୟ

ଶ୍ରୀଦାମାକୁଁ ଲଦ୍ୟୋ ଶ୍ୟାମ ନରଖେଁ ମୁର ଭ୍ରୂରକେଂ ।
ବଲକୁଁ ଲୀଦ୍ୟୋ ଅସୁର ବେଗତେଂ ଚଲେ ଉଚ୍ଛରକେଂ ॥
ହଁସି ଶ୍ରୀଦାମା କହେଂ ହମାରେ ଘୋଡ଼ା ଅଡ଼ୟୋଲ ।
ବଲଦାଊ କୋ ଭଗେ ଦେଖିବେ ମହଁ ଜୋ ସଡ଼ୟୋଲ ॥
ସଂକର୍ଷନକୁଁ ଲୈ ଅସୁର, ଦାଇତେଂ ଆଗେ ବଢ଼୍ୟୋ ।
ଗୋପରୁପ ତଜି ରୁପ ନିଜ, ଧାରନ କର ନଭମହଁ ଉଢ଼୍ୟୋ ॥

ବାହାରର ରୂପକୁ ଦେଖି କିଏ ସୁର ଓ କିଏ ଅସୁର ତାହା ସହଜରେ ଜଣାପଡ଼େ ନାହିଁ । ଯାହାର ମନ ସର୍ବଦା ମନମୋହନଙ୍କଠାରେ ଯୁକ୍ତ ହୋଇଛି, ସେହି ହିଁ ସୁର ଓ ବାହାରକୁ ଯେ ଯେତେ ସୁନ୍ଦର ବେଶରେ ସୁସଜ୍ଜିତ ହୋଇଥାଉ ନା କାହିଁକି ସେ ଅସୁର ଓ ସେ ବଧ୍ୟ । ପୁନଶ୍ଚ ଅସୁର ହୋଇ ଯେ ଭଗବାନଙ୍କଠାରେ ଦ୍ୱେଷ କରେ, ଭଗବାନଙ୍କ ସହିତ ଖେଳେ, ଭଗବାନଙ୍କୁ ଛଳନା କରେ, ଭଗବାନଙ୍କୁ ପିଠିରେ ପକାଇ ନେଇଯାଏ, ସେ ଭଗବାନଙ୍କ ସଂସର୍ଗରେ ଆସିଥିବାରୁ ମୁକ୍ତ ହୋଇଯାଏ ।

ସୂତ କହୁଛନ୍ତି—"ମୁନିଗଣ ! ଗୋପବାଳକମାନଙ୍କ ସହିତ ଭଗବାନ 'ଘୁଡ଼ଚଢ଼ୀ ଖେଳ' (ଘୋଡ଼ାଚଢ଼ା ଖେଳ) ଖେଳୁଥାଆନ୍ତି । ଦୁଇଟି ଦଳ ହୋଇଥାଏ । ଏକ ଦଳର ଦଳପତି ସ୍ୱୟଂ ଦାମୋଦର ଓ ଅନ୍ୟ ଦଳର ଅଧିପତି ସଙ୍କର୍ଷଣାବତାର ଭଗବାନ ବଳଦେବ ଥାଆନ୍ତି । ବଳଦେବଙ୍କ ଦଳର ପିଲାମାନେ କୌଣସି ଏକ ପ୍ରଶ୍ନ ପଚାରିବାରୁ ଶ୍ରୀକୃଷ୍ଣଙ୍କ ଦଳର ପିଲାମାନେ ତାହାର ଉତ୍ତର ଦେଇପାରିଲେ ନାହିଁ । ପ୍ରତ୍ୟେକଙ୍କ ହୃଦୟ କଥା ଜାଣୁଥିବା ଅନ୍ତର୍ଯାମୀ ଭଗବାନ୍ ବାସୁଦେବ ମଧ୍ୟ ଏହା କହି ପାରିଲେ ନାହିଁ । ତେଣୁ ଶ୍ରୀକୃଷ୍ଣଙ୍କ ଦଳ ହାରିଗଲେ ଓ ବଳଦେବଙ୍କ ପକ୍ଷର ପିଲାମାନେ ଜିତିଗଲେ । ପ୍ରଥମରୁ ଏହି ନିୟମ ରଖା ଯାଇଥିଲା ଯେ, ଯେଉଁ ପକ୍ଷ ହାରିଯିବ ସେହି ପକ୍ଷର ପିଲାମାନଙ୍କ ପିଠି ଉପରେ ଜିତିଥିବା ପକ୍ଷର ପିଲାମାନେ ଚଢ଼ି ଭାଣ୍ଡୀର ନାମକ ବଟବୃକ୍ଷ ପର୍ଯ୍ୟନ୍ତ ଯିବାକୁ ହେବ । ସେଠାରୁ ଭାଣ୍ଡୀର ବୃକ୍ଷ ଅଳ୍ପ ଦୂରରେ ଥିଲା । ଏବେ ବଳଦେବଙ୍କ ପକ୍ଷର ପିଲାମାନେ ବିଜୟ ଉଲ୍ଲାସରେ ତାଳମାରି ନୃତ୍ୟ କରିବାକୁ ଲାଗିଲେ । ଶ୍ରୀକୃଷ୍ଣଙ୍କ ଦଳର ପିଲାମାନଙ୍କ ମୁହଁ ଶୁଖିଗଲା; କିନ୍ତୁ ପ୍ରତିଜ୍ଞାନୁସାରେ ତ ବଳଦେବଙ୍କ ଦଳର ପିଲାମାନଙ୍କୁ ପିଠିରେ ବସାଇ ଭାଣ୍ଡୀର ବଟଯାଏ ସେମାନଙ୍କୁ ଯିବାକୁ ପଡ଼ିବ । ଶ୍ରୀଦାମା ଦୌଡ଼ିଯାଇ ଶ୍ରୀକୃଷ୍ଣଙ୍କ ହାତ ଧରି ପକାଇ କହିଲା—"ଏହାଙ୍କୁ ତ ମୁଁ ମୋ ଘୋଡ଼ା କରିବ ।"

ଅନ୍ୟଜଣେ ଗୋପବାଳକ କହିଲା—"ଆରେ ଯା, ଯା ! ଆମ ନନ୍ଦଲାଲଙ୍କୁ ତୁ ଘୋଡ଼ା କରିବୁ ?"

ଶ୍ରୀଦାମା ଆଗରେ କହିଲା—"ନନ୍ଦଲାଲ ତାଙ୍କ ରାଜକୁମାର ପଣିଆ ଘରେ ଦେଖାଇବେ । ଖେଳରେ କିଏ କାହାର ପ୍ରଭୁ ବା କିଏ କାହାର ସେବକ ? ଖେଳରେ ସମସ୍ତେ ସମାନ । ଯେ ଖେଳରେ ଜିତିଯାଏ, ସେ ବଡ଼ । ଦିଶଟି ଗାଈ ଅଧିକ ହୋଇଗଲେ କେହି କେବେ ବଡ଼ ହୁଏନାହିଁ ।"

ଭଗବାନ କହିଲେ—"ଆଚ୍ଛା, ତେବେ ଠିକ୍ ଅଛି । ତୋତେ ମୁଁ ପିଠିରେ ବସାଇ ଭାଣ୍ଡୀର ବଟଯାଏ ନେଇଯିବି, ବଳରାମ ଭାଇନାକୁ କିଏ ପିଠି ଉପରେ ବସାଇ ନେବ ?"

ଏହି ସମୟରେ ଗୋପବାଳକ ବେଶରେ ଆସିଥିବା ପ୍ରଲମ୍ବାସୁର କହି ଉଠିଲା—"ମୁଁ ବଳଦେବଙ୍କୁ ପିଠି ଉପରେ ବସାଇ ନେଇଯିବି ।"

ଶ୍ରୀକୃଷ୍ଣଚନ୍ଦ୍ର ତ ତାହା ହିଁ ଚାହୁଁଥିଲେ । ସେ ସାଧୁ, ସାଧୁ କହି ହସି ହସି ସମ୍ମତି ପ୍ରଦାନ କଲେ । ଇତ୍ୟବସରରେ 'ବୃଷଭ' ହଠାତ୍ କହିଲା—"ମୁଁ ଭଦ୍ରସେନ ଉପରେ ବସିବି ।" ଏହିପରି ଭାବରେ ବଳଦେବଙ୍କ ଦଳର ସମସ୍ତ ବିଜୟୀ ଗୋପବାଳକ ପରାଜିତ ଶ୍ରୀକୃଷ୍ଣଙ୍କ ଦଳର ସମସ୍ତ ବାଳକଙ୍କୁ ଘୋଡ଼ା କରିଦେଲେ । ଭଗବାନ ଶ୍ରୀକୃଷ୍ଣଙ୍କ ଦୃଷ୍ଟି ତ

ପ୍ରଳମ୍ବାସୁର ଉପରେ ଚଢ଼ିଥିଲ, ସେ ସଦା ତା' ଉପରେ ସତର୍କ ଦୃଷ୍ଟି ରଖିଥିଲେ । ଭଗବାନ ଶ୍ରୀକୃଷ୍ଣ ନିଜେ ଶ୍ରୀଦାମାଙ୍କୁ ପିଠି ଉପରେ ବସାଇ ଆଗେ ଆଗେ ଗ୍ଲଲେ । ଦୁଷ୍ଟ ପ୍ରଳମ୍ବାସୁର ଖେଳ ଦେଖୁଥିଲା । ସେ ଯେତେବେଳେ ଦେଖିଲା ଯେ ଶ୍ରୀକୃଷ୍ଣ ଆଗେ ଆଗେ ଗ୍ଲଲଯାଉଛନ୍ତି, ସେତେବେଳେ ସେ ବଳରାମଙ୍କୁ ପିଠି ଉପରେ ବସାଇ ଧାଇଁଲା ।

ବଳରାମଙ୍କର ସେତେବେଳେ ଜୋର୍‌ରେ ଭାଙ୍ଗ ନିଶା ହୋଇଥାଏ । ସେ ହସି ହସି କହିଲେ—"ଭାଇ ! ଅନ୍ୟମାନଙ୍କର ଘୋଡ଼ା ତ ଅଳସୁଆ, କୌଣସିଟି ଅଗ୍ରଗାମୀ ନୁହନ୍ତି । ମୋତେ ଗୋଟିଏ ଘୋଡ଼ା ମିଳିଛି ଯେ, ସେ ପବନ ସହିତ କଥାବାର୍ତ୍ତା କରୁଛି ।"

ଶ୍ୟାମସୁନ୍ଦର ଏହା ଶୁଣି ହସି ହସି କହିଲେ—"ଭାଇନା ! ଆଗକୁ ଚାହାନ୍ତୁ ଆପଣଙ୍କ ଘୋଡ଼ା କପର ରଙ୍ଗ ବଦଳାଉଛି । ଟିକିଏ ସାବଧାନ ହୋଇ ଏ ଘୋଡ଼ାକୁ ଚଳାଇବେ ।"

ଭଗବାନ ଶ୍ରୀଦାମାଙ୍କୁ ପିଠିରେ ବସାଇ ଏହି କଥା କହୁଥିଲେ । ଏହି ସମୟ ମଧ୍ୟରେ ସେହି ଅସୁର ବହୁଦୂର ଅତେଇ ଗଲା । ଘୋଡ଼ାରେ ଚଢ଼ି ଭାଣ୍ଡୀର ବଟ ପର୍ଯ୍ୟନ୍ତ ଯିବାର କଥା । ସେହି ସ୍ଥାନକୁ ହିଁ ସମସ୍ତେ ପହଞ୍ଚିବାର ନିର୍ଦ୍ଦିଷ୍ଟ ସ୍ଥଳ ବୋଲି ସ୍ଥିର କରିଥିଲେ; କିନ୍ତୁ ପ୍ରଳମ୍ବାସୁର ବଳଦେବଙ୍କୁ ସେ ସ୍ଥାନରୁ ଅନ୍ୟତ୍ର ଅନେକ ନେଇଗଲା । ଯଦିଚ ଧରଣୀଧରଙ୍କୁ (ଶେଷଦେବଙ୍କୁ) ଧାରଣ କରିବା ସାଧାରଣ କାର୍ଯ୍ୟ ତଥା ଏତେ ସହଜସାଧ୍ୟ ନ ଥିଲା, ତଥାପି ସେ ତ ଅସୁର ଥିଲା, ଯେତେବେଳେ ସେ ଦେଖିଲା ଯେ ବର୍ତ୍ତମାନ ସେ ଗୋପବାଳକମାନଙ୍କ ଦୃଷ୍ଟିର ଅନ୍ତରାଳକୁ ଗ୍ଲଲି ଆସିଲଣି, ସେତେବେଳେ ସେ ନିଜର ସ୍ୱାଭାବିକ ଦୈତ୍ୟରୂପ ଧାରଣ କଲା ।

ତାହାର ବର୍ଣ୍ଣ କଳା ଥିଲା । ଦେଖିବାକୁ ସେ ଦକ୍ଷଯୁକ୍ତ ଅଞ୍ଜନ ପର୍ବତ ଭଳି ପ୍ରତୀତ ହେଉଥିଲା । ତା' କଳା ଶରୀର ଉପରେ ସ୍ୱର୍ଣ୍ଣିତ ଅଳଙ୍କାର ଏପରି ପ୍ରତୀତ ହେଉଥିଲା ଯେ ସତେ ଯେପରି ସୌଦାମିନୀ ସୁଦାମା ପର୍ବତରୁ ପ୍ରକାଶ ନ ହୋଇ ଅଞ୍ଜନ ପର୍ବତରୁ ପ୍ରକାଶ ହେଉଛି । ସେହି ପର୍ବତ ଶିଖର ସଦୃଶ ଅସୁର ଉପରେ ବସି ବଳଦେବ ଏପରି ପ୍ରତୀତ ହେଉଥିଲେ ଯେ, ସତେ ଯେପରି ଶରତ ଆକାଶର ପୂର୍ଣ୍ଣଚନ୍ଦ୍ରଙ୍କୁ ବିଦ୍ୟୁତ ଝଲକ ବିମଣ୍ଡିତ କୃଷ୍ଣ ବର୍ଣ୍ଣର ମେଘ ପିଠି ଉପରେ ବସାଇ ଆକାଶରେ ଭାସିଯାଉଛି । ଏବେ ସେ ଆଉ ଭୂମି ଉପରେ ନ ଗ୍ଲଲି ଆକାଶରେ ଉଡ଼ିବାକୁ ଲାଗିଲା । ବଳରାମଙ୍କର ଏତିକିବେଳେ ଚେତା ଆସିଲା । ସେ ଭାବିଲେ—"କୃଷ୍ଣ ଯାହା କହୁଥିଲା ବାସ୍ତବ କଥା ।" ଏ ଘୋଡ଼ା ତ ରଙ୍ଗ ବଦଳାଇବାରେ ଲାଗିଛି । ବସୁଧାକୁ ଛାଡ଼ି ଆକାଶରେ ଉଡ଼ୁଯାଉଛି । ଛୋଟ ଥିଲା, ସଙ୍ଗେ ସଙ୍ଗେ ବଡ଼ ହୋଇଗଲା । ଗୋପ ବାଳକରୁ ଅସୁର ହୋଇଗଲା । ଏହାର କଳା ମଚମଚ ଶରୀରକୁ କନକର କଟକ, କଙ୍କଣ ଓ କୁଣ୍ଡଳରେ ଭୂଷିତ କରି ଚତୁର୍ଦ୍ଦିଗ

ଅନ୍ଧକାରରେ ଉଦ୍ଭାସିତ କରିଦେଉଛନ୍ତି । ଏହାର ନେତ୍ର ବଦ୍ୟୁତ୍ ସଦୃଶ ଜଳୁଛି । ଏହାର ଲମ୍ବା ଲମ୍ବା ଧାରସ୍ୱରୂପ ଭ୍ରୂକୁଟି ଏ ମୁଣ୍ଡରୁ ସେ ମୁଣ୍ଡକୁ ଲାଗିଛି । ଏହାର ନାଲି ନାଲି ଝାଆଁସା କେଶ ଅଗ୍ନିଶିଖା ସଦୃଶ ପ୍ରଜ୍ଜ୍ୱଳିତ ହେଉଛି । ନିଶ୍ଚିତଭାବେ ଏ ଗୋଟିଏ ମାୟାବୀ ଅସୁର ।" ଏହା ଭାବିବାମାତ୍ରେ ବଳଦେବ ଟିକିଏ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ ।

ପୁନଶ୍ଚ ସେ ଚିନ୍ତାକଲେ—"ଆରେ, ମୁଁ ତ ସଙ୍କର୍ଷଣାବତାର । ଏ ତୁଚ୍ଛ ଅସୁରଟା ପୁଣି ମୋତେ ଭୟ ଦେଖାଉଛି । ମୁଁ କ'ଣ ଏହାକୁ କେବେ ଭୟ କରିପାରେ ।" ଏହା ଚିନ୍ତାକରି ସେ ଅସୁର ଉପରେ ଚୁପ୍‌ଚାପ ସାବଧାନ ହୋଇ ବସି ସବୁ ଉପଦ୍ରବ ସହ୍ୟକରି ନେଲେ ଓ ତାକୁ ଧନାପହାରୀ ଚୋର ସଦୃଶ ଦୌଡ଼ୁଥିବାର ଦେଖି ବଳରାମ ତାକୁ ଅଟକାଇଲେ; କିନ୍ତୁ ସେ କ'ଣ ଅଟକିବାର ଘୋଡ଼ା ଥିଲା । ସେ ବଳଦେବଙ୍କୁ ଦେଖି ଘୂରାଇଲା ।

ବଳଦେବ କହିଲେ—"ଆରେ, ଘୋଡ଼ା ! ତୁ ବାଟବଣା ହୋଇଗଲୁ ନା କ'ଣ ? ପଛକୁ ଫେରି ଚାଲ୍ ।"

ଏହା ଶୁଣିବାକ୍ଷଣି ସେ ନାଲି ନାଲି ଆଖି ଦେଖାଇ ବଳରାମଙ୍କ ଆଡ଼କୁ କ୍ରୋଧରେ ଚାହିଁବାକୁ ଲାଗିଲା । ବଳରାମ କହିଲେ—"ଦେଖ୍ ଘୋଡ଼ା ! ତୁ ଘୋଡ଼ା ଭଳି ରହିଲେ ତୋର ମଙ୍ଗଳ ହେବ । ଯଦି ତୁ କୌଣସି ବ୍ୟତିକ୍ରମ କରୁ, ରେ ବାଳକ ! ତୋତେ ମାରି ମାରି ଶେଷ କରିଦେବି ।"

ଏବେ ଅସୁରର ଆଉ କାହାରିକୁ ଭୟ କରିବାର ନ ଥାଏ । ସେ ଭାବୁଥାଏ, ଏବେ ବଳରାମ ମୋ' ହାତମୁଠାରେ । ସେ ଆନନ୍ଦରେ ନାଚକୁଦ କରିବାକୁ ଆରମ୍ଭ କରିଦେଲା । ବଳରାମ ଇତ୍ୟବସରରେ ନିଜକୁ ସମ୍ଭାଳି ନେଇ ନିଜର ହାତମୁଠାକୁ ଟାଣିକରି ଅସୁରର ମୁଣ୍ଡ ଉପରେ ଏକ ବିଧା ମାରିଲେ । ବିଧାମାଡ଼ ବସିଯିବାକ୍ଷଣି ଅସୁରର ଶିର ପାଚିଲା ଫୁଟି ସଦୃଶ ଛିନ୍ନଛିନ୍ନ ହୋଇ ଫାଟିଗଲା ଓ ଅସୁର ରକ୍ତବାନ୍ତି କରି ପକାଇ ଆକାଶରୁ ଭୂମିରେ ଖସି ପଡ଼ିଲା । ବଳରାମଙ୍କ ବିଧା ସାଧାରଣ ବିଧା ନ ଥିଲା, ତାହା ସମ୍ଭାଳିବା କାହାରି ପକ୍ଷେ ସମ୍ଭବ ନୁହେଁ । ପାହାଡ଼ ଭଳି ସେହି ଡେଉଲ ଡାଉଲ ଅସୁରଟି ଇନ୍ଦ୍ରଧନୁ ଭଳି ଭୟଙ୍କର ଶବ୍ଦ କରି ଆକାଶରୁ ଭୂମି ଉପରେ ଖସିପଡ଼ି ସଙ୍ଗେ ସଙ୍ଗେ ମରିଗଲା । ବଳରାମ ତା' ଉପରୁ ଓହ୍ଲାଇ ତାକୁ ଦେଖିବାକୁ ଲାଗିଲେ ।

ଇତ୍ୟବସରରେ ପଛରେ ନିଜ ନିଜ ଘୋଡ଼ାରେ ଚଢ଼ି ଆସି ସମସ୍ତ ଗୋପବାଳକ ଭଣ୍ଡୀରବଟ ନିକଟରେ ପହଞ୍ଚିଗଲେ । ସେଠାରେ ସେ ବଳରାମଙ୍କୁ ଦେଖିବାକୁ ପାଇଲେ ନାହିଁ । ଅସୁର ମରିବାର ଭୟଙ୍କର ଶବ୍ଦକୁ ଅନୁସରଣ କରି ସେମାନେ ଦୌଡ଼ି ଯାଇ

ବଲରାମଙ୍କ ନିକଟରେ ପହଞ୍ଚିଲେ । ସେଠାକୁ ଆସି ସେମାନେ ଦେଖିଲେ ବିକଟାଳ ରୂପଧାରଣ କରିଥିବା ସେହି କ୍ରୂରକର୍ମା ଅସୁର ସେଠାରେ ମରି ପଡ଼ିଛି । ସମସ୍ତେ ଏହି ରହସ୍ୟ ଅବଗତ ହେଲେ । ଶ୍ରୀକୃଷ୍ଣ ହସି ହସି କହିଲେ—"ଭାଇନା ! ତୁମ ଘୋଡ଼ା ତ କ୍ଷଣକ ମଧ୍ୟରେ ଛୋଟରୁ ବଡ଼ ଓ ପତଳାରୁ ମୋଟା ହୋଇଯାଇଛି ।"

ବଲରାମ ହସି ହସି କହିଲେ—"ଅରେ ଭାଇ ! ତୁ ଭଲ ଘୋଡ଼ା ପରୀକ୍ଷା କରି ଜାଣୁ । ତୁ ତାହାର ସ୍ଥୂଳ ଚଳଣକୁ ଲକ୍ଷ୍ୟ କରି ପ୍ରଥମରୁ ହିଁ ମୋତେ କହିଥିଲୁ ଯେ, ସେ ହେଉଛି ଏକ ରଙ୍ଗ ପରିବର୍ତ୍ତନକାରୀ ଘୋଡ଼ା । ତେଣୁ ସେ ଏଠାକୁ ଆସି ରଙ୍ଗ ବଦଳାଇ ପଡ଼ିଛି । ମୁଁ ତାକୁ ପରଲୋକ ପଠାଇ ଦେଇଛି ।"

ଗୋପାଳବାଳକମାନେ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ—"ଆରେ, ଏ ତ ଅସୁରଟାଏ । ସେମାନେ ବଲରାମଙ୍କୁ ପ୍ରଶଂସା କରି କହିଲେ—"ଭାଇ ! ତୁ ଅତି ପ୍ରଶଂସନୀୟ କାର୍ଯ୍ୟ କରିଛୁ । ଏ ଦୁଷ୍ଟ ଯୋଗକୁ ତୋ' ଘୋଡ଼ା ହୋଇଥିଲା । ସେ ଯଦି ଆମ୍ଭମାନଙ୍କ ମଧ୍ୟରୁ କାହାର ଘୋଡ଼ା ହୋଇ ଆମକୁ ନେଇ ଯାଇ ଥାଆନ୍ତା ନା, ଆମକୁ ମାରି ଦେଇଥାଆନ୍ତା । ତୁ ଆମ୍ଭମାନଙ୍କ ଅପେକ୍ଷା ଅଧିକ ବଳବାନ୍ ଥିଲୁ । ଭଗବାନ କରନ୍ତୁ, ତୁ ଯୁଗ ଯୁଗ ଧରି ଜୀବିତ ରହି ଏହିପରି ଆମ୍ଭମାନଙ୍କୁ ବିପଦରୁ ଉଦ୍ଧାର କରୁଥା । ପୁନଶ୍ଚ ଦେବତାମାନଙ୍କର କଣ୍ଟକ ଏହି ଅସୁରମାନଙ୍କୁ ସଂହାର କରୁଥା' ।"

ସୂତ କହୁଛନ୍ତି—"ମୁନିଗଣ ! ସମସ୍ତ ଗୋପାଳବାଳକ ବଳଶାଳୀ ବଲରାମଙ୍କୁ ଏହି ପ୍ରକାର ଅନେକ ପ୍ରଶଂସା କଲେ । ଅନେକ ଧନ୍ୟବାଦ ଦେଲେ । ପ୍ରେମରେ ବିହ୍ୱଳିତ ହୋଇ ସମସ୍ତେ ତାଙ୍କୁ ଆଲିଙ୍ଗନ କଲେ । ସମସ୍ତେ ଆନନ୍ଦରେ ବିଭୋର ହୋଇ ତାଙ୍କୁ ହୃଦୟରେ ଚାପିବାକୁ ଲାଗିଲେ । ସେହି ପାପୀ ଦୁଷ୍ଟ ଅସୁର ମରିଯିବାରୁ ସ୍ୱର୍ଗର ଦେବତା-ମାନେ ମଧ୍ୟ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ବଳଦେବଙ୍କ ଉପରେ ପୁଷ୍ପବୃଷ୍ଟି କରି ନିଜ ନିଜର ପ୍ରସନ୍ନତା ପ୍ରକାଶ କରିବାକୁ ଲାଗିଲେ ।"

ବଲରାମ ପ୍ରଲମ୍ବାସୁରକୁ ମାରିବାପରେ ସମସ୍ତ ଗୋପବାଳକ ପୁଣି ଭାଣ୍ଡୀରବଟ ମୂଳେ ଖେଳରେ ମାତିଗଲେ । ଖେଳୁ ଖେଳୁ ସେମାନେ ଖେଳରେ ଏପରି ତନ୍ମୟ ହୋଇଗଲେ ଯେ, ଗୋରୁଗାଈଙ୍କ ସମ୍ବନ୍ଧରେ କେହିହେଲେ ଭାବିଲେ ନାହିଁ । ଗୋରୁଗାଈ ଚରିଚରି ଅନେକ ଦୂର ପର୍ଯ୍ୟନ୍ତ ଚାଲିଗଲେ । ଏହାପରେ ଯେଉଁ ଅଦ୍ଭୁତ ଲୀଳା ହେଲା, ତାହା ମୁଁ ବର୍ଣ୍ଣନା କରୁଛି ।

## ଛପ୍‌ପୟ

ଅଂଜନ ପରବତ ସରସ ଉତୈ ନଭମହଁ ଜନୁ ସିତ ଧନ ।
ପ୍ରଥମ ଡ଼ରେ ବଲଦେବ ଫେର ସମହରେ ସଙ୍କରଷନ ॥

ମସ୍ତକ ମୁକ୍କା ମାରି ଅସୁରକେ ସିରକୁଁ ଫାରେଯା ।
ଯ୍ୟୋଂ ପ୍ରଲମ୍ବକୁଁ ତୁରତ ରୋହିଣୀନନ୍ଦନ ମାରେଯା ।।
ଗ୍ୱାଲ-ବାଲ ସବ ଆଇକେଂ, ସାଧୁବାଦ ବଲକୁଁ ଦୟୋ ।
ଲଖି ବଲ ଦ୍ୱାରା ଅସୁର ବଧ, ଅତି ଅତି ବିସ୍ମୟ ସବକୁଁ ଭୟୋ ।।



## ଶ୍ରୀହରିଙ୍କ ଦ୍ୱାରା
## ବନାଗ୍ନିରୁ ଗୋରୁ ଓ ଗୋପଙ୍କର ରକ୍ଷା

ତମାପତନ୍ତଂ ପରିତୋ ଦବାଗ୍ନିମ୍
ଗୋପାଶ୍ଚ ଗାବଃ ପ୍ରସମୀକ୍ଷ୍ୟ ଭୀତାଃ ।
ଊଚୁଶ୍ଚ କୃଷ୍ଣଂ ସବଲଂ ପ୍ରପନ୍ନା
ଯଥା ହରିଂ ମୃତ୍ୟୁଭୟାର୍ଦ୍ଦିତା ଜନାଃ ।।

(ଶ୍ରୀ ଭା ୧୦ ସ୍କ, ୧୯ ଅ, ୮ ଶ୍ଳୋକ)

### ଛପ୍ପୟ

ପୁନି ଭାଣ୍ଡୀରକ ନିକଟ ଆଇ ଖେଲେ ସବ ବାଲକ ।
ଗୈୟାଁ ନିକସୀଂ ଦୂରି ଖେଲମହଁ ତନ୍ମୟ ପାଲକ ।।
ଆଇ ପୁନି ଜବ ୟାଦ ଢୂଁଢ଼ିବେ ଗୈଅନି ଲାଗେ ।
ଦାବାନଲକୁଁ ଦେଖି ଗ୍ୱାଲ ସବ ଭେମନ ଲାଗେ ।।
ବଷଦ ସଘନବନ ମୂଁ ଜକେଂ, ଦାବାନଲ-ତେଂ ସବ ଜରେଂ ।
ଡକରତେଂ ଫଁସି ଧେନୁ ତହଁ, ଗ୍ୱାଲ ଲପଟ ଲଖି ଅତି ଡରେ ।।

ଏ ସଂସାର ପୁଷ୍ପବିଭୂଷିତ ଅଟବୀ ସଦୃଶ । ଏଠାରେ ଜୀବ ମଧୁରତା ଆସ୍ୱାଦନ ପାଇଁ, ଆନନ୍ଦପାଇଁ ଓ ପ୍ରାଣକୁ ତୃପ୍ତ କରିବାପାଇଁ ଚେଷ୍ଟାକରେ ଓ ସେହି ଫାନ୍ଦରେ

ପଡ଼ଯାଏ । ଏ ସାଂସାରିକ ବସ୍ତୁଗୁଡ଼ିକୁ ଆପଣାର ବୋଲି ଭାବି ତାହାର ରକ୍ଷଣା ବେକ୍ଷଣ ସକାଶେ ସର୍ବଦା ଧାଇଁଥାଏ, ଚେଷ୍ଟା କରୁଥାଏ; କିନ୍ତୁ ତାହା ରକ୍ଷଣାବେକ୍ଷଣ କରିବା ଦୁରୁହ ହୋଇପଡ଼େ, ନିଜେ ତହିଁରେ ଆବଦ୍ଧ ହୋଇଯାଏ । ଏହି ସଂସାରରୂପୀ ଘଞ୍ଚ ଅରଣ୍ୟରେ ସୁଖ କାହିଁ ? ଶାନ୍ତି କାହିଁ ? ଚତୁର୍ଦ୍ଦିଗରେ କେବଳ ଅଗ୍ନିର ତାପ, ଦୁଃଖ, ଶୋକ ଓ ଅଶାନ୍ତିର କୋଳାହଳ ଉଠୁଅଛି । ଜୀବ ଏହି ତାପରୁ ରକ୍ଷା ପାଇପାରୁ ନାହିଁ । ଅନ୍ୟ ବ୍ୟକ୍ତି ତାକୁ ସାହାଯ୍ୟ କରିପାରୁନାହିଁ । କାରଣ ସେ ମଧ୍ୟ ଏହି ତାପରେ ତାପିତ । ଜ୍ୱଳନ୍ତ ଅଗ୍ନି କୁଣ୍ଡରେ ଯାହା କିଛି ରହୁ ନା କାହିଁକି ସେ ବି ସେହି ତାପରେ ଦଗ୍ଧ ହେବ । ଯେ ନିଜେ ଜଳୁଛି, ସେ ଅନ୍ୟକୁ କିପରି ରକ୍ଷା କରି ପାରିବ ? ଯେ ନିଜେ ଜଳରେ ବୁଡ଼ି ମରୁଛି, ସେ ବୁଡ଼ି ଯାଉଥିବା ଲୋକକୁ କିପରି ଉଦ୍ଧାର କରିବ ? ଯାହାକୁ ସର୍ପ ଦଂଶନ କରିଥାଏ, ସେ ଅନ୍ୟକୁ ସର୍ପ ମୁଖରୁ କିପରି ରକ୍ଷା କରିବ ? ଯେ ସର୍ବାତ୍ମଭାବରେ ଭଗବାନଙ୍କର ଶରଣ ନିଏ, ତାଙ୍କୁ ବିକଳ ହୋଇ ଡାକେ, ସେ ଏହି ଭବାଟବୀରୁ ଉଦ୍ଧାର ପାଏ । ତାହାର ସମସ୍ତ ଦୁଃଖ ଦୂର ହୁଏ । ଶରଣାଗତ ବତ୍ସଳ ପ୍ରଭୁ ତାକୁ ଶରଣ ଦେଇଥାଆନ୍ତି ଓ ସମସ୍ତ ପ୍ରକାର ବିପତ୍ତିରୁ ତାକୁ ରକ୍ଷା କରିଥାଆନ୍ତି । ସେ ସଂସାରରୂପକ ଅନଳରେ ତାପିତ ଜୀବଙ୍କୁ ରକ୍ଷା କରନ୍ତି । ତାକୁ ସନ୍ତାପରୁ ଉଦ୍ଧାର କରି ଶାନ୍ତି ପ୍ରଦାନ କରନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ବଳରାମ ପ୍ରଳମ୍ବାସୁରକୁ ମାରି ଶ୍ରୀକୃଷ୍ଣ ଓ ଗୋପବାଳକମାନଙ୍କ ସହିତ ପୁନଶ୍ଚ ଭାଣ୍ଡୀରବଟ ନିକଟକୁ ଆସିଲେ । ବଟ ମୂଳରେ କୋମଳ ବାଲୁକାରାଶି ବିଛା ହୋଇଥିଲା । ଘଞ୍ଚବୃକ୍ଷର ସୁନ୍ଦର ଶୀତଳ ଛାୟାରେ ବସି ସମସ୍ତ ଗୋପବାଳକ ପୁନଃ କ୍ରୀଡ଼ା କରିବାକୁ ଲାଗିଲେ । ପିଲାଙ୍କ ଖେଳ ଦେଖିବାକୁ ସମସ୍ତେ ଭଲ ପାଆନ୍ତି । ଶ୍ରୀକୃଷ୍ଣ ତ ସହଜେ କ୍ରୀଡ଼ାପ୍ରିୟ । ସେ ଏହି ପିଲାଖେଳରେ ଏପରି ତନ୍ମୟ ହୋଇ ଯାଇଥିଲେ ଯେ, ତାଙ୍କର ଗୋ-ଗୋଷ୍ଠ ପ୍ରତି ଧ୍ୟାନ ନ ଥିଲା । ସେମାନେ ଯମୁନା କୂଳେ କୂଳେ ଚରିଚରିକା ଅନେକ ବାଟ ଚାଲି ଯାଇଥିଲେ । ଅନେକ ମେଷପାଳକ ଅନେକ ପଶୁ ଚରାଇବାପାଇଁ ଶ୍ରୀକୃଷ୍ଣଙ୍କ ସହିତ ସେଠାକୁ ଯାଇଥିଲେ । ସେମାନଙ୍କର ମେଣ୍ଢା ଓ ଛେଳିମାନେ ଗୋରୁଙ୍କ ସହିତ ଏକାଠି ଥିଲେ । ସେଗୁଡ଼ିକ ମଧ୍ୟ ଚରିଚରିକା ଗୋରୁଙ୍କ ସହିତ ଚାଲି ଯାଇଥିଲେ । ଗ୍ରୀଷ୍ମ କାଳ, ଘୋର ଅରଣ୍ୟ, ପଥ ମଧ୍ୟରେ କୌଣସି ଜଳାଶୟ ନ ଥାଏ । ଗ୍ରୀଷ୍ମ ତାପରେ ପଶୁମାନଙ୍କ ଗଳା ଶୋଷ ହେଉଥାଏ । ତୃଷାର୍ତ୍ତ ହେଉ ସେମାନେ ଉଚ୍ଚ ସ୍ୱରରେ ରଡ଼ି ଛାଡ଼ୁଥାଆନ୍ତି । କଷ୍ଟ ସହି ଏକ ବନରୁ ଅନ୍ୟ ବନରୁ ଜଳ ଅନ୍ୱେଷଣ କରିବା ପାଇଁ ଧାଇଁ ଆଥାନ୍ତି ।

କିଛି ସମୟ ପରେ ଶ୍ରୀକୃଷ୍ଣ କହିଲେ—"ଆରେ ଗ୍ୱାଲ ! ତୁମ୍ଭେମାନେ ତ ଏଠାରେ ଆନନ୍ଦରେ ଖେଳରେ ମାତିଛ, ଗୋରୁଗାଈଙ୍କ କଥା ତୁମ୍ଭମାନଙ୍କର ସ୍ମରଣ ଅଛି ତ ?"

ଗୋରୁଙ୍କ କଥା ଶୁଣିବା ମାତ୍ରେ ସମସ୍ତେ କାନ ଡେରିଲେ, ଏବେ ସେମାନେ ଆଉ ଖେଳିବେ କ'ଣ, ଗଛ ଉପରେ ଚଢ଼ି ଚାରିଆଡ଼କୁ ନିରୀକ୍ଷଣ କଲେ । ଗଛର ସର୍ବୋଚ୍ଚ ଭାଗକୁ ଚଢ଼ିଗଲେ ; କିନ୍ତୁ ଗୋରୁଗାଈଙ୍କର କୌଣସି ଚିହ୍ନବର୍ଣ୍ଣ ପାଇଲେ ନାହିଁ । ଏଥିପାଇଁ ଗୋପବାଳକଗଣ ଅତ୍ୟନ୍ତ ଚକିତ ହେଲେ । ବଳରାମ ଓ ଶ୍ରୀକୃଷ୍ଣ ସମସ୍ତଙ୍କ ହୋଇ ମଧ୍ୟ ଗୋପବାଳକମାନଙ୍କ ଭଳି ଚିନ୍ତା କରିବାକୁ ଲାଗିଲେ । ସମସ୍ତେ ମିଶି ଏଣେ ତେଣେ ନିଜ ନିଜର ପଶୁମାନଙ୍କୁ ଖୋଜିବାକୁ ଲାଗିଲେ । ଗୋଧନ ହେଉଛନ୍ତି ଗୋପମାନଙ୍କର ସର୍ବସ୍ୱ । ଗୋରୁଗାଈଙ୍କ ଯୋଗୁଁ ସେମାନେ ଜୀବିକା ନିର୍ବାହ କରୁଥିଲେ । ଆଜି ଗୋରୁଗାଈ ହଜି ଯାଇଛନ୍ତି । ଏ ଘଟଣାରେ ସେମାନଙ୍କ ମୁହଁ ଶୁଖି ଯାଇଥାଏ । ସେମାନେ ଏ ବନ ସେ ବନ ବୁଲି ଖୋଜିବାକୁ ଲାଗିଲେ; କିନ୍ତୁ କେଉଁଠାରେ ହେଲେ ଗୋରୁ ଗାଈଙ୍କୁ ପାଇଲେ ନାହିଁ । ଏହାଦ୍ୱାରା ସେମାନଙ୍କର ଚିନ୍ତା ଅଧିକ ବଢ଼ିଗଲା । ସେମାନେ ହତଚେତନଙ୍କ ଭଳି ହୋଇ ଏଣେ ତେଣେ ଧାଇଁଲେ । ହଠାତ୍ ସେମାନେ ଅନେକ ଗୋରୁଙ୍କର ଖୁରଚିହ୍ନ ପଡ଼ିଥିବାର ଦେଖିପାରି ସନ୍ତୋଷ ପ୍ରକାଶ କଲେ । ସେହି ଖୁରଚିହ୍ନକୁ ଅନୁସରଣ କରି କରି ସେମାନେ ଆଗେଇ ଚାଲିଲେ । ଖୁରଚିହ୍ନ ଓ ପଶୁ ଚରି ଚରି ଯାଇଥିବା ଛିନ୍ନ ଛିନ୍ନ ଘାସକୁ ଦେଖି ସେମାନେ ବିଶ୍ୱାସ କଲେ ଯେ ଗୋରୁଗାଈମାନେ ଏହି ଦିଗରେ ଯାଇଛନ୍ତି ଓ ସଙ୍ଗେ ସଙ୍ଗେ ଯାଇଛନ୍ତି । ଏଥିପାଇଁ ସେମାନେ ଆଶା ପୋଷଣ କରି ଶୀଘ୍ର ଶୀଘ୍ର ଆଗକୁ ଚାଲିଲେ । ଯାଉ ଯାଉ ସେମାନେ ସମ୍ମୁଖରେ ଅତ୍ୟନ୍ତ ଘଞ୍ଚ ବେତବଣ ଦେଖିବାକୁ ପାଇଲେ । ସେଥିରେ ଏତେ ଗହଳିଆ ବେତ ଗଛମାନ ଥିଲା ଯେ ତା' ଭିତରେ କ'ଣ ଅଛି କିଛି ଦେଖାଯାଉ ନ ଥିଲା । ସେହି ବେତବଣ ଆଡ଼ୁ ସେମାନେ ଗୋରୁମାନଙ୍କର ହମ୍ବାରଡ଼ି ଶୁଣିବାକୁ ପାଇଲେ । ଗୋରୁଙ୍କ ଶବ୍ଦ ଶୁଣି ସେମାନେ ସନ୍ତୋଷ ହେଲେ, ପାଇଯିବାର ଆଶା ରଖି ସେମାନେ ଉତ୍ସାହର ସହିତ ଶବ୍ଦକୁ ଅନୁସରଣ କରି ଆଗେଇ ଚାଲିଲେ । ସମ୍ମୁଖରେ ସେମାନେ ଗୋରୁଗାଈଙ୍କୁ ଶୋଷରେ ହମ୍ବାରଡ଼ି କରି ଏଣେତେଣେ ଧାଉଁଥିବାର ଦେଖିଲେ । ଗୋପବାଳକଗଣ ମଧ୍ୟ ବୁଲି ବୁଲି ଥକି ପଡ଼ିଥିଲେ ଓ ସେମାନଙ୍କୁ ଭାରି ଶୋଷ ହେଉଥିଲା । ଶୋଷରେ କେତେକଙ୍କର ତୋଣ୍ଟି ଶୁଖି ଯାଉଥିଲା । ଏବେ ସେମାନେ ଭଣ୍ଡୀର ବଟଠାରୁ ଅନେକ ଦୂର ଚାଲି ଆସିଲେଣି । ଶ୍ରୀକୃଷ୍ଣ ନିଜର ଗାଈମାନଙ୍କର ନାମଧରି ଡାକିବାରେ ଲାଗିଲେ । ନିଜ ନିଜର ନାମ ଶୁଣି ଗାଈମାନେ ନିଜ ନିଜର କାନ ଓ ପୁଚ୍ଛ ଉଠାଇ ହମ୍ବାରଡ଼ି କରି ଶ୍ରୀକୃଷ୍ଣଙ୍କ ପାଖକୁ ଆସିବାକୁ ଲାଗିଲେ । ଚତୁର୍ଦ୍ଦିଗରେ ବେତବଣ ଥିଲା । ସେଥିମଧ୍ୟରୁ ଅନେକ ଶୁଖି ଯାଇଥିଲା ଓ ଅନେକ କଞ୍ଚା ଥିଲା । ଗୋପ ବାଳକମାନେ ହଠାତ୍ ଦେଖିଲେ—"ସେହି ବେତ ବଣର ପୂର୍ବଦିଗରୁ ଅଗ୍ନିଶିଖା ଉଠୁଛି । ନିଘଞ୍ଚ ଅରଣ୍ୟରେ ବାଂଶ ସଙ୍ଘର୍ଷରେ ସମୟ ସମୟରେ ଏହିପରି ଅଗ୍ନି ଲାଗିଯାଏ । ପୂର୍ବ ଦିଗରେ ଅଗ୍ନି ଉତ୍ପତ୍ତି ଦେଖି ସେମାନେ ପଶ୍ଚିମ, ଉତ୍ତର ଓ ଦକ୍ଷିଣ ସବୁ ଦିଗକୁ ଚାହିଁଲେ । ସେମାନେ

ଦେଖିଲେ ଚତୁର୍ଦ୍ଦିଗରୁ ଅଗ୍ନିଶିଖା ମାଡ଼ି ଆସିଲାଣି । କାଠ ମଝିରେ ଯଦି କୀଟ ଥାଏ ଓ ଦୁଇଆଡ଼ୁ କାଠରେ ଅଗ୍ନି ଲାଗିଯାଏ ତେବେ ସେ ଯିବ କୁଆଡ଼େ ? ସେହିପରି ଚତୁର୍ଦ୍ଦିଗରୁ ଅଗ୍ନି ମାଡ଼ି ଆସୁଥିବା କାରଣରୁ ଗୋପବାଳକମାନେ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଲେ । ବାୟୁର ସାହାଯ୍ୟ ପାଇବାରୁ ଅଗ୍ନି ଅଧିକ ପ୍ରଚଣ୍ଡ ରୂପ ଧାରଣ କଲା । ତା' ସମ୍ମୁଖରେ ସ୍ଥାବର, ଜଙ୍ଗମ ଯାହାକିଛି ପଡ଼ୁ, ସେ ସଙ୍ଗେ ସଙ୍ଗେ ଭସ୍ମ କରି ଦେଇ ଆଗକୁ ମାଡ଼ିଯାଉ ଥାଏ । ଏବେ ଆଉ ଉପାୟ କ'ଣ ? ଗୋରୁଗାଈ ସବୁ ଭୟଭୀତ ହେବାକୁ ଲାଗିଲେ । ଗୋପବାଳକମାନେ ମଧ୍ୟ ମୃତ୍ୟୁ ଭୟରେ ଥରିବାକୁ ଲାଗିଲେ । ଯଦି କୌଣସି ଦିଗରେ ଟିକିଏ ବାଟ ମିଳିଯାଆନ୍ତା, ତେବେ ସେମାନେ ଦୌଡ଼ି ପଳାନ୍ତେ ; କିନ୍ତୁ ଅଗ୍ନି ତ ସେମାନଙ୍କୁ ଚାରିଆଡ଼ୁ ଘେରି ଯାଇଥାଏ । ଏବେ ସେମାନେ ଜୀବନରକ୍ଷା କରିବାର କୌଣସି ଉପାୟ ନ ପାଇ ଭଗବାନଙ୍କୁ ଚିନ୍ତାକଲେ । ସେମାନେ ଭାବିବାକୁ ଲାଗିଲେ, ଆରେ ! "ଭୟ କରିବାର କୌଣସି କାରଣ ତ ନାହିଁ । ଆମ୍ଭମାନଙ୍କର ରକ୍ଷାକର୍ତ୍ତା ତ ଆମ୍ଭମାନଙ୍କ ସଙ୍ଗରେ ଅଛନ୍ତି ।" ଏହି ବିଚାର ମନରେ ଆସିବାକ୍ଷଣି ସେମାନେ ଆନ୍ତରିକ ଶାନ୍ତି ଲାଭ କଲେ । ସେମାନେ ଦୂରରେ ଥାଇ ଉଚ୍ଚ ସ୍ୱରରେ ଅତି ଦୈନ୍ୟ ହୋଇ ରାମଶ୍ୟାମଙ୍କୁ ସମ୍ବୋଧନ କରି ଡାକଗୁଡ଼ିଲେ । କହିଲେ—ହେ ଶ୍ୟାମସୁନ୍ଦର ! ହେ ବ୍ରଜ-ଜୀବନ ଧନ ! ହେ ଅମିତ ବଳଶାଳୀ ବଳରାମ ! ଆମେ ଗୋପବାଳକଗଣ ଦୀନ ଦୁଃଖୀ ହୋଇ ଆପଣଙ୍କର କୃପାଭିକ୍ଷା କରୁଅଛୁ । ଆମ୍ଭେମାନେ ଦାବାନଳର ସନ୍ତାପରେ ସନ୍ତପ୍ତ । ଆମ୍ଭେମାନେ ଆପଣଙ୍କର ଶରଣାଗତ । ହେ ଶରଣାଗତ ବତ୍ସଳ ! ଆପଣ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଯେ ଆପଣଙ୍କର ଶରଣ ନେଇଛନ୍ତି, ଆପଣ ଯାହାଙ୍କୁ ରକ୍ଷା କରୁଛନ୍ତି, ପାଳନ କରୁଛନ୍ତି, ଆପଣଙ୍କର ସେହି ଶରଣାଗତ, ଅନନ୍ୟ ଶରଣ ଅନୁଗତଙ୍କୁ ଏପରି କଷ୍ଟ ଦେବା ଉଚିତ ନୁହେଁ । ଆପଣଙ୍କ ଚରଣକମଳରେ ଆମ୍ଭମାନଙ୍କର ମତି ରହିଛି । ଆପଣ ହିଁ ଆମ୍ଭମାନଙ୍କର ଏକମାତ୍ର ଗତି ।"

ସୂତ କହୁଛନ୍ତି—"ମୁନିଗଣ ! ଗୋପବାଳକଗଣ ଯେତେବେଳେ ଏ ପ୍ରକାର କରୁଣ ସ୍ୱରରେ କରୁଣାନିଧାନ ଭଗବାନଙ୍କୁ ପ୍ରାର୍ଥନା କଲେ, ସେତେବେଳେ ଭଗବାନ ସେମାନଙ୍କର ଆର୍ତ୍ତ ପ୍ରାର୍ଥନା ଶୁଣି ସଙ୍ଗେ ସଙ୍ଗେ ମେଘ ଗମ୍ଭୀର ବାଣୀରେ ସେମାନଙ୍କୁ ଅଭୟ ବାଣୀ ଶୁଣାଇ କହିଲେ—"ଭାଇମାନେ ! ତୁମ୍ଭେମାନେ ଭୟ କର ନାହିଁ । ଭୟ କରିବାର କୌଣସି କାରଣ ନାହିଁ । ଏ ଦାବାଗ୍ନି ତୁମ୍ଭମାନଙ୍କର କିଛି କ୍ଷତି କରି ପାରିବ ନାହିଁ । ତୁମ୍ଭେମାନେ ନିଶ୍ଚିନ୍ତ ହୁଅ । ବାହାର ପଟୁ ଦୃଷ୍ଟି ଫେରାଇ ଆଣ । ଏହି ଦୃଶ୍ୟମାନ ଜଗତ ଆଡ଼କୁ ଚାହଁ ନାହିଁ । ବାହ୍ୟ ଚକ୍ଷୁ ବନ୍ଦ କରିଦେଇ ଅନ୍ତର୍ଦୃଷ୍ଟିରେ ମୋତେ ଧ୍ୟାନ କର । ମୋତେ ଧ୍ୟାନ କରିବା ମାତ୍ରେ ତୁମ୍ଭେମାନେ ଯେଉଁଠାରେ ଠିଆ ହେବ, ସେଠାରୁ ପାଦେହେଲେ ନ ଚାଲି, ବିନା ପରିଶ୍ରମରେ ନିଜର ଗନ୍ତବ୍ୟ ସ୍ଥାନରେ ଯାଇ ପହଞ୍ଚିବ ।"

ଭଗବାନଙ୍କର ଏ ପ୍ରକାର ଆଶ୍ୱାସନାପୂର୍ଣ୍ଣ ସୁମଧୁର ଗମ୍ଭୀର ବଚନ ଶୁଣି ଗୋପବାଳକମାନେ ଆଶ୍ୱସ୍ତ ହେଲେ ଓ ସେମାନେ ସେହିଠାରେ ଥାଇ କହିଲେ—"ତେବେ ଠିକ୍ ଅଛି, ଆମ୍ଭେମାନେ ବାହ୍ୟଚକ୍ଷୁ ମୁଦ୍ରିତ କରି ଦେଉଛୁ । ଆମ୍ଭେମାନେ ବାହ୍ୟ ଦୃଶ୍ୟ ଦର୍ଶନ କରୁଥିବା ଚକ୍ଷୁକୁ ଆବୃତ୍ତ କରି ତୁମର ଅମୃତ ସ୍ୱରୂପକୁ ଧ୍ୟାନ କରୁଅଛୁ ।" ଏହା କହି ସମସ୍ତେ ନିଜ ନିଜର ଆଖିବୁଜି ଠିଆ ହେଲେ । ସମସ୍ତେ ଆଖିବନ୍ଦ କରିବାରୁ ପ୍ରଭୁ ସେହି ଦାବାନଳକୁ ପାନ କରିଦେଲେ । ମୁହୂର୍ତ୍ତକ ମଧ୍ୟରେ ପ୍ରଚଣ୍ଡ ଅଗ୍ନିଶିଖା ବିଶିଷ୍ଟ ଦାବାନଳ ସର୍ବାତ୍ମା ଶ୍ୟାମସୁନ୍ଦରଙ୍କ ଫକଲ ମାତ୍ରେ ଶାନ୍ତ ହୋଇଗଲା । କେବଳ ସେତିକି ନୁହେଁ ଗୋରୁଗାଈ ଓ ଗୋପବାଳକମାନେ ଯେଉଁ ସ୍ଥାନରେ ଠିଆ ହୋଇଥିଲେ, ସେଠାରୁ ସମସ୍ତେ ଭାଣ୍ଡୀରକ ବଟ ନିକଟକୁ ଆସିଯାଇଥିଲେ ।

ଭଗବାନ କହିଲେ—"ଏବେ ତୁମ୍ଭେମାନେ ଆଖି ଖୋଲିପାର ।"

ଯେତେବେଳେ ସମସ୍ତେ ନିଜ ନିଜର ଆଖି ଖୋଲି ଦେଲେ, ଦେଖିଲେ ସେଠାରେ ନିଆଁ କି ଧୂଆଁର ନାମ ଗନ୍ଧ ସୁଦ୍ଧା ନାହିଁ । ବେତ ବନ ନାହିଁ କିମ୍ବା ଭୟଙ୍କର ଅଗ୍ନିଶିଖା ନାହିଁ । ସେମାନେ ଆସି ଯମୁନା କୂଳରେ ଥିବା ଭାଣ୍ଡୀରକ ବଟ ବୃକ୍ଷମୂଳରେ ନିଜ ନିଜର ଗୋ-ଗୋଷ୍ଠ ସହିତ ଠିଆ ହୋଇଛନ୍ତି । ଗୋ-ଗୋଷ୍ଠ ସହିତ ନିଜ ନିଜକୁ ଏ ପ୍ରକାର ଦାବାନଳରୁ ମୁକ୍ତ ହୋଇ ସୁରକ୍ଷିତ ଥିବାର ଓ ସକୁଶଳ ଦେଖି ସମସ୍ତ ସଖା ଅତି ବିସ୍ମିତ ହେଲେ । ଭଗବାନଙ୍କର ଏପରି ଅଦ୍ଭୁତ ସାମର୍ଥ୍ୟ ଦେଖି ସେମାନଙ୍କ ମନରେ କ୍ଷଣକ ପାଇଁ ଐଶ୍ୱର୍ଯ୍ୟଭାବ ଉଦୟ ହୋଇଥିଲା । ସେମାନେ ଶ୍ରୀକୃଷ୍ଣଙ୍କୁ ନିଜ ନିଜଠାରୁ ପୃଥକ୍ କୌଣସି ଏକ ବିଲକ୍ଷଣଯୁକ୍ତ ଦେବତା ବୋଲି ଭାବିବାକୁ ଲାଗିଲେ ।

ସୂତ କହୁଛନ୍ତି—"ମୁନିଗଣ ! ସଖାମାନଙ୍କୁ ବିସ୍ମିତ ହେବାର ଦେଖି ସର୍ବାନ୍ତର୍ଯ୍ୟାମୀ ଶ୍ୟାମସୁନ୍ଦର ହସିଦେଲେ, ତାଙ୍କର ହସ ସଙ୍ଗେ ଯେପରି ଜନଉନ୍ମାଦକାରୀ ମାୟା ଭଳି । ପିଲାମାନେ ସବୁକଥା ଭୁଲିଗଲେ । ସେମାନେ ପୂର୍ବପରି ଶ୍ରୀକୃଷ୍ଣଙ୍କୁ ନିଜ ନିଜର ସଖା ବୋଲି ବୁଝିଲେ । ସନ୍ଧ୍ୟା ସମୟ ହେବାରୁ ଗୋ-ଗୋଷ୍ଠଙ୍କୁ ନେଇ ଭଗବାନଙ୍କ ସହିତ ଘରକୁ ଫେରି ସମସ୍ତ ଘଟଣା ନିଜ ନିଜର ମାତାଙ୍କୁ କହିଲେ ।"

## ଛପ୍ପୟ

ରକ୍ଷା ଅନତ ନ ସମୁଝି ଶରଣ ମାଧବକୀ ଆୟେ ।
ସଭୟ ଶବ୍ଦ ସୁନି ଶ୍ୟାମ ଅଭୟ ବର ବଚନ ସୁନାୟେ ।।
ମୀଂଚୋ ତୁମ ସବ ଆଁଖି ସୁନତ ମୀଂଚୀ ସବ ଗୋପନ ।
ଦାବାନଲ କରି ପାନ କହେଂ ହରି ନିରଖୋ ଗୌଅନ ।।

ସୁଣ୍ଡରୀକ ନୀଚେ ନିରଖି, ସୁ କୁଶଳ ଗୌଅନି କେ ସହୃତ ।
ଭୟେ ସୁଖୀ ପୁନି ଚଲ ଦୟେ, ଲୈ ଗୈଅନି ବ୍ରଜକୁଁ ତୁରତ ॥

•

# ଗୋପୀମାନଙ୍କର ଅନୁପମ ଅନୁରାଗ

**ଗୋପୀନାଂ ପରମାନନ୍ଦ ଆସୀଦ୍ ଗୋବିନ୍ଦଦର୍ଶନେ ।**
**କ୍ଷଣଂ ଯୁଗଶତମିବ ଯାସାଂ ଯେନ ବିନାଭବତ୍ ॥**

(ଶ୍ରୀ ଭା ୧୦ ସ୍କ, ୧୯ ଅ, ୧୬, ଶ୍ଲୋକ)

## ଛପ୍ପୟ

ନିରଖେ ଆବତ ଶ୍ୟାମ ହୃଦୟ ଗୋପନିକେ ହରଷେ ।
ଗୀଲେ ଭୟେ କପୋଲ ଶ୍ୟାମ ଘନ ରସ ଜନୁ ବରଷେ ॥
ପଲ ଛିନ ଜିନ ବିନୁ ସମୟ କେଟି ବରସନି ସମ ବୀତେ୍ୟା ।
ଶ୍ୟାମ ଦୀଠିତେ ଦୀଠି ମିଲୀ ସବ ଜଗ ଜନୁ ଜୀତେ୍ୟା ॥
ମୁରଲୀକୋ ରବ ଶ୍ରବନ ସୁନି, କୃଷ୍ଣ କଟ ପଟପୀତ ବର ।
ଅଁଗ ଅଁଗ ଲଖି ପୁଲକିତ ଭୟେ, ନଟବରକୀ ଛବି ଅତିସୁଧର ॥

ଅନୁରାଗରେ ହିଁ ଜୀବନର ସାର୍ଥକତା । ଯେଉଁ ଜୀବନରେ ପ୍ରେମ ନାହିଁ, ତାହା ଜୀବନ ନୁହେଁ, କଙ୍କାଳ । ଯେଉଁ ସମୟ କାହାର ମଧୁର ସ୍ମୃତିରେ, କାହାର ପୁଣ୍ୟ ପ୍ରତୀକ୍ଷାରେ, ପ୍ରିୟଙ୍କର ଉତ୍କଟ ଆକାଙ୍କ୍ଷାରେ ନ ବିତେ ସେ ସମୟ ମୂଲ୍ୟହୀନ । କାହାର ମିଳନର ପ୍ରତୀକ୍ଷାରେ ପ୍ରତିମୁହୂର୍ତ୍ତକୁ ଚନ୍ଦ୍ର ଚନ୍ଦ୍ର କରି ଯଦି ଗଣାଯାଉଥାଏ, ତେବେ ତାହା ହିଁ ସମୟର ସାର୍ଥକତା । ନେତ୍ରରେ କାହାର ହୃଦୟ ଜାଣିବା ପାଇଁ ତୃଷାର୍ତ୍ତ ହେବା ହିଁ ନେତ୍ରର ଅତି ଉତ୍ତମ ଉପଯୋଗ । କାହାର ସୁମଧୁର ବଚନ କର୍ଣ୍ଣରେ ଶ୍ରବଣ କରିବାପାଇଁ ଶତତ ଉତ୍କଣ୍ଠିତ ହେବା ହିଁ କର୍ଣ୍ଣର ସାର୍ଥକତା । କାହାରପାଇଁ ହୃଦୟ ବ୍ୟାକୁଳିତ ହେବା, କାହାର ସୁମଧୁର ସ୍ମୃତି ମାନସ ପଟରେ ଜାଗ୍ରତ କରିବା, କାହାର ହୃଦୟର ଦୁଃଖରେ ଦୁଃଖୀ ହେବା ଓ ଅନ୍ୟପାଇଁ ଅଶ୍ରୁ ବିସର୍ଜନ କରିବା ଏପରି ହୃଦୟ ହିଁ ବାସ୍ତବ ହୃଦୟ । ଏ ପ୍ରକାର ହୃଦୟ ବିଶିଷ୍ଟ ବ୍ୟକ୍ତିଙ୍କୁ ସହୃଦୟ ବୋଲି

କୁହଯାଏ । ସ୍ମୃତିଶୂନ୍ୟ ଜୀବନକୁ କ'ଣ କେବେ ଜୀବନ ଆଖ୍ୟା ଦିଆଯାଇ ପାରେ ? ଉତ୍କଣ୍ଠାବିନା କାଳଯାପନ କରିବା କ'ଣ କାଳର ସାର୍ଥକତା ? ବ୍ରଜର ସେହି ବ୍ରଜାଙ୍ଗନାଗଣ ବିଶ୍ୱବନ୍ଦନୀୟା ଓ ଭାଗ୍ୟଶାଳିନୀ ଅଟନ୍ତି । ସେମାନଙ୍କ ମନରେ ସର୍ବଦା ମନମୋହନଙ୍କର ମଧୁର ମୂର୍ତ୍ତି ନୃତ୍ୟ କରୁଥିଲା । ସେମାନଙ୍କର ପ୍ରତିମୁହୂର୍ତ୍ତ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ, ଲୀଳା-ମାଧୁରୀ ଓ ବେଣୁମାଧୁରୀ ସ୍ମୃତିରେ ହିଁ କେବଳ କଟୁଥିଲା ।

ସୂତ କହୁଛନ୍ତି—"ମୁନିଗଣ ! ବ୍ରଜଜୀବନ ସର୍ବସ୍ୱ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପ୍ରତି ବ୍ରଜାଙ୍ଗନା-ମାନଙ୍କର କେତେ ଯେ ଅନୁରାଗ ଥିଲା, ତାହା ବର୍ଣ୍ଣନା କରିବା ପାଇଁ ଶେଷଦେବ, ଶାରଦା ତଥା ବ୍ରହ୍ମା ଆଦି ମଧ୍ୟ ସମର୍ଥ ନୁହନ୍ତି । ସେ କ୍ଷେତ୍ରରେ ଆମ୍ଭମାନଙ୍କ ପରି ସାଧାରଣ ଲୋକଙ୍କ ପକ୍ଷରେ କିଏ ? ପ୍ରାତଃକାଳରେ ଶ୍ୟାମସୁନ୍ଦର ବଂଶୀ ବଜାଇ ବଜାଇ ଗୋଗୋଷ୍ଠ-ନେଇ ବନକୁ ଚରାଇବାକୁ ଯାଆନ୍ତି । ସେତେବେଳେ ବ୍ରଜାଙ୍ଗନାମାନଙ୍କର ଶରୀରରେ ସତେଯେପରି ପ୍ରାଣ ନ ଥାଏ । ତାଙ୍କ ବିନା ସେମାନେ ହତଚେତନ ହୋଇ ପଡ଼ନ୍ତି । ପ୍ରାଣହୀନ ମୃତବତ୍ ହୋଇଯାଆନ୍ତି । ପ୍ରତିଟି ମୁହୂର୍ତ୍ତ ସେମାନଙ୍କ ପକ୍ଷେ ଦୁର୍ବହ ହୋଇପଡ଼େ ।"

ଶୌନକ ପଚାରିଲେ—"ହେ ସୂତ ! ଯେତେବେଳେ ଶ୍ୟାମସୁନ୍ଦରଙ୍କ ପ୍ରତି ବ୍ରଜାଙ୍ଗନାମାନଙ୍କର ଏତେ ପ୍ରେମ ଥିଲା, ସେତେବେଳେ ସେମାନେ ଶ୍ରୀକୃଷ୍ଣଙ୍କ ବିନା କିପରି ଜୀବନ ଧାରଣ କରି ରହି ପାରୁଥିଲେ ?"

ସୂତ କହିଲେ—"ଭଗବାନ ! ସେମାନଙ୍କର ଜୀବନ ଧାରଣ ଶ୍ରୀକୃଷ୍ଣଙ୍କ ବିନା ସେହିପରି ଅସମ୍ଭବ ହୋଇ ପଡ଼ୁଥିଲା, ଯେପରି କି ଜଳ ବିନା ମୀନର ଜୀବନଧାରଣ ଦୁର୍ବହ ହୋଇପଡ଼େ । ଯେତେବେଳେ ଶ୍ୟାମସୁନ୍ଦର ବନକୁ ଚାଲି ଯାଉଥିଲେ, ସେତେ-ବେଳେ ସେମାନଙ୍କର ସନ୍ତପ୍ତ ମୃତକବତ୍ ଶରୀରକୁ ତାଙ୍କର କଥାମୃତ ଜୀବନଦାନ କରୁଥିଲା । ତାଙ୍କ କଥାମୃତ ଏତେ ସ୍ମୃତିମଧୁର ଓ ଜୀବନଦାନକାରୀ ଥିଲା ଯେ, ତାହା ପାନ କରି କରି ସେମାନେ ମରିବାକୁ ଚାହୁଁଥିଲେ ମଧ୍ୟ ମରିପାରୁ ନ ଥିଲେ । ଏହି ଶ୍ରୀକୃଷ୍ଣାବତାରରେ ଭଗବାନ୍ ଯେପରି ଜନଗଣଙ୍କ ମନକୁ ମୋହିତ କରିଥିଲେ, ସେପରି ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ । ସେହି ରୂପମାଧୁରୀ, ଲୀଳାମାଧୁରୀ ଓ ବେଣୁମାଧୁରୀକୁ ଏହି ବ୍ରଜାଙ୍ଗନାଗଣ ପାନ କରୁଥିଲେ । ଏମାନଙ୍କର ସମସ୍ତ ବନ୍ଧା ହୋଇଥିଲା । ପରୋକ୍ଷରେ ପ୍ରେମସୁଖ ଯେତେ ମିଳେ ପ୍ରତ୍ୟକ୍ଷରେ ସେତେ ମିଳେ ନାହିଁ । ଯେଉଁମାନେ ଗଙ୍ଗାକୂଳରେ ଦିନରାତି ଆସି ବାସ କରିଛନ୍ତି, ସେମାନଙ୍କର ଗଙ୍ଗାଙ୍କର ସ୍ମରଣ ସେତେ ରହେନାହିଁ କିମ୍ବା ସେତେ ଉତ୍କଣ୍ଠା ଉତ୍ପନ୍ନ ହୁଏ ନାହିଁ । ଯେଉଁମାନେ ଗଙ୍ଗାଠାରୁ ଦୂରରେ ମରୁଭୂମିରେ ରହନ୍ତି, ସେମାନେ ଗଙ୍ଗାଙ୍କର ଅତ୍ୟନ୍ତ ଭକ୍ତ । ସେମାନେ ଏକ ଏକ ବିନ୍ଦୁ ଗଙ୍ଗାଜଳ

ପାନ କରି ନିଜ ନିଜକୁ ଧନ୍ୟ ମନେ କରନ୍ତି । ଦୂରରୁ ସେମାନଙ୍କର ମନରେ ଅତ୍ୟନ୍ତ ପ୍ରେମ ଜାତହୁଏ । ନିଜର ପ୍ରିୟତମ ସମ୍ମୁଖରେ ଆସି ଉପସ୍ଥିତ ହେଲେ ତାଙ୍କୁ ନେତ୍ରଭରି ଦେଖି ହୁଏ ନାହିଁ । ଲୋକଲଜ୍ଜାର ଭୟ ରହେ, କେହି ଯେପରି ସେମାନଙ୍କର ମନୋଭାବକୁ ନ ଜାଣନ୍ତି, କେହି ଯେପରି ସେମାନଙ୍କୁ ଏ ଅବସ୍ଥାରେ ଦେଖି ନ ପକାନ୍ତି । ବାରମ୍ବାର ନେତ୍ରରେ ଦେଖିବା ଦ୍ୱାରା କାଳେ କିଏ କ'ଣ କହିଦେବ, ମନରେ ସର୍ବଦା ଏହି ଭାବ ଜାଗ୍ରତ ହୁଏ । ଯଦି ଏହି ଭାବକୁ ଜଳାଞ୍ଜଳି ଦିଆଯାଏ, ତାହାହେଲେ ନିର୍ନିମେଷ ନୟନ ଭଲପାଇବାକୁ ଦେଖି ଅଶ୍ରୁପୂର୍ଣ୍ଣ ହୋଇଯାଏ, ନେତ୍ରରୁ ଅଶ୍ରୁ ବହିବାକୁ ଲାଗେ, ତାହା ଦର୍ଶନକାଂକ୍ଷୀ ପ୍ରିତମାଙ୍କୁ ଆଚ୍ଛାଦିତ କରିଦିଏ । ପ୍ରୀତି ଦର୍ଶନରେ ବ୍ୟବଧାନ ସୃଷ୍ଟି ହୁଏ । ପରୋକ୍ଷରେ ଏ ସବୁ ବ୍ୟତିକ୍ରମ ନ ଥାଏ । ତେଣୁ ଏକାନ୍ତରେ ବସିରହି ମନ ମଧ୍ୟରେ ପ୍ରେମାସ୍ପଦଙ୍କୁ ଆଲିଙ୍ଗନ କରିବା, ତାଙ୍କ ସହିତ ବାର୍ତ୍ତାଳାପ କରିବା ଓ ତାଙ୍କୁ ଚିନ୍ତା କରିବା ଉଚିତ୍ । କିମ୍ବା ନିଜ ଭଳି ରସିକ ଯଦି ମିଳି ଯାଆନ୍ତି, ତେବେ ତାଙ୍କ ସହିତ ବସି ପ୍ରେମାସ୍ପଦଙ୍କ ସମ୍ବନ୍ଧରେ କଥାବାର୍ତ୍ତା ହୁଅ । ତାଙ୍କ ଲୀଳା ଗାନ କର । ତାଙ୍କ ରୂପମାଧୁରୀ ବର୍ଣ୍ଣନା କର । ଏହି ସବୁ କଥାରେ ଚିତ୍ତ ତନ୍ମୟ ହୁଏ । ଏଥିପାଇଁ ରସଶାସ୍ତ୍ରର ଆଚାର୍ଯ୍ୟଗଣ ପ୍ରେମରୂପକ ପାଦପର ଫଳ 'ବିରହ' ବୋଲି କହିଅଛନ୍ତି ।

ଶ୍ରୀକୃଷ୍ଣ ସର୍ବଦା ଗୋରୁଗାଈଙ୍କୁ ଚରାଇବା ପାଇଁ ଯାଆନ୍ତି । ବସନ୍ତ ଋତୁର ଚୈତ୍ର ବୈଶାଖ ଏ ଦୁଇ ମାସରେ ଶ୍ୟାମସୁନ୍ଦର ବଡ଼ି ଭୋରରୁ ହିଁ ଶଯ୍ୟାତ୍ୟାଗ କରି ଚାଲି ଯାଆନ୍ତି । ଏହି ଦିନମାନଙ୍କରେ ପ୍ରାତଃ ଓ ସାୟଂକାଳ ଥଣ୍ଡା ରହେ । ତା'ନ କଲେ ଦିନସାରା ଟାଣଖରା କଷ୍ଟ ଭୋଗିବାକୁ ପଡ଼େ । ଗୋପୀକାଗଣ ଆମ୍ରକୁଞ୍ଜରେ ବସି ଶ୍ରୀକୃଷ୍ଣଙ୍କ ଲୀଳାଗାନ କରନ୍ତି । ଯେତେବେଳେ କୋକିଳ ଆମ୍ର କୁଞ୍ଜରେ ରହି କୁହୁକୁହୁ ରବରେ ଚତୁର୍ଦ୍ଦିଗ ମୁଖରିତ କରେ, ସେତେବେଳେ ସେମାନଙ୍କ ହୃଦୟ ଅଧିକ ଉଦ୍ଦୀପିତ ହୁଏ । ନୂତନ ନୂତନ ପ୍ରକାରରେ ଶ୍ରୀକୃଷ୍ଣଙ୍କର ସ୍ମୃତି ଜାଗ୍ରତ ହୁଏ । ଭ୍ରମରମାନଙ୍କର ଗୁଞ୍ଜନ ସେମାନଙ୍କ ମନରେ ମଧୁର ଭାବ ଜାଗ୍ରତ କରାଏ । ବୃକ୍ଷମାନଙ୍କର ନୂଆ ନୂଆ ପତ୍ରରାଜି ସେମାନଙ୍କ ମନରେ ନୂତନତା ତଥା ସରସତା ସଞ୍ଚାର କରେ । ଲତାମାନଙ୍କର ଦୋଳନ ସେମାନଙ୍କୁ ଶ୍ୟାମସୁନ୍ଦରଙ୍କର ସ୍ମୃତି ଜାଗ୍ରତ କରାଏ । ସେମାନେ ବନର ଶୋଭା ନିରୀକ୍ଷଣ କରିବାରେ ମଜ୍ଜି ଯାଆନ୍ତି । ବସନ୍ତ ଋତୁରେ ପ୍ରେମର ସ୍ମୃତି ସବୁଠାରୁ ଅଧିକ ବିକଶିତ ହୋଇଥାଏ ।

ଯେତେବେଳେ ଗ୍ରୀଷ୍ମ ଅଷାଢ଼ରେ ଗ୍ରୀଷ୍ମଋତୁ ଆସିଯାଏ, ସେତେବେଳେ ଘରୁ ବାହାରିବା ଅସମ୍ଭବ ହୋଇପଡ଼େ । ସେହି ସମୟରେ ସମସ୍ତେ ଘରେ ବସି ଏକତ୍ର କୃଷ୍ଣ କଥାରେ ସମୟ କଟାନ୍ତି, ତାଙ୍କ ଲୀଳାମାଧୁରୀରସ ଆସ୍ୱାଦନ କରନ୍ତି । ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟରୁ ସେମାନଙ୍କୁ ଉପରର ଉଷ୍ଣତା କଷ୍ଟ ଦିଏ ନାହିଁ; କିନ୍ତୁ ଅନ୍ତର ମଧ୍ୟରେ ସେମାନେ ଶ୍ରୀକୃଷ୍ଣଙ୍କ

ବିରହଜନିତ ଉଷ୍ଣତା ଯୋଗୁଁ ସନ୍ତପ୍ତ ହୁଅନ୍ତି । ଯେପରି ହାଣ୍ଡିରେ ଜଳ ଭର୍ତ୍ତିହୋଇ ଜଳରେ ଚାଉଳ ପଡ଼େ ଓ ତଳେ ଚୁଲିରେ ଜାଳ ଜଳାହୁଏ ଏବଂ ଏହାଦ୍ୱାରା ଜଳ ଓ ଚାଉଳରେ ଯେପରି ଅଗ୍ନିର ସିଧାସଳଖ ସମ୍ବନ୍ଧ ନ ଥାଏ; କିନ୍ତୁ ପରମ୍ପରାଗତ ସମ୍ବନ୍ଧ ଥାଏ ଓ ହାଣ୍ଡି ଗରମ ହେବାକ୍ଷଣି ଜଳ ମଧ୍ୟ ଗରମ ହୋଇଯାଏ । ଜଳ ଗରମ ହେବାରୁ ଚାଉଳ ଝକମକ ହୋଇ ଫୁଟେ ଏବଂ ଫେଣ ଉତୁରି ଉଠେ । ସେହିପରି ବିରହ ସମ୍ପର୍କରୁ ଅନ୍ତଃକରଣରେ ଏକ ପ୍ରକାର କୋହ ଉଠିବାକୁ ଲାଗେ, ଗୁଡ଼ ଭିତର ଦୁକୁଦୁକୁ ହୁଏ । ହୃଦୟ ଆର୍ଦ୍ର ଓ ଶୀତଳ ହୋଇଥିଲେ ମଧ୍ୟ ଉଷ୍ଣ ଅନୁଭୂତ ହୋଇ ବ୍ୟାକୁଳତା ହେବାକୁ ଲାଗେ । ଗ୍ରୀଷ୍ମରେ ବିରହର ତାପ ଅତ୍ୟଧିକ ବୃଦ୍ଧିପାଏ । ତାଙ୍କ ସ୍ମୃତି ମଧ୍ୟ ଚିତ୍ତକୁ ବାରମ୍ବାର ବହ୍ନିଳିତ କରେ । ଜଣାଯାଏ ଯେପରି ଏହି ଉଷ୍ଣତାରେ କୃଷ୍ଣଚନ୍ଦ୍ର ଖାଲିପାଦରେ ଗୋରୁଗାଈଙ୍କ ପଛେ ପଛେ ବୋଧହୁଏ ଧାଉଁଥିବେ । ତାଙ୍କର କୋମଳ ଚରଣକମଳରେ କୁଶ, କାଶତଣ୍ଡୀ ମୂଳ ଓ କଙ୍କରିତ ଭୂମି ବ୍ୟଥା ଦେଉଥିବେ । ଯମୁନା ନଦୀର ବାଲୁକାରାଶି ଆମ୍ଭମାନଙ୍କ ହୃଦୟ ଭଳି ସନ୍ତପ୍ତ ହୋଇଥିବ । ଆମ ହୃଦୟରେ ଥରେ ଶ୍ୟାମସୁନ୍ଦରଙ୍କର ଚରଣ ପଡ଼ିଗଲେ ତାହା ଶୀତଳ ହୋଇଯିବ; କିନ୍ତୁ ତପ୍ତ ବାଲୁକା ତ ତାଙ୍କ ଚରଣକୁ ପୋଡ଼ି ଦେଉଥିବ । ସେହି ସରଳ ବ୍ରଜାଙ୍ଗନାଗଣଙ୍କୁ ଏହା ଜଣା ନ ଥିଲା ଯେ ବିଶ୍ୱକୁ ଶୀତଳତା ପ୍ରଦାନ କରୁଥିବା ସେହି ଚରଣ ଯୁଗଳ ଯେଉଁଠାରେ ପଡ଼ୁନା କାହିଁକି, ସେ ସ୍ଥାନର ସନ୍ତାପ ଆପେ ଆପେ ଦୂର ହୋଇଯାଏ । ପୃଥିବୀ ସେହି ଚରଣକୁ ଓ ଚରଣ ଚିହ୍ନକୁ କୃପଣ ଧନ ସାଇତିଲା ପରି ରକ୍ଷାକରେ ।

ଆଷାଢ଼ ମାସରେ ଯେତେବେଳେ ଗର୍ଜ୍ଜନ କରି କରି କଳାମେଘ ଆକାଶରେ ଘୋଟିଅସେ, ସେତେବେଳେ ଗୋପାଙ୍ଗନାମାନଙ୍କ ଚିନ୍ତା ଆହୁରି ବଢ଼ିଯାଏ । ଶ୍ରାବଣ ଓ ଭାଦ୍ରବରେ ବର୍ଷା ହେବାକୁ ଲାଗେ । ସମସ୍ତ ଭୂମି ସଶ୍ୟ ଶ୍ୟାମଳା ହୋଇ ନବବିବାହିତ ବଧୂରୂପ ଧାରଣ କରେ । ଜଳ ହେଉଛି ଜଗତର ଜୀବନ । ଏଥିପାଇଁ ବର୍ଷା ହେବାମାତ୍ରେ ସମସ୍ତ ବନ ପ୍ରାନ୍ତର ସବୁଜିମା ଭରି ହୋଇଯାଏ । ସବୁଜ ଦୂବଘାସ ଉପରେ ସାଧବ ବୋହୂ (ଏକ ପ୍ରକାର ଲାଲ ରଙ୍ଗର ପୋକ) ଓ ସଁବାଳୁଅ ଆଦି ପୋକ ଚଳବୁଲ କରି ଏପରି ପ୍ରତୀତ ହୁଏ, ସତେ ଯେପରି ତାହା ସବୁଜ ରଙ୍ଗର ରେଶମୀ ଗାଲିଚା ଉପରେ ଲାଲ ରଖା ଯାଇଛି । ସୌଦାମିନୀର ଚଞ୍ଚଳତାକୁ ଦେଖି ସେମାନେ ଚମକି ପଡ଼ନ୍ତି ଓ ଚିନ୍ତା କରନ୍ତି, "ଶ୍ରୀକୃଷ୍ଣ ମଧ୍ୟ ଏହିଭଳି ଚଞ୍ଚଳ । ତାଙ୍କ ପ୍ରେମ ଯେପରି ଏଭଳି ଚଞ୍ଚଳ ନ ହେଉ । ସେ ଏ ଅବଳାମାନଙ୍କୁ ଯେପରି ପରିତ୍ୟାଗ ନ କରନ୍ତୁ । ଆମ୍ଭମାନଙ୍କର ଜୀବନ ବି ଚଞ୍ଚଳ, ଯୌବନ ମଧ୍ୟ ଚଞ୍ଚଳ, ପୁନଶ୍ଚ ଶ୍ରୀକୃଷ୍ଣଙ୍କର ସ୍ମୃତି ମଧ୍ୟ ଆମ୍ଭମାନଙ୍କୁ ଆହୁରି ଅଧିକ ଚଞ୍ଚଳ କରୁଅଛି । ଏହି ପ୍ରକାର ଚପଳାର ଚଞ୍ଚଳତା ଓ ଝଲକ ଦେଖି ସେମାନେ ନିରନ୍ତର ଚିନ୍ତା କରିବାରେ ଲାଗିଥିଲେ ।

ମନ୍ଦ ମନ୍ଦ ଗର୍ଜ୍ଜନ କରୁଥିବା ଜଳଧାରାର ଶାନ୍ତ ଓ ଗମ୍ଭୀର ରବକୁ ଶ୍ରବଣ କରି ସେମାନଙ୍କର ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା । ସେମାନଙ୍କର ଭ୍ରମ ହେଉଥିଲା ଯେ, ମେଘଗମ୍ଭୀର ବାଣୀରେ ଶ୍ୟାମସୁନ୍ଦର ନିଜର ଗୋରୁମାନଙ୍କୁ ଡାକୁ ନାହାନ୍ତି ତ ? ରାତ୍ରି କାଳରେ ଖଦ୍ୟୋତର ଆଲୋକ, ଭେକମାନଙ୍କର କେଁ କଣ୍ଠର ଶବ୍ଦ, ଝିଙ୍କାରୀର ଝଙ୍କାର, ମଶା-ଡାଆଁଶଙ୍କର ରହସ୍ୟମୟ ଶବ୍ଦ, ଏ ସମସ୍ତ ସେମାନଙ୍କ ମନରେ ବୈରାଗ୍ୟ ସଞ୍ଚାର କରୁଥିଲା ; କିନ୍ତୁ ଶ୍ରୀକୃଷ୍ଣଙ୍କ ଅନୁରାଗର ଗାଢ଼ ଲେପ ସେମାନଙ୍କର ଅନ୍ତଃକରଣକୁ ପ୍ରଲେପିତ କରିଥିଲା ଯେ, ସେ ବୈରାଗ୍ୟ ସ୍ଥାୟୀ ହେଉ ନ ଥିଲା, ବରଂ ଅନୁରାଗ ବୃଦ୍ଧି କରୁଥିଲା । ଯେତେବେଳେ ସେମାନେ ଦ୍ରୁତ ଗତିରେ ସମୁଦ୍ର ଆଡ଼କୁ ଧାଉଁଥିବା କୌଣସି ସ୍ରୋତସ୍ୱିନୀକୁ ନିରୀକ୍ଷଣ କରନ୍ତି, ସେତେବେଳେ ଆତ୍ମବିସ୍ମୃତ ହୋଇ ପଡ଼ନ୍ତି ଓ କହନ୍ତି— "ହାୟ ! ଏହାର ଅନୁରାଗ ଧନ୍ୟ, ନିଜର ପ୍ରିୟତମଙ୍କ ସହିତ ମିଶିବା ପାଇଁ ଏ କିପରି ଦ୍ରୁତ ଗତିରେ ଧାଉଁଛି । ଆମ୍ଭେମାନେ ଶ୍ୟାମସୁନ୍ଦରଙ୍କ ସହିତ ଖୋଲାଖୋଲି ଭାବେ ମିଶି ପାରୁ ନାହୁଁ । ତାଙ୍କ ଆଗରେ ଦୁଇପଦ ହୃଦୟର କଥା ବି କହିପାରୁ ନାହୁଁ । କି ବିବଶତା, କି ପରାଧୀନତା ଦୁଃଖ ଆମେ ଭୋଗ ନ କରୁଆଇଁ ।"

ଆକାଶରେ ବିରାଜମାନ କରୁଥିବା ଇନ୍ଦ୍ରଧନୁକୁ ଦେଖି ସେମାନଙ୍କର ଶ୍ୟାମସୁନ୍ଦରଙ୍କର ଛବି ମନେ ପଡ଼ିଯାଏ । ନୀଳ ଆକାଶରେ ଯେପରି ଏହି ରଙ୍ଗବିରଙ୍ଗ ଇନ୍ଦ୍ରଧନୁ ଶୋଭା ପାଉଛି, ସେହିପରି ଶ୍ୟାମସୁନ୍ଦରଙ୍କର ଉନ୍ନତ ବକ୍ଷସ୍ଥଳରେ ନାନାରଙ୍ଗର ବନମାଳା ସୁଶୋଭିତ ହେଉଅଛି । ଯେତେବେଳେ ସେମାନେ ବାଦଲରେ ଢାଙ୍କି ହୋଇ ଫିକା ପଡ଼ିଯାଇଥିବା ଚନ୍ଦ୍ରମାକୁ ନିରୀକ୍ଷଣ କରନ୍ତି, ସେତେବେଳେ ସେମାନେ ବିବଶ ହୋଇ କ୍ରନ୍ଦନ କରନ୍ତି, ଯେପରି କି ଆଜି ଏ କାନ୍ତିଯୁକ୍ତ ଚନ୍ଦ୍ରମା ମେଘ ଆବରଣରେ ଥାଇ ହସି ହସି ଆକାଶରେ ଭାସୁ ନାହାନ୍ତି । ଶ୍ରୀକୃଷ୍ଣଙ୍କର ବିରହ ରୂପୀ ଆବରଣରେ ସମସ୍ତଙ୍କର ମୁଖ ମଳିନ ପଡ଼ି ଯାଇଥାଏ । ମୟୂରୀମାନେ ମୟୂରଙ୍କୁ ଘେରି ପ୍ରେମରେ ନୃତ୍ୟ କରୁଥିବାର ଦେଖି ତଥା ମୟୂରୀମାନଙ୍କୁ ସେମାନଙ୍କର ଅଶ୍ରୁପାତ କରୁଥିବାର ଦେଖି ଗୋପାଙ୍ଗନାଗଣ ସେହି ପକ୍ଷିଣୀମାନଙ୍କର ଭାଗ୍ୟକୁ ପ୍ରଶଂସା କରିବାକୁ ଲାଗନ୍ତି ଓ ଚିନ୍ତା କରନ୍ତି, ଏପରି ସମୟ ଆମ୍ଭମାନଙ୍କ ଭାଗ୍ୟରେ କେବେ ଆସିବ, ଯେତେବେଳେ କି ଆମ୍ଭେମାନେ ମିଳିତ ହୋଇ ନୃତ୍ୟ କରୁଥିବା ନନ୍ଦନନ୍ଦନଙ୍କ ଗଳାରେ ନିଜ ନିଜର ବାହୁକୁ ଛନ୍ଦି ତାଙ୍କ ସହିତ ନୃତ୍ୟରେ ମାତିଯିବୁ । କେବେ ନିଜ ନିଜର ଅଶ୍ରୁସିକ୍ତ ନୟନକୁ ତାଙ୍କ କପୋଳ ଦେଶରେ ସ୍ଥାପନ କରିବୁ ।

ସନ୍ଧ୍ୟା ସମୟରେ ଯେତେବେଳେ ଚକ୍ରବାକୀ ରୋଦନ କରୁଥିବାର ସେମାନେ ଦେଖନ୍ତି, ସେତେବେଳେ ଆପେ ଆପେ ସମସ୍ତେ ରୋଦନ କରନ୍ତି ଓ ଚକ୍ରବାକୀକୁ ସହାନୁଭୂତି ଦେଖାଇ କହନ୍ତି—"ଭଉଣୀ ! ତୁ କାନ୍ଦ ନା ! ଏହି ବିୟୋଗ କାଳକୁ ତୁ

ଧୈର୍ଯ୍ୟର ସହିତ ବିତାଇ ଦେ' । ପୁନଶ୍ଚ ଯେତେବେଳେ ସେ ଶୁଭବେଳା ଆସିବ ସେତେ-ବେଳେ ଭଗବାନ ଭୁବନ-ଭାସ୍କର ପୁନର୍ବାର ଉଦିତ ହୋଇ ତୋର ସନ୍ତାପ ହରଣ କରିବେ । ତୋର ମିଳନର ତ ନିର୍ଦ୍ଧାରିତ ସୀମା ଅଛି, ସୂର୍ଯ୍ୟ ଉଦୟ ହେବାମାତ୍ରେ ତୋର ପ୍ରାଣେଶ୍ୱର, ତୋର ଜୀବନସର୍ବସ୍ୱ ତୋ' ସହିତ ମିଳିତ ହେବେ; କିନ୍ତୁ ଆମ ଅଭାଗିନୀଗଣଙ୍କର ତ କୌଣସି ସୀମା ନାହିଁ କିମ୍ବା କୌଣସି ନିର୍ଦ୍ଧାରିତ ସମୟ ନାହିଁ । ଶ୍ୟାମଘନ କେବେ କୃପାବାରି ବୃଷ୍ଟି କରିବେ, କେବେ ଏହି ଶୁଷ୍କ ହୃଦୟ ମରୁରେ ଶୀତଳ ଜଳ ସେଚିତ ହେବ, ଏହା ତ ତାଙ୍କ ଇଚ୍ଛା ଉପରେ ନିର୍ଭର କରେ । ଏଣୁ ତୁ ସତତ ଆମ୍ଭମାନଙ୍କ ଭଳି ବିରହିଣୀ, ତଥାପି ତୋର ବିୟୋଗର ସୀମା ରହିଛି ଓ ସମ୍ମିଳିତ ହେବାର ନିର୍ଦ୍ଦିଷ୍ଟ କାଳ ରହିଛି । ଆମ୍ଭମାନଙ୍କ ପାଇଁ କିନ୍ତୁ ସୀମା ସରହଦ୍ଦ କିଛି ନାହିଁ; ଆମ୍ଭେମାନେ ନିରାଶ ହୋଇ ଭ୍ରମଣ କରୁଛୁ ।''

ବନ ମଧ୍ୟରେ ଥିବା ବୃକ୍ଷରାଜିଙ୍କୁ ଅବଲୋକନ କରି ସେମାନେ କହନ୍ତି—''ହେ ବୃକ୍ଷରାଜି ! ତୁମ୍ଭମାନଙ୍କର ଜୀବନ ଧନ୍ୟ ; ତୁମ୍ଭେମାନେ କେଉଁଠାକୁ ହେଲେ ଯାଉନାହଁ ; ନିଜ'ସ୍ଥାନରେ ଠିଆହୋଇ ରହିଥାଅ, ଶ୍ୟାମସୁନ୍ଦର ନିଜେ ଆସି ତୁମ୍ଭମାନଙ୍କ ତଳେ ବସନ୍ତି; ଆମେ ତ ତାଙ୍କ ବିରହରେ ଧୈର୍ଯ୍ୟହରା, ତାଙ୍କ ପାଇଁ ବ୍ୟଥିତ, ବ୍ୟାକୁଳିତ, ଇତସ୍ତତଃ ଭ୍ରମଣ କରି ଭାବୁଛୁ ଶ୍ୟାମସୁନ୍ଦର ହୁଏତ ଆମ ପାଖକୁ ଆସି ବସିବେ; କିନ୍ତୁ ହାୟ ! ସେ ସୁ-ଅବସର ଆମ୍ଭମାନଙ୍କୁ ମିଳୁଛି କେଉଁଠି ?" ପୁନଶ୍ଚ ସେମାନେ ପାଷାଣଙ୍କୁ ନିରୀକ୍ଷଣ କରି କହନ୍ତି—''ହେ ପାଷାଣ ! ତୁମେ ଧନ୍ୟ । ଯେଉଁ ଶ୍ୟାମସୁନ୍ଦର ତୁମ ଉପରେ ବସି ଦଧିଭାତ ଖାଆନ୍ତି, ନିଜର ଉଚ୍ଛିଷ୍ଟ ପ୍ରସାଦ ତୁମ ଉପରେ ପକାନ୍ତି, ନିଜ ହାତରେ ସାଙ୍ଗ ସାଥୀଙ୍କୁ ଖୁଆଇବାରେ କି ସୁଖ ନୁହେଁ ସତେ ? ତାଙ୍କ ଅଧରାମୃତରେ ଉଚ୍ଛିଷ୍ଟ ପ୍ରସାଦ କେତେ ସ୍ୱାଦ ହୋଇ ନ ଥିବ ? ହାୟ ! ଆମ୍ଭେମାନେ ଯଦି ବ୍ରଜର ଶିଳା ହୋଇଥାଆନ୍ତୁ, ତେବେ ଆମ୍ଭମାନଙ୍କ ଜୀବନ ଧନ୍ୟ ହୋଇ ଥାଆନ୍ତା । ଶ୍ୟାମସୁନ୍ଦର ଆମ୍ଭମାନଙ୍କ ଉପରେ ଗଡ଼ପଡ଼ ହୁଅନ୍ତେ, ଗୋରୁ ଚରାଇ ଚରାଇ ଥକିପଡ଼ି ଆମ୍ଭମାନଙ୍କ ଉପରେ ବିଶ୍ରାମ ତ କରନ୍ତେ ; କିନ୍ତୁ ଆମ୍ଭେମାନେ ଏବେ ତାଙ୍କର କୌଣସି କାମରେ ଆସୁନାହୁଁ ।''

ଆତୁର ମଧ୍ୟ ଗୋରୁମାନଙ୍କୁ ଦେଖି ହାତଯୋଡ଼ି, ସେମାନଙ୍କୁ ଦଣ୍ଡବତ ହୋଇ କହନ୍ତି—''ହେ ଗୋ-ମାତା ! ତୁମ୍ଭମାନଙ୍କର ଜୀବନ ସଫଳ । ଶ୍ୟାମସୁନ୍ଦରଙ୍କର ସୁଖଦ ସ୍ପର୍ଶ ତୁମ୍ଭେମାନେ ନିତ୍ୟପ୍ରତି ପାଉଅଛ । ସେ ତୁମ୍ଭମାନଙ୍କ ପିଠିକୁ ଥାପଡ଼ାନ୍ତି, ଆଉଁଶନ୍ତି, ଆମ୍ଭମାନଙ୍କର ସେ ଭାଗ୍ୟ କାହିଁ ? ସେ ତୁମ୍ଭମାନଙ୍କର ନାମ ଧରି ଡାକନ୍ତି, ତୁମ୍ଭେମାନେ ଦୌଡ଼ା ଦୌଡ଼ି ହୋଇ ତାଙ୍କ ନିକଟକୁ ଚାଲିଆସ । ଆମ୍ଭମାନଙ୍କୁ ସେ ଖୋଜନ୍ତି ନାହିଁ, ଡାକନ୍ତି ନାହିଁ କିମ୍ବା ଏପରି କି ଆମ୍ଭମାନଙ୍କ ନାମକୁ ବି ଜାଣନ୍ତି କି ନାହିଁ ତାହା ସନ୍ଦେହ ।

ଆମ୍ଭମାନଙ୍କ କପରି ଅବା ତାଙ୍କର ଦିବ୍ୟ ସ୍ପର୍ଶ ମିଳି ପାରିବ ? ଆମ୍ଭେମାନେ ତାଙ୍କ ନିକଟକୁ ନିର୍ଭୟରେ ଯାଇ ବି ନ ପାରୁ । କାରଣ ଆମ୍ଭମାନଙ୍କର ଶାଶୁ, ନଣନ୍ଦ, ଦେବର ଓ ଦେଢ଼ଶୁର ଆଦି ସର୍ବଦା ଆମ୍ଭମାନଙ୍କ ଚତୁଃପାର୍ଶ୍ୱରେ ବାଡ଼ ଭଳି ଘେରି ରହିଛନ୍ତି ।”

ପୁନଶ୍ଚ ବର୍ଷାରେ ହେଉଥିବା କାଦୁଅକୁ ସେମାନେ ମୁଣ୍ଡରେ ଲଗାଇ କହନ୍ତି— “ହେ ବ୍ରଜର କର୍ଦ୍ଦମ ! ତୁମେ ଧନ୍ୟ; ଯେହେତୁ ତୁମେ ଶ୍ୟାମସୁନ୍ଦରଙ୍କ ଚରଣରେ ଲଟ୍‌ପଟ୍ ହୋଇ ଲଗିଯାଅ, ତାଙ୍କ ପାଦରେ ଚକଟି ହୋଇଯାଅ । ଆମ୍ଭେମାନେ ନିଜ ନିଜର ଉନ୍ନ ବକ୍ଷସ୍ଥଳରେ କୁଙ୍କୁମର ଲେପ ବହୁ ପରିମାଣରେ ଦେଉ, ଯେହେତୁ ଏହା ଉପରେ ଶ୍ୟାମସୁନ୍ଦରଙ୍କର ଅରୁଣ ଚରଣ ଯଦି ପଡ଼ିଯାଏ, ତାହାହେଲେ ତାହା ପୀତବର୍ଣ୍ଣ ହୋଇଯିବ; କିନ୍ତୁ ଜଣାପଡ଼ୁଛି ସେହି ଲେପ ଯେପରି ଶୁଖି ଯାଇଛି । ତାଙ୍କର ଚରଣ କମଳ ତାକୁ ବି ସ୍ପର୍ଶ କରୁ ନାହିଁ । ଯଦି କେବେ ପଡ଼ିଯାଏ, ତାହାହେଲେ ତାହା ଦଳି ହେବ ନାହିଁ କିମ୍ବା ତାଙ୍କ ପାଦରେ ଲଗିବ ନାହିଁ । ହାୟ ! ଆମ୍ଭେମାନେ ବ୍ରଜର ଧୂଳି ମଧ୍ୟ ହୋଇ ନାହୁଁ । ଯଦି ବ୍ରଜର ଧୂଳି ହୋଇଥାଆନ୍ତୁ, ତାହାହେଲେ ବସନ୍ତ ଓ ଗ୍ରୀଷ୍ମ ଋତୁରେ ଉଡ଼ି ଉଡ଼ି ଶ୍ୟାମସୁନ୍ଦରଙ୍କର ପଲକରେ, ଅଳକରେ, କପୋଳରେ, ବକ୍ଷସ୍ଥଳରେ ଓ ବାହୁଦ୍ୱୟରେ ଲଗିଯାଇଥାଆନ୍ତୁ ଓ ବର୍ଷା ଋତୁରେ କର୍ଦ୍ଦମ ହୋଇ ତାଙ୍କ ପାଦରେ ଚକଟି ହୋଇ-ଯାଆନ୍ତୁ ।”

ଏହିପରି ଭାବରେ ସେମାନେ ପ୍ରାଣୀମାନଙ୍କୁ ଜୀବନ ଦାନ କରୁଥିବା ବର୍ଷାଋତୁର ଦୁଇମାସ ବିଳାପ କରି ନେତ୍ରରୁ ନୀର ଗଡ଼ାଇ ବିତାଇ ଆଆନ୍ତି । ଜଣାପଡ଼େ ସତେଯେପରି ସେମାନେ ବର୍ଷାଋତୁ ସହିତ ନିଜ ନିଜକୁ ଏକୀଭୂତ କରି ଦେଇଛନ୍ତି । ଧୀରେ ଧୀରେ ଅନନ୍ତ ଚତୁର୍ଦ୍ଦଶୀ ବିତିଗଲା, ବର୍ଷାର ପ୍ରକୋପ କମି ଆସିଲା, ଆକାଶ ସ୍ୱଚ୍ଛ ହେବାକୁ ଲାଗିଲା ଓ ଶରତ୍ ଋତୁର ଶୁଭାଗମନ ହେଲା । ଚାତୁର୍ମାସ୍ୟ ବ୍ରତ ପାଳନ କରୁଥିବା ଲୋକମାନେ ଏବେ ବ୍ରତ ଉଦ୍‌ଯାପନ କରି, ବନ୍ଧନକୁ ତ୍ୟାଗକରି ସ୍ୱଚ୍ଛନ୍ଦରେ ବିଚରଣ କରିବାକୁ ଲାଗିଲେ । ଶ୍ରାବଣମାସରେ ନିଜ ନିଜର ପିତ୍ରାଳୟକୁ ଆସିଥିବା ଝିଅମାନେ ଶ୍ୱଶୁରାଳୟକୁ ଯିବାକୁ ଲାଗିଲେ । ବ୍ୟବସାୟ କରୁଥିବା ଲୋକମାନେ ବେପାର ବାଣିଜ୍ୟ କରିବା ପାଇଁ ଶଗଡ଼ରେ ବୋଝଲଦି ଘରୁ ବାହାରି ପଡ଼ିଲେ । ରାଜାଗଣ ଯୁଦ୍ଧ କରିବା ପାଇଁ ସୁସଜ୍ଜିତ ହୋଇ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ସେନାବାହିନୀ ସହିତ ଶୁଭ ଯାତ୍ରା ଆରମ୍ଭ କଲେ ; କିନ୍ତୁ ଗୋପିକାଗଣ ଯିବେ କୁଆଡ଼େ ? ସେମାନେ ଯାହାସବୁ ସମ୍ମୁଖରେ ଦେଖିବାକୁ ପାଇଲେ, ତାକୁ ଦେଖି କେବଳ କ୍ରନ୍ଦନ କରିବାକୁ ଲାଗିଲେ । ନଦୀର ସ୍ୱଚ୍ଛ ଜଳକୁ ଦେଖି କହିଲେ— “ଭଉଣୀ ! ତୋର ଜଳ ତ ନିର୍ମଳ ହୋଇଗଲା; କିନ୍ତୁ ଆମ୍ଭମାନଙ୍କ ମନର ମଳିନତା କଟିଲା ନାହିଁ ବରଂ ଅଧିକ ମଳିନ ହୋଇଗଲା । ମୋହନ ଯେ ପର୍ଯ୍ୟନ୍ତ ନିଜର କାୟ ଓ ମନକୁ ଆମ ସହିତ ନ ମିଳାଇଛନ୍ତି, ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କର ମଳିନ ମନ-ମୁକୁର

ବିକଶିତ ହୋଇ ପାରିବ ନାହିଁ । ତାହା ଏବେ ଆଚ୍ଛାଦିତ । ଶ୍ୟାମ ରୂପକ ସୂର୍ଯ୍ୟଙ୍କର ଦିବ୍ୟ-ପ୍ରକାଶ ଯେ ପର୍ଯ୍ୟନ୍ତ ଅମ୍ଭେମାନେ ପ୍ରାପ୍ତ ନ ହୋଇଛୁ, ସେ ପର୍ଯ୍ୟନ୍ତ ତାହା ବିକଶିତ ହୋଇ ପାରିବ ନାହିଁ ।"

ଶରତ୍ ଋତୁରେ ଧରଣୀରୁ ପଙ୍କ ସଫା ହୋଇ ଯାଇଛି, ଧରଣୀ ଏବେ କର୍ଦ୍ଦମ ରହିତ । ତାହା ଦେଖି ଗୋପାଙ୍ଗନାଗଣ ସମ୍ବୋଧନ କରି କହୁଛନ୍ତି—"ହେ ଧରଣୀ ! ତୁମେ ଧନ୍ୟା, ଯେହେତୁ ପ୍ରିୟ ଲୋକର ପଦାରବିନ୍ଦ ସ୍ପର୍ଶମାତ୍ରେ ତୁମେ କର୍ଦ୍ଦମ ରହିତ ହୋଇ ଯାଇଛ । ପଙ୍କରୁ ହିଁ ପଦ୍ମ ଜାତ ହୁଏ, ଏଥିପାଇଁ ଆମ୍ଭେମାନେ ନିଜ ନିଜ ହୃଦୟରେ ନିତ୍ୟ ପଙ୍କ ଲେପନ କରୁଅଛୁ । କାରଣ କେତେବେଳେ ହେଲେ ତ ଏଥିରେ ଅରୁଣ ଚରଣ-କମଳ ସ୍ପର୍ଶ ଲାଗିବ; କିନ୍ତୁ ଆମ୍ଭେମାନେ ଦେଖୁଛୁ ଆମ୍ଭମାନଙ୍କ ହୃଦୟର କୁଙ୍କୁମ ରୂପକ କର୍ଦ୍ଦମ ଲେପରେ ସେ ଚରଣ ସ୍ପର୍ଶ ନ କରି ତୁମ ବକ୍ଷସ୍ଥଳରେ ଶ୍ୟାମସୁନ୍ଦରଙ୍କର ପାଦପଦ୍ମ ଅଙ୍କିତ ହୋଇଅଛି । ତୁମ ବକ୍ଷସ୍ଥଳ ସେହି ଚରଣ ଚିହ୍ନରେ ଚିହ୍ନିତ । ପୁନଶ୍ଚ ସବୁଜ ବର୍ଣ୍ଣର ଘାସଗୁଡ଼ିକୁ ଅବଲୋକନ କରି ସେମାନେ କହୁଛନ୍ତି—"ହେ ଦୂର୍ବାଦଳ ! ଶ୍ୟାମସୁନ୍ଦରଙ୍କର ଚରଣସ୍ପର୍ଶରେ ତୁମ୍ଭେମାନେ ଶ୍ୟାମଳ ବର୍ଣ୍ଣ ଧାରଣ କରିଅଛ । ଆମେ ଅଭାଗିନୀଗଣ କେତେ ବର୍ଷାରେ ମଧ୍ୟ ଶୁଷ୍କ ମରୁଭୂମିତୁଲ୍ୟ ହୋଇ ପଡ଼ିଛୁ ।"

ଛୋଟ ଛୋଟ ଗାଡ଼ ଜଳରେ ରହୁଥିବା ମାଛଗୁଡ଼ିକୁ ଶରତକାଳୀନ ସୂର୍ଯ୍ୟଙ୍କର ପ୍ରଖର ତାପରେ ସନ୍ତପ୍ତ ହେଉଥିବାର ଦେଖି ଗୋପାଙ୍ଗନାଗଣ କହୁଛନ୍ତି—"ହେ ମତ୍ସ୍ୟକୁଳ ! ତୁମ ଦୁଃଖ ଆମ୍ଭମାନଙ୍କ ଦୁଃଖ ସହିତ ସମାନ । ତୁମ୍ଭେମାନେ ମଧ୍ୟ ଆମ୍ଭମାନଙ୍କ ପରି ସନ୍ତପ୍ତ ହୋଇ ବ୍ୟଥିତ ହେଉଅଛ ; କିନ୍ତୁ ତୁମ ଆମ ମଧ୍ୟରେ ଅନେକ ପାର୍ଥକ୍ୟ । ତୁମ୍ଭେମାନେ ଆମ୍ଭମାନଙ୍କ ଅପେକ୍ଷା ଅଧିକ ଭାଗ୍ୟବାନ । ଏକେତ ବର୍ଷାରେ ତୁମ୍ଭେମାନେ ନିଜର ଜୀବନ-ଧନଙ୍କର ଅଗାଧତା ଓ ପ୍ରାଚୁର୍ଯ୍ୟର ସୁଖ ଭୋଗ କରି ନେଇଛ, ଆମ୍ଭେମାନେ ଏବେ ସେଥିରୁ ବଞ୍ଚିତ । ଦ୍ୱିତୀୟତଃ ତୁମ୍ଭେମାନେ ଗଭୀରଜଳରେ ଶାନ୍ତିରେ ଅବସ୍ଥାନ କରୁଛ; କିନ୍ତୁ ଅମ୍ଭେମାନେ ଅହରହ ଛଟପଟ ହେଉଅଛୁ । ଏହା କେବେ ଦୂରୀଭୂତ ହେବ ତାହା ଶ୍ୟାମସୁନ୍ଦର ହିଁ ଜାଣନ୍ତି ।"

ବୃକ୍ଷ ଉପରେ ମାଡ଼ିଥିବା ପୁଷ୍ପଭରା ଲତାମାନଙ୍କୁ ଦେଖି ସେମାନେ କହିଥିଲେ—"ହେ ଲତାରାଜି ! ସ୍ତ୍ରୀ ଜାତି ହେବାର ଯେତେ ଶ୍ରେଷ୍ଠ ଗୌରବ, ତାହା ତୁମ୍ଭେମାନେ ପ୍ରାପ୍ତ ହୋଇଅଛ, ଯାହାକି ମହାଲକ୍ଷ୍ମୀଙ୍କୁ ପ୍ରାପ୍ତ ହୋଇ ନ ଥିବ । ତୁମ୍ଭେମାନେ ତୁମ୍ଭମାନଙ୍କ ପ୍ରାଣନାଥଙ୍କ ସହିତ ଅଷ୍ଟପ୍ରହର ବିଜଡ଼ିତ ହୋଇ ରହିଅଛ । ତୁମ୍ଭେମାନେ ନିଜ ନିଜର ବାହୁବନ୍ଧନରେ ତୁମ୍ଭମାନଙ୍କର ପ୍ରାଣନାଥଙ୍କୁ ବାନ୍ଧି ରଖିଅଛ ; କିନ୍ତୁ ଅମ୍ଭେମାନେ ଥରେ ମାତ୍ର ପ୍ରାଣନାଥଙ୍କୁ ଆଲିଙ୍ଗନ କରିବା ପାଇଁ ବ୍ୟାକୁଳ ହେଉଅଛୁ । ତୁମ୍ଭମାନଙ୍କର

ପ୍ରତିଲୋମକୂପରେ ପ୍ରସନ୍ନତା ଫୁଟି ଉଠୁଥିବାର ଆମ୍ଭେମାନେ ଦେଖି ପାରୁଛୁ । ତୁମ୍ଭେମାନେ ଉର୍ଦ୍ଧ୍ବରୁ ନିମ୍ନଦେଶ ପର୍ଯ୍ୟନ୍ତ ଆନନ୍ଦରେ ଝୁଲୁଅଛ । ମିଳିତ ଭାବରେ ଦୋଳାୟମାନ ହୋଇ କ୍ରୀଡ଼ା କରୁଅଛ ଏବଂ ଏ ଅଭାଗିନୀଗଣଙ୍କୁ ଦେଖି ହସୁଅଛ । ତୁମ୍ଭମାନଙ୍କ ଶିରରୁ ଏ ଯେଉଁ ପୁଷ୍ପ ଝରୁଅଛି, ତାହା ତୁମ୍ଭମାନଙ୍କର ସାତ୍ତ୍ୱିକ ଭାବ ଉଦୟ ହେବାର ସଙ୍କେତ ।”

ମୁଗ୍‌ଧାସଖୀ ଲତାମାନଙ୍କୁ କହିଲେ—“ହେ ଲତିକାରାଜି ! ଜଳ-ରୂପକ ଜୀବନ ପାଇଁ ତୁମ୍ଭେମାନେ ନିରସରୁ ସରସ ହୋଇଅଛ, ଶ୍ରେଷ୍ଠରୁ ବଡ଼ ହୋଇଅଛ; କିନ୍ତୁ ଆମ୍ଭେମାନେ ବଡ଼ ହୋଇ ଯାଇଥିଲେ ମଧ୍ୟ ଶ୍ୟାମସୁନ୍ଦରଙ୍କର ସ୍ପର୍ଶ ନ ପାଇ ଏବେ ସେହିପରି ରହିଅଛୁ ।”

ଶରତକାଳୀନ ଚନ୍ଦ୍ରଙ୍କୁ ଦେଖି ସେମାନେ କହିଲେ—“ହେ ନିଶାନାଥ ! ସଂସାରରେ ସମସ୍ତେ ତୁମକୁ ସବୁଠାରୁ ଅତ୍ୟଧିକ ସୁନ୍ଦର ବୋଲି କହନ୍ତି । କବିଗଣ ଶରଦଶଶିଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ତାଙ୍କୁ ଅସୀମ ସୌନ୍ଦର୍ଯ୍ୟମୟ ବୋଲି କହିଅଛନ୍ତି । ତୁମେ ଶରତ୍‌କାଳୀନ ସୂର୍ଯ୍ୟଙ୍କର ପ୍ରଖର କିରଣଦ୍ୱାରା ସନ୍ତପ୍ତ ପ୍ରାଣୀମାନଙ୍କୁ ରାତିକାଳରେ ଶାନ୍ତି ପ୍ରଦାନ କର; କିନ୍ତୁ ତୁମେ ଆମ୍ଭମାନଙ୍କୁ ଅଧିକ ସନ୍ତାପ ପ୍ରଦାନ କରୁଅଛ । ଆମ୍ଭମାନଙ୍କର ବିରହ ବ୍ୟଥାରେ ତୁମେ ଅଧିକରୁ ଅଧିକ ଜ୍ୱଳନ ସୃଷ୍ଟି କରୁଛ । ହେ ନଭୋମଣ୍ଡଳର ଶରଦଚନ୍ଦ୍ରମା ! ତୁମେ ଆମ୍ଭମାନଙ୍କର ସନ୍ତାପକୁ ଦୂରକରି ପାରିବ ନାହିଁ, ତାହା କେବଳ ବ୍ରଜଚନ୍ଦ୍ରମା ଦୂର କରିବାରେ ସମର୍ଥ; କିନ୍ତୁ ସେ ଆମ୍ଭମାନଙ୍କୁ ଆପଣାର ନ କରି କେବଳ ଆମ୍ଭମାନଙ୍କ ଉପରେ ଦାଉ ସାଧୁଛନ୍ତି । ତାଙ୍କ ନିକଟକୁ ଯିବାକୁ ନ ଦେଇ ଦୂର୍‌ଦୂର କରୁଛନ୍ତି । ଆମ୍ଭେମାନେ ତାଙ୍କୁ ଚାହୁଁଥିଲେ ମଧ୍ୟ, ସେ ଆମ୍ଭମାନଙ୍କୁ ଚାହୁଁ ନାହାନ୍ତି ।”

ଚନ୍ଦ୍ରମାଙ୍କ ସହିତ ଆକାଶରେ ହସୁଥିବା ତାରକାମାନଙ୍କୁ ଦେଖି କହୁଥିଲେ—“ହେ ତାରକାରାଶି ! ଆକାଶରେ ରହିବାର ସୁଫଳ ତୁମ୍ଭେମାନେ ହିଁ ଭୋଗ କରୁଅଛ । କାରଣ ଶଶାଙ୍କ ସ୍ୱୟଂ ନିଶାନାଥ ହୋଇ ମଧ୍ୟ ତୁମ ସମସ୍ତଙ୍କର ନାଥ ହୋଇପାରିଛନ୍ତି, ତୁମ୍ଭମାନଙ୍କୁ ହସାଉଛନ୍ତି, ଖୁସି କରାଉଛନ୍ତି ଓ ଆନନ୍ଦ ପ୍ରଦାନ କରୁଅଛନ୍ତି; କିନ୍ତୁ ଆମ୍ଭମାନଙ୍କର ପ୍ରାଣନାଥ ତ ଆମ୍ଭମାନଙ୍କୁ ଦୁଃଖ ଦେଉଛନ୍ତି, କନ୍ଦାଉଛନ୍ତି ଓ ଆମ୍ଭମାନଙ୍କ ସମ୍ମୁଖକୁ ଟିକିଏ ହେଲେ ଆସୁ ନାହାନ୍ତି । ବଙ୍କିମଠାଣିରେ ସେ ବଂଶୀ ବଜାଇ ବଜାଇ ଚାଲି ଯାଉଛନ୍ତି । ମନ୍ଦମନ୍ଦ ହସି ଚାଲି ଯାଉଥିବାରୁ ତାହା ଆମ୍ଭମାନଙ୍କ ପକ୍ଷେ କଟା ଘା’ରେ ଲୁଣ ଦେଲାପରି ପୀଡ଼ା ଦେଉଅଛି । ତୁମ୍ଭମାନଙ୍କ ମଧ୍ୟସ୍ଥଳରେ ରହି ବିଧୁବର ନିଜେ ହସି ତୁମ୍ଭମାନଙ୍କୁ ଯେପରି ହସାଉଛନ୍ତି, ଶ୍ୟାମସୁନ୍ଦର ସେହିପରି ଆମ୍ଭମାନଙ୍କ ମଧ୍ୟରେ ବସି ନିଜେ ହସି ଆମ୍ଭମାନଙ୍କୁ କେବେ ହସାଇବେ ? ଜ୍ୟୋତିଷୀ ତୁମ୍ଭମାନଙ୍କର ଗଣନା ଅନୁସାରେ ହିଁ ଲୋକମାନଙ୍କୁ ଶୁଭାଶୁଭ ଫଳ କହିଥାଆନ୍ତି, ଭବିଷ୍ୟତବାଣୀ କହିଥାଆନ୍ତି ।

ତୁମ୍ଭେମାନେ ତସ୍କାରର ଅମ୍ଭମାନଙ୍କର ସୌଭାଗ୍ୟର ଧନ ଆମମାନଙ୍କୁ କହୁଛ । କେବେ ଅମ୍ଭମାନଙ୍କର ସୌଭାଗ୍ୟୋଦୟ ହେବ ? କେବେ ଶ୍ୟାମସୁନ୍ଦରଙ୍କର କୃପାଦୃଷ୍ଟିରୂପକ ବୃଷ୍ଟିପାତରେ ଆର୍ଦ୍ର ହୋଇ ଅମ୍ଭେମାନେ ସର୍ବାଙ୍ଗରେ ଶୀତଳତା ଅନୁଭବ କରିବୁ । ପୁରୁଷ ପୁରୁଷଙ୍କ ମଧ୍ୟରେ କୌଣସି କଥା ଗୋପନ ରଖାଯାଇପାରେ; କିନ୍ତୁ ସ୍ତ୍ରୀ ସ୍ତ୍ରୀଙ୍କ ମଧ୍ୟରେ କୌଣସି କଥା ଲୁଚି ରହେନାହିଁ । ତୁମ୍ଭେମାନେ ତ ଆମରି ଜାତି, କେବଳ ଏତିକି ପ୍ରଭେଦ ଯେ ତୁମ୍ଭେମାନେ ହେଉଛ ସୌଭାଗ୍ୟଶାଳୀନୀ । ତୁମ୍ଭେମାନେ ପତିଙ୍କ ସଂଯୋଗ ଲାଭ କରିଅଛ; କିନ୍ତୁ ଆମ୍ଭେମାନେ ପତିଙ୍କ ପାଇଁ ଲାଳାୟିତା ।''

ବନ୍ୟ-ପୁଷ୍ପର ସୌରଭକୁ ବହନ କରି ସମୀରଣ ପ୍ରବାହିତ ହେଉଥିବାର ଦେଖି ଗୋପାଙ୍ଗନାଗଣ କହନ୍ତି—''ହେ ସମୀର ! ଶରତକାଳରେ ତୁମକୁ ଅତ୍ୟନ୍ତ ପ୍ରଶଂସା କରାଯାଏ । ତୁମେ ଏ ସମୟରେ ଅଧିକ ଥଣ୍ଡା ଅନୁଭୂତ ହୁଅ ନାହିଁ କିମ୍ବା ଅଧିକ ଉଷ୍ଣ ହୁଅ ନାହିଁ । ଏ ସମୟରେ ତୁମେ ସମଶୀତୋଷ୍ଣ । ଜ୍ୟେଷ୍ଠ ଆଷାଢ଼ ମାସଭଳି ଏ ସମୟରେ ତୁମେ ପ୍ରଚଣ୍ଡ ବେଗରେ ବି ପ୍ରବାହିତ ହୁଅ ନାହିଁ । ସୁଗନ୍ଧ ବହନ କରି ତୁମେ ମୃଦୁମନ୍ଦ ଗତିରେ ପ୍ରବାହିତ ହୋଇଥାଅ । ନିଜର ସୁଖଦ ସ୍ପର୍ଶରେ ତୁମେ ପ୍ରତ୍ୟେକ ପ୍ରାଣୀଙ୍କର ସନ୍ତାପ ହରଣ କରିଥାଅ; କିନ୍ତୁ ଅମ୍ଭମାନଙ୍କ ପାଇଁ ତୁମର ପକ୍ଷପାତ କିପରି ? ଅମ୍ଭେମାନେ ତ ବିରହ ତାପରେ ସନ୍ତପ୍ତ ହୋଇ ରହିଥିବୁ । ତୁମେ କହିପାର ଯେ, ଅମ୍ଭେମାନେ ଏଣୁତେଣୁ ଗୁଡ଼ାଏ ଚିନ୍ତା କରୁଅଛୁ, ଅଯଥା କଥା ଚିନ୍ତାକରି ଚିନ୍ତାମଗ୍ନ ହେଉଅଛୁ, ମୋ ଆଡ଼କୁ ଦୃଷ୍ଟିପାତ କରି ଚିନ୍ତାକରି ଦେଖ, ଯେ ପର୍ଯ୍ୟନ୍ତ କୌଣସି ସୁଖଦ ବସ୍ତୁରେ ପ୍ରାଣୀର ଚିତ୍ତନିବେଶ ହୋଇ ନ ପାରଇ, ସେ ପର୍ଯ୍ୟନ୍ତ ସେ ସେହି ସୁଖକୁ ଅନୁଭବ କରି ନ ପାରେ । ତେଣୁ ହେ ପବନ ଦେବ ! ତୁମର ଏ କଥା ସତ୍ୟ ହୋଇପାରେ; କିନ୍ତୁ ଆମ୍ଭେମାନେ ନିଜ ନିଜର ଚିତ୍ତକୁ ତୁମଠାରେ ଲଗାଇବୁ କିପରି ? ଅମ୍ଭମାନଙ୍କ ପାଖରେ ଯଦି ତାହା ଥାଆନ୍ତା, ତାହାହେଲେ ଲଗାଇବାରେ କିଛି ଆପତ୍ତି ନ ଥାନ୍ତା । ଅମ୍ଭମାନଙ୍କର ଚିତ୍ତକୁ ତ ଚିତ୍ତଚୋର ଶ୍ୟାମସୁନ୍ଦର ଚୋରାଇ ନେଇଛନ୍ତି । ତାହା ଅମ୍ଭମାନଙ୍କ ପାଖରେ ନାହିଁ । କିପରି ଅବା ଆମେ ତାହା ପ୍ରୟୋଗ କରିପାରିବୁ ?''

ପୁନଶ୍ଚ ସେମାନେ ସୂର୍ଯ୍ୟକିରଣରେ ମୁଦ୍ରିତ ହୋଇଥିବା, ସଙ୍କୁଚିତ ହୋଇଥିବା କୁମୁଦିନୀକୁ ଦେଖି କହୁଥିଲେ—''ହେ କୁମୁଦିନୀ ! ଭଗବାନ ଏ ସ୍ତ୍ରୀ ଜାତିକୁ କାହିଁକି ଯେ ଏପରି ହେୟ କରି ଗଢ଼ିଛନ୍ତି, ତାହା ଅମ୍ଭେମାନେ ଜାଣିପାରୁନାହୁଁ । ଏମାନଙ୍କ ହୃଦୟକୁ ତ ପିତାମହ ବ୍ରହ୍ମା ଏତେ ସରସ ଓ ସେବାପୂର୍ଣ୍ଣ କରି ଗଢ଼ିଲେ; କିନ୍ତୁ ପୁନଶ୍ଚ ଏ ଅଯଥା ସଙ୍କୋଚ କାହିଁକି ଏହାଙ୍କ ହୃଦୟରେ ଭରିଦେଲେ ? ତୁମେ ସୂର୍ଯ୍ୟଙ୍କ ଆଡ଼କୁ ଆଖି ଉଠାଇ ବି ଚାହିଁ ପାରୁନାହିଁ । କାରଣ ନିଶାନାଥଙ୍କ ହସକୁ ଦେଖି ହସିବା ହେଉଛି

ତୁମର ଧର୍ମ । ନିଶାରାଣୀଙ୍କର ଉପସ୍ଥିତିରେ ହିଁ ତୁମେ ନିଜର ମୁଖ ଖୋଲିପାର । ଏବେ ତୁମେ ଆମ୍ଭମାନଙ୍କ ଭଳି ମନମାରି ସଙ୍କୁଚିତ ହୋଇ ନିଜ ମୁଖକୁ ଲୁଚାଇ ରଖିବାକୁ ବାଧ୍ୟ ହେଉଛ । ଏହି ବିବଶତାର ମଧ୍ୟ କୌଣସି ସୀମା ନାହିଁ ।"

ଗାଭୀ, ମୃଗୁଣୀ ଓ ପକ୍ଷିଣୀମାନଙ୍କୁ ଦେଖି ସେହି ବିରହ ସନ୍ତପ୍ତା ଗୋପାଙ୍ଗନାମାନେ କହୁଥିଲେ—"ଭଉଣୀମାନେ ! ଏହି ଋତୁ ଆଗମନରେ ତୁମ୍ଭେମାନେ ତୃପ୍ତିମନ୍ତ ହୋଇଅଛ । ତୁମ୍ଭମାନଙ୍କର ଋତୁକାଳ ସାର୍ଥକ ହୋଇଅଛି । କାରଣ ତୁମ୍ଭମାନଙ୍କର ଅନାହୂତ ପତି ତୁମ୍ଭମାନଙ୍କୁ ଅନୁସରଣ କରୁଅଛନ୍ତି । ଆମେ ଅଭାଗିନୀଗଣ ତ ଏହି ସୁଖରୁ ବଞ୍ଚିତ ।"

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଙ୍କ ଅନୁରାଗରେ ଏହି ପ୍ରକାର ଅନୁରକ୍ତା ସେହି ବ୍ରଜାଙ୍ଗନାଗଣ ଜଳାଶୟର ଜଳକୁ ସ୍ୱଚ୍ଛ କରୁଥିବା ଶରତ୍‌ଋତୁରେ ଏହିପରିଭାବରେ ସନ୍ତାପିତ ହୋଇଥିଲେ । ସେହି ଶରତ୍‌ଋତୁରେ ଶ୍ୟାମସୁନ୍ଦର ଗୋ-ଗୋପାଳଙ୍କ ସହିତ କୁସୁମିତ କାନନରେ ପ୍ରବେଶ କଲେ । ସେହି ବନର ଶୋଭା ଅନୁପମ ଥିଲା । ଶରତ୍‌କାଳୀନ କମଳଗୁଡ଼ିକ ହସି ହସି ଜଳରେ ଦୋଳି ଖେଳୁଥିଲେ । ସୁଗନ୍ଧଯୁକ୍ତ ପୁଷ୍ପ ଓ ଫଳଭରା ବୃକ୍ଷରେ ପକ୍ଷୀମାନଙ୍କର କଳରବ ମୁଖରିତ ହୋଇ ଉଠୁଥିଲା । ତାହା ଏପରି ପ୍ରତୀତ ହେଉଥିଲା ଯେ ସତେ ଯେପରି ବୃକ୍ଷମାନେ ପଥିକମାନଙ୍କ ନିଜ ପାଦ ଦେଶରେ ଆଶ୍ରୟ ନେବାପାଇଁ ମଧୁର ସ୍ୱରରେ ହାତଠାରି ଡାକୁଛନ୍ତି । ନାନା ଜାତିର ଭ୍ରମର ବିଭିନ୍ନ ସ୍ୱରରେ ଗୁଣୁଗୁଣୁ ଗୀତ ଗାଉଛନ୍ତି । ପକ୍ଷୀମାନଙ୍କର କଳରବ ଗିରି ଗହ୍ୱରମାନଙ୍କରେ, ନଦନଦୀ ତଥା ସରିତ, ସରୋବର ଆଦିର ସ୍ୱଚ୍ଛ ସଲିଳରେ ପ୍ରତିଧ୍ୱନିତ ହୋଇ ବନ୍ୟ ପ୍ରଦେଶରେ ଏକ ପ୍ରକାରର ବିଚିତ୍ର ଧ୍ୱନି ଭରି ରହିଛି । ଏଭଳି ସୁଖଦ ସମୟରେ ଏ ପ୍ରକାର ଶୋଭାଯୁକ୍ତ ବନରେ ବନମାଳୀ ବଂଶୀ ବଜାଉଛନ୍ତି । ସେହି ବଂଶୀଧ୍ୱନି ଶୁଣି ବ୍ରଜାଙ୍ଗନାଗଣଙ୍କର ଦଶା ଯାହା ହୋଇଥିଲା, ତାହା ପ୍ରସଙ୍ଗକ୍ରମେ ଧୀରେ ଧୀରେ ଆଗକୁ ବର୍ଣ୍ଣନା କରିବି । ମୁନିଗଣ ! ଆପଣମାନେ ମୋର ଏହି କଥା ଶୁଣି ବୋଧହୁଏ ଏବେ ବିରକ୍ତ ହୋଇ ଯାଇଛନ୍ତି ?"

ଶୌନକ କହିଲେ—"ହେ ସୂତ ! ଏଥିରେ ବିରକ୍ତ ହେବାର କ'ଣ କାରଣ ଅଛି ? ଏହାତ ଅତି ସରସ ସାହିତ୍ୟିକ ପ୍ରସଙ୍ଗ । ଆପଣ ଏହା ଯେତେ ବିସ୍ତାରିତ ଭାବରେ ଏହି ପ୍ରସଙ୍ଗ ଶୁଣାଉଛନ୍ତି ଶୁଣାନ୍ତୁ । ଏହା ଦ୍ୱାରା ଅମ୍ଭମାନଙ୍କର ଆନନ୍ଦ ବୃଦ୍ଧି ପାଇବ ।"

ସୂତ କହିଲେ—"ଭଗବନ୍ ! ମୁଁ ଏହାର କି ବିସ୍ତାର କରି ପାରିବି ? ତଥାପି ଏହି ପ୍ରସଙ୍ଗକୁ ମୁଁ ଧୀରେ ଧୀରେ ଧୈର୍ଯ୍ୟର ସହିତ କହି ଶୁଣାଇବି । ଆପଣମାନେ ସମାହିତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ସୁଖଦ ଶରଦକୋ ସମୟ ସରିତ ସର ସ୍ୱଚ୍ଛ ଭୟେ ସବ ।
ଗୋ-ଗୋପାଲ ସମେତ ଶ୍ୟାମ ପ୍ରବେଶେ ବନମହଁ ତବ ॥
ସଘନ ସଫଲ ଦ୍ରୁମ ସୁମନ ସହିତ କୋମଲ ପଲ୍ଲବଯୁତ ।
ଶୁକ, ପିକ, କେକୀ ଆଦ ଉଡ଼େ ଖଗ ଜିନପେ ଇତ ଉତ ॥
ଶାରଦୀୟ ବକସେ କମଲ, ପ୍ରକୃତିବଧୁ ସବ ବଧି ସଜୀ ।
ହ୍ୟ ମନସିଜକ୍ ଉଦୟ କର, ତବ ମେ ହୁନ ମୁରଲୀ ବଜୀ ॥



## ବେଣୁ-ବାଦନ

ବର୍ହାପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରମ୍ ।
ବିଭ୍ରଦ୍‌ବାସଃ କନକକପିଶଂ ବୈଜୟନ୍ତୀଂ ଚ ମାଲାମ୍ ॥
ରନ୍ଧ୍ରାନ୍‌ବେଣୋରଧରସୁଧୟା ପୂରୟନ୍‌ଗୋପବୃନ୍ଦୈ— ।
ର୍ବୃନ୍ଦାରଣ୍ୟ ସ୍ୱପଦରମଣଂ ପ୍ରାବିଶଦ୍ ଗୀତକୀର୍ତ୍ତିଃ ॥

(ଶ୍ରୀ ଭା ୧୦ସ୍କ. ୨୧ଅ, ୫ଶ୍ଳୋ:)

## ଛପ୍‌ପୟ

ଶ୍ରବଣ ଶବଦ ସୁନ ରହୀଂଠଗୀ-ସୀ ସବ ବ୍ରଜନାରୀ ।
କଛୁ ଗୁନ ବରନନ କରେଂ ବଧୂନ ମନ ବାତ ବଗରୀ ॥
କରେଂ ଯା କଛୁକ ଆରମ୍ଭ ସ୍ମୃତି ମୋହନକୀ ଆଇ ।
ତବ ଭଉ ଚଞ୍ଚଲ ଭୟେ। ଦେହ କୀ ସୁରତି ଭୁଲାଇ ॥
ଅପର ସମ୍ହାର ବୋଲୀ-ଅଲୀ, ମୁରଲୀ ଅଧରାମୃତ ଭରହିଁ ॥
ପୁନ ଫୂଙ୍କ ଫୂକେ ନନ୍ଦନନ୍ଦନ, ଛିଦ୍ରନତେଂ ବତରାତ କରହିଁ ॥

ରୂପର ଆକର୍ଷଣ ତ ସ୍ୱାଭାବିକ । ସ୍ୱର ଶବ୍ଦର, ଧ୍ୱନିର ଓ ସଙ୍ଗୀତର ମଧ୍ୟ ଏକ ପ୍ରବଳ ଆକର୍ଷଣ ରହିଛି । ଯଦି ସେହି ଧ୍ୱନିର ଉଦ୍‌ଗମ ସ୍ୱୟଂ ଆକର୍ଷକ ହୁଏ, ତାହାହେଲେ ତ କିଛି କହିବାର ନାହିଁ । ବିଷ ପ୍ରଦାନ କରି ତ ସମସ୍ତେ ମାରି ପାରନ୍ତି; କିନ୍ତୁ ଅମୃତ ପାନ କରାଇ ଯେ ମୃତ ସଦୃଶ କରାଇ ପାରେ ଏଥିରେ ତାହାର ବିଶେଷତ୍ୱ କଳ୍ପିତ ଭାବରେ ରହିଛି । ଅସ୍ତ୍ର-ଶସ୍ତ୍ର ଦ୍ୱାରା ତ ସମସ୍ତେ ଆହତ କରି ପାରନ୍ତି, ଯେ ସୁଖଦ ଶବ୍ଦ ଶୁଣାଇ ମୂର୍ଚ୍ଛିତ କରାଇ ପାରେ ସେ ବାସ୍ତବିକ୍ ଶୂରବୀର । ଥରେ ଭକ୍ତମାନଙ୍କ ମଧ୍ୟରେ ନିଜ ନିଜର ଉପାସ୍ୟ ଦେବତାଙ୍କ ବିଷୟରେ ବାଦ ବିବାଦ ହେଲା । କଥା ବଢ଼ିଯିବାରୁ ମାରପିଟ୍ ପର୍ଯ୍ୟନ୍ତ ପରିସ୍ଥିତି ଉପୁଜିଲା । ଅଭିଯୋଗ ଯାଇ ରାଜାଙ୍କ ନିକଟରେ ପହଞ୍ଚିଲା । ରାଜା କହିଲେ—"ଭାଇ ! ଏପରି ମୁଁ ତୁମ୍ଭମାନଙ୍କର ଅଭିଯୋଗ ନିର୍ଣ୍ଣୟ କରିବି ନାହିଁ । ତୁମ୍ଭେମାନେ ନିଜ ନିଜର ଇଷ୍ଟଙ୍କର ମୂର୍ତ୍ତି ତିଆରି କରି ଏଠାକୁ ଆଣି ଆସ ।" ଏହି ଆଜ୍ଞା ପାଇବା ମାତ୍ରେ ସମସ୍ତେ ନିଜ ନିଜର ଇଷ୍ଟଙ୍କର ଆୟୁଧ ଓ ବାହାନଙ୍କ ସହିତ ମୂର୍ତ୍ତି ଗଠନ କରି ଆଣିଲେ । କେହି ବୃଷ ବାହାନରେ ବସିଥିଲେ, ହାତରେ ତ୍ରିଶୂଳ, ଖଡ୍‌ଗ, ଖର୍ପ ଆଦି ଧରିଥିଲେ । କେହି ସିଂହ ବାହନରେ, କେହି ମଇଁଷି ଉପରେ, କେହି ଗଧ ଉପରେ ତ ଓ କେହି କୁକ୍‌କୁଟ ଉପରେ ବସିଥିଲେ । ସେମାନଙ୍କ ହସ୍ତରେ ଧାରୁଆ ତରବାରି, ଢାଲ, ମୁଣ୍ଡମାଳା ଆଦି ଥିଲା । କେହି ମୂଷା ବାହନରେ ବସିଥିଲେ, କାହାର କାହାର ଚତୁର୍ଭୁଜ ଥିଲା ଓ ସେଥିରେ ଚକ୍ର ଗଦା ଆଦି ଧାରଣ କରିଥିଲେ । କେହି ଧନୁର୍ବାଣ ଧାରଣ କରିଥିଲେ । ସେମାନଙ୍କ ମଧ୍ୟରେ ଏକ ବାଙ୍କ ଗୋଡ଼ଥିବା ଦେବତା ଥିଲେ, ଯେ କି ତ୍ରିଭଙ୍ଗୀ ଠାଣିରେ ଠିଆ ହୋଇ ଅଷ୍ଟଛିଦ୍ର ଥିବା ଏକ ବଂଶୀ ବଜାଉ ଥିଲେ । ରାଜା ସମସ୍ତ ଇଷ୍ଟ ଦେବତାଙ୍କୁ ଦେଖି ଭକ୍ତମାନଙ୍କୁ ପଚାରିଲେ—"ଏମାନେ ସବୁ ଭିନ୍ନ ଭିନ୍ନ ଅସ୍ତ୍ରଶସ୍ତ୍ର କାହିଁକି ଧାରଣ କରିଛନ୍ତି ?"

ଭକ୍ତମାନେ କହିଲେ—"ଦୁଷ୍ଟ ଦଳନ କରିବା ପାଇଁ ଆମର ଇଷ୍ଟମାନେ ସର୍ବଦା ଅସ୍ତ୍ରଶସ୍ତ୍ର ଧାରଣ କରି ଥାଆନ୍ତି । ଦୁଷ୍ଟଙ୍କୁ ଦମନ କରୁ ନ ଥିଲେ ଶିଷ୍ଟମାନଙ୍କର ରକ୍ଷା ହୁଅନ୍ତା କିପରି ?"

ରାଜା ସେହି ମୁରଲୀଧାରୀ ମନୋହର ମୂର୍ତ୍ତିକୁ ଦେଖି ପଚାରିଲେ—"ଏହାଙ୍କର ଅସ୍ତ୍ର ଆୟୁଧ କ'ଣ ?"

ମୁରଲୀଧାରୀଙ୍କର ଭକ୍ତ କହିଲେ—"ମହାରାଜ ! ଆପଣ ଏହାଙ୍କର ଅସ୍ତ୍ର ବୋଲି ଭାବନ୍ତୁ ବା ଆୟୁଧ ବୋଲି ଭାବନ୍ତୁ, ଏହି ମୁରଲୀ ସବୁକିଛି । ଏହାର ଧ୍ୱନି ବଡ଼ ବଡ଼ ସହୃଦୟଙ୍କୁ ଆକର୍ଷିତ କରିଥାଏ, ବିହ୍ୱଳିତ ଓ ଆକୁଳିତ କରିଥାଏ ।"

ରାଜା କହିଲେ—"ତାହାହେଲେ, ମୋତେ ତ ଏହି ଇଷ୍ଟ ସବୁଠାରୁ ଭଲ ଜଣାପଡ଼ୁଛନ୍ତି, ଯେ କି ମଧୁର ସ୍ୱନରେ ମୁରଲୀ ବଜାଉଛନ୍ତି । ଯାହାଙ୍କୁ ଦେଖିଲେ ଭୟ ଲାଗୁନାହିଁ କି ସଙ୍କୋଚ ହେଉ ନାହିଁ । ସଖ୍ୟରସ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସଖା ହୋଇଯିବାକୁ ହୁଏ, ବାତ୍ସଲ୍ୟରସ ବିଶିଷ୍ଟ ବ୍ୟକ୍ତିଙ୍କ ପାଇଁ ପୁତ୍ର ଓ ମଧୁରରସ ବିଶିଷ୍ଟ ପାଇଁ ପ୍ରିୟ ହେବାକୁ ହୁଏ ।"

ସାରକଥା ଏହି ଯେ, ଶ୍ରୀକୃଷ୍ଣ ବିନା ଅସ୍ତ୍ର ଆୟୁଧରେ ମୁରଲୀଦ୍ୱାରା ହିଁ ସମସ୍ତଙ୍କ ହୃଦୟକୁ ତନ୍ମୟ କରିଥାଆନ୍ତି । ଏହାଙ୍କ ତ୍ରିଭୁବନ ମୋହନ ରୂପରେ ଯେତିକି ଆକର୍ଷଣ, ତାଙ୍କର ବେଣୁନାଦରେ ମଧ ସେତିକି ଆକର୍ଷଣ । ଏଥିପାଇଁ ଗୋପିକାଗଣ ବଂଶୀ ସ୍ୱନରେ ଆକୃଷ୍ଟ ହୋଇ ସେମାନଙ୍କର ସୌଭାଗ୍ୟକୁ ସର୍ବଦା ପ୍ରଶଂସା କରୁଥିଲେ ।

ସୂତ କହୁଛନ୍ତି—"ମୁନିଗଣ ! ପ୍ରାଣୀମାନଙ୍କର ସୁଖପ୍ରଦ ଶରତ୍ତୃତୁରେ ଗୋପାଳ ବେଶରେ ଶ୍ୟାମସୁନ୍ଦର ଗୋଗୋଷ୍ଠ ନେଇ ବୃନ୍ଦାରଣ୍ୟରେ ପ୍ରବେଶ କଲେ ଓ ସନ୍ଧ୍ୟା ହେବାରୁ ଫେରିଆସି ଗୋଷ୍ଠ ନିକଟରେ ବଂଶୀ ବଜାଇଲେ, ସଙ୍କେତଯେପରି ବ୍ରଜାଙ୍ଗନାଗଣଙ୍କ ଆଗମନ ଏହା ଥିଲା ଶୁଭ ସୂଚନା । ଶ୍ୟାମସୁନ୍ଦର ଏବେ ବ୍ରଜଠାରୁ ଦୂରରେ, ସେମାନଙ୍କର ନେତ୍ର ରୂପସୁଧା ପାନ କରିବା ପାଇଁ ଲାଳାୟିତ ଥିଲେ; କିନ୍ତୁ ବେଣୁ ନାଦର ମାଧୁରୀରେ ସେମାନଙ୍କର ଶରୀର ବିକସିତ-ଭଳି ହୋଇଗଲା । ସେହି ବେଣୁନାଦ ତ ସ୍ୱୟଂ ବ୍ରଜବଲ୍ଲଭଙ୍କ ବେଣୁନାଦ, ଯାହା କି କୋଟି କନ୍ଦର୍ପଙ୍କର ଦର୍ପକୁ ଦଳନ କରିପାରେ । ମନରେ ଏହି ଭାବ ଆସିବାକ୍ଷଣି ସେମାନଙ୍କ ପ୍ରେମଭାବ ଉଦ୍ଦୀପ୍ତ ହୋଇ ଉଠିଲା । ସେମାନଙ୍କ ମନ ମଧ୍ୟରେ ଏକ ଇଚ୍ଛା ହେଲା ଯେ, 'ଏହି ବେଣୁବାଦନ ବିଷୟକୁ ନେଇ କିଛି ଆଲୋଚନା କରିବେ । ଏହା ଚିନ୍ତାକରି ସେମାନେ କହିବାକୁ ଉଦ୍ୟତ ହେଲେ ଓ ସମସ୍ତେ କହିଲେ—"ସଖିଗଣ ! ସତେ ତ ଶ୍ୟାମସୁ......"

ବାସ୍, ସେହି 'ଶ୍ୟାମ' ଏତିକି ମାତ୍ର ବାକ୍ୟ ଉଚ୍ଚାରଣ କରି ପାରିଥିଲେ । 'ସୁନ୍ଦର' ଶବ୍ଦକୁ ପୂର୍ଣ୍ଣରୂପେ କହି ପାରିଲେ ନାହିଁ । ଚଳଚିତ୍ର ପଦ୍ଧତି ଚିତ୍ତଚୋରଙ୍କର ଚାରୁଚରିତ୍ର ସ୍ମରଣ ହେବାମାତ୍ରେ ସେମାନଙ୍କର ଚିତ୍ତ ଚଞ୍ଚଳ ହୋଇ ଉଠିଲା । ସ୍ମର ବେଗ କାରଣରୁ ସେମାନଙ୍କର ବାଣୀ ରୁଦ୍ଧ ହୋଇଗଲା, କଣ୍ଠ ରୁଦ୍ଧ ହୋଇଗଲା । ସେମାନେ କିଛି କହିବାକୁ ଚାହୁଁଥିଲେ; କିନ୍ତୁ ବାଣୀ ସହିତ ସାମଞ୍ଜସ୍ୟ ରହି ପାରିଲା ନାହିଁ । ସ୍ୱର ଗଦ୍‌ଗଦ୍ ହେବାରୁ ତାହା ଅଟକିଗଲା । ସେମାନେ ଆଉ କିଛି କହିବାକୁ ସମର୍ଥ ହେଲେ ନାହିଁ ।

ହୃଦୟର ଭାବ ମୁଖମଣ୍ଡଳରେ ସ୍ପଷ୍ଟଭାବରେ ଝଲକି ଉଠେ । ଭୁକ୍ତଭୋଗୀ ତାହା ଜାଣି-ପାରନ୍ତି । ଗୋପୀମାନଙ୍କର ଏପରି ପ୍ରେମୋଦ୍ରେକ ହେବା ଅବସ୍ଥା ଦେଖି ଜଣେ ଅନ୍ୟମାନଙ୍କୁ ସୁଖୀ କରିବା ପାଇଁ ଶ୍ରୀକୃଷ୍ଣଙ୍କର ବାହ୍ୟ ବେଶ ବର୍ଣ୍ଣନା କରିବାରେ ଲାଗିଲା । ଭାବସମାଧିରେ,

ପ୍ରେମର ପ୍ରବଳତାରେ, ପ୍ରିୟତମଙ୍କ ଗୁଣ ଶ୍ରବଣରେ ଏକପ୍ରକାରର ମଧୁର ମଧୁର ସୁଖ ଲାଭ ହୋଇଥାଏ । ପ୍ରେମହିଲ୍ଲୋଳ ଯାହାଙ୍କ ହୃଦୟରେ ଯେତେ ତୀବ୍ର ହୋଇ ଉଠେ, ସେ ସେତେ ଅଧିକ ମୂର୍ଚ୍ଛିତ ହୋଇ ପଡ଼ନ୍ତି । ଯେଉଁ ସଖୀ କିଛି କହିବାକୁ ଉଦ୍ୟତ ହୋଇଥିଲା, ସେ ଏହିସବୁ ସଖୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଥିଲା । ଅଚ୍ୟୁତଙ୍କର ଏହା ପ୍ରତି ଅନୁରାଗ ଅନୁପମ ଥିଲା । ଅନ୍ୟ ସଖୀଗଣ ତ ତାଙ୍କର କିଙ୍କରୀ ଥିଲେ । ସେମାନେ ନିଜର ପୂଜ୍ୟାଙ୍କୁ ପ୍ରେମପାଗଳିନୀ ଦେଖି ପ୍ରତ୍ୟେକେ ବାରମ୍ବାର ତାଙ୍କୁ ଶ୍ରୀକୃଷ୍ଣଙ୍କ ରୂପମାଧୁରୀ ସହିତ ବେଣୁ-ମାଧୁରୀରସ ପାନ କରାଇବାକୁ ଲାଗିଲେ । ସେହି ବେଣୁଗୀତ ହିଁ ରାସଲୀଳାର ପୃଷ୍ଠ ଭୂମିକା ରାସୋତ୍ସବ ନିମିତ୍ତ ଯେପରି ପ୍ରଥମ ରଙ୍ଗଭୂମି ରଚନା କରାଯାଏ, ସେହିପରି ବେଣୁ ବଜାଇ ବନମାଳୀଙ୍କୁ ତ ରାସପାଇଁ ଚେତାବନୀ ଦେବାକୁ ହେବ । ତାହା ହେଉଛି ତୁମେସବୁ ପ୍ରସ୍ତୁତ ହୋଇଯାଅ । ଦିନେ ଏପରି ବେଣୁ ବାଜିବ ଯେ, ସେହି ସଙ୍କେତକୁ ପାଇବା ମାତ୍ରେ ତୁମ୍ଭେମାନେ ନିଜ ନିଜ ଘରୁ ବାହାରି ଆସିବ । ଏଣେ ଗୋପୀକାଗଣ ବେଣୁଗୀତ ଗାଇ ନିଜେ ନିଜେ ପ୍ରସ୍ତୁତ ହୋଇ ଯାଇଥିଲେ । ଅନ୍ତିକସ୍ଥର ପୂର୍ବ ଅଭ୍ୟାସ କରୁଥିଲେ । କାରଣ ସହସା ସେହି ପରମାନନ୍ଦ ଦିବ୍ୟ ସୁଖକୁ ସହନ କରିବାର ସାମର୍ଥ୍ୟ କେଉଁ ସୁନ୍ଦରୀର ଆଳପାରେ । ପ୍ରେମର ମାଧୁରିମା କ୍ରମଶଃ ଉତ୍ତରୋତ୍ତର ବୃଦ୍ଧିପାଏ । ଏହା କେତେଦୂର ବୃଦ୍ଧିପାଏ, ତାହାର କୌଣସି ସୀମା ସରହଦ ନାହିଁ, ମର୍ଯ୍ୟାଦା ନାହିଁ, ଆରପାରି ନାହିଁ । ଏହା କେବଳ ବୃଦ୍ଧିପାଏ ।

ହଁ, ଏହି ପ୍ରେମଭାବରେ ଭାବିତ-ଭାବ-ସମାଧିରେ ସ୍ଥିତ ପ୍ରଧାନା ଶ୍ରୀଜୀଙ୍କୁ ଶୁଣାଇ, ଆହ୍ୱାନ କରୁଥିବା ଏକ ଅନୁରାଗବତୀ ସଖୀ କହିବାକୁ ଲାଗିଲା—"ସଖୀଗଣ ! ଏହି ସୁମଧୁର ମୋହକ ସ୍ୱରକୁ ଶ୍ରବଣ କରି ମୋତେ ଏପରି ପ୍ରତୀତ ହେଉଛି ଯେ, ସତେ ଯେପରି ତାଙ୍କର ସେହି ଛିଦ୍ରବିଶିଷ୍ଟ ଚକ୍‌କଣ ମୁରଲୀରେ ମଦନମୋହନ ନିଜ ଅଧରର ଅଦ୍ଭୁତ ଅମୃତ ଭରି, ପୁନଶ୍ଚ ତାହା ଫୁଙ୍କି ସେହି ରସକୁ ଉଦାରତା-ପୂର୍ବକ ବାୟୁମଣ୍ଡଳରେ ବିସ୍ତାର କରୁ ଅଛନ୍ତି । ଏହା ବଜାଇ ବଜାଇ ସେ ଗୋ-ଗୋଷ୍ଠ ପଛେ ପଛେ ପୁଣି ବ୍ରଜକୁ ଫେରିବେ ।"

ଏହା ଶୁଣି ସଖୀଗଣଙ୍କର ଶରୀର ରୋମାଞ୍ଚିତ ହୋଇ ଉଠିଲା । ସମସ୍ତେ ଶ୍ୟାମକଥା ଶୁଣିବାପାଇଁ ଅଧୀର ହୋଇପଡ଼ିଲେ । ଜଣେ ପଚାରିଲା—"ଶ୍ୟାମସୁନ୍ଦର କିପରି ମୁରଲୀ ବଜାନ୍ତି ?"

ସେ କହିଲା—"ସଖି ! ଶ୍ୟାମଙ୍କର ଏକରୁ ଆରେକ ଅଦ୍ଭୁତ ଛଟା । ସେ ତ ପ୍ରତିଦିନ ରଙ୍ଗ ବଦଳାନ୍ତି ; କିନ୍ତୁ ଅମ୍ଭମାନଙ୍କୁ ତ ତାଙ୍କର ଗୋପବେଶ ଖୁବ୍ ଭଲଲାଗେ । ତାଙ୍କ ଶିରରେ ମୟୂର ମୁକୁଟ, କର୍ଣ୍ଣରେ କର୍ଣ୍ଣିକାରର କମନୀୟ କୁସୁମ, ପ୍ରଶସ୍ତ ପୀତାମ୍ବର ପରିହିତ । ସୁହୃଦ ସଖାଗଣ ତାଙ୍କ ସହିତ ରହି ତାଙ୍କର ସୁଯଶ ଗାନ କରୁଅଛନ୍ତି । ସେ

ଗୋ-ଗୋଷ୍ଠରେ ବେଣୁ ବଜାଇ ହସି ହସି ଆଗେ ଆଗେ ଚାଲିଛନ୍ତି । ସମସ୍ତଙ୍କୁ ଖୁସି କରାଇ, ପ୍ରେମରସ ବୃଷ୍ଟି କରାଇ ବ୍ରଜରେ ପ୍ରବେଶ କରୁ ଅଛନ୍ତି । ଏହି ଶୋଭା ତାଙ୍କର ଧ୍ୟାନ ଯୋଗ୍ୟ ଶୋଭା । ମୁଁ ଜାଣିପାରୁଛି, ସେହି ନଟବର ବେଶରେ ବହାରି ବୋଧହୁଏ ବନରୁ ଫେରି ବ୍ରଜରେ ପ୍ରବେଶ କରୁ ଅଛନ୍ତି ।" ଏହା କହୁ କହୁ ସେ ମୂର୍ଚ୍ଛିତ ହୋଇଗଲା ।

ସୂତ କହୁଛନ୍ତି—"ମୁନିଗଣ ! ହୃଦୟରେ ନିଜ ପ୍ରିୟତମଙ୍କର ତୀବ୍ର ସ୍ମୃତି ହେଉ, ତାହାହେଲେ ଧ୍ୟାନରେ ପ୍ରିୟତମଙ୍କର ପ୍ରତ୍ୟକ୍ଷ ଦର୍ଶନ ହୁଏ । ଏପରି ପ୍ରତୀତ ହୁଏ ଯେ, ଧ୍ୟାନରେ ଆମେ ତାଙ୍କର ମନୋମୟୀ ମୂର୍ତ୍ତିକୁ ଆଲିଙ୍ଗନ କରୁଥାଉଁ । ସେହି ମାନସିକ ମିଳନ କେତେ ଯେ ସୁଖଦାୟକ, ତାହା କେବେହେଲେ ସେମାନେ କଳ୍ପନା କରିପାରନ୍ତି ନାହିଁ, ଯେଉଁମାନେ କି କେବେହେଲେ ଏକାନ୍ତରେ ଏକାଗ୍ରଚିତ୍ତ ହୋଇ ନିଜ ନିଜର ଇଷ୍ଟଙ୍କୁ ଧ୍ୟାନ ନ କରିଛନ୍ତି । ଏହି ଗୋପିକାଗଣ ତ ନିତ୍ୟସିଦ୍ଧା ଥିଲେ, ଏହାଙ୍କୁ ତ କିଛି ଶିଖାଇବାର ନ ଥିଲା । କାରଣ ଏମାନଙ୍କୁ ସବୁକିଛି ଜଣାଥିଲା । ଏଣୁ ଏମାନେ ନିଜ ନିଜ ମଧ୍ୟରେ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ସମ୍ବନ୍ଧରେ ଚର୍ଚ୍ଚା କରି ମନକୁ ମନ ମୋହନଙ୍କର ମନୋହର ମୂର୍ତ୍ତିକୁ ଆଲିଙ୍ଗନ କରିବାକୁ ଲାଗିଲେ । ମୁନିଗଣ ! ଗୋପୀଗଣ ଯେଉଁ ବେଣୁର ଉପଲକ୍ଷ୍ୟ ଦେଇ ନିଜ ନିଜର ମନୋଭାବକୁ ବ୍ୟକ୍ତ କରୁଥିଲେ, ତାହା ମୁଁ ପ୍ରସଙ୍ଗ କ୍ରମେ ଆଗକୁ କହିବି । ଏହି ବିଷୟ ଏତେ ଗମ୍ଭୀର ଓ ସରସ ଯେ, ଏଥିରେ ଯେଉଁସ୍ଥଳରେ ପ୍ରାକୃତ ଭୋଗ ବୃଦ୍ଧି ହେଉଥାଏ, ସେ ସ୍ଥଳରେ ସବୁକିଛି ନିଷ୍ଫଳ ହୋଇଯାଏ । ଏହା ସାଧାରଣ ସ୍ତ୍ରୀ ପୁରୁଷଙ୍କ ଚରିତ ନୁହେଁ କିମ୍ବା ପ୍ରାକୃତ ଭାବ ନୁହେଁ । ଏହା ହେଉଛି ଦିବ୍ୟାତିଦିବ୍ୟ ମଧୁରାତି ମଧୁର ଅଲୌକିକ ଅପ୍ରାକୃତ ରସ । ଏଥିରେ ବିଷୟବାସନାର ଗନ୍ଧ ବି ନାହିଁ । ଏହା ବିଶୁଦ୍ଧ ପ୍ରେମର ଚର୍ଚ୍ଚା ସରସ କୃଷ୍ଣକଥା ।"

## ଛପ୍‌ପୟ

ଅପର କହେ—ଜଗମାଁହି ସଫଲ ଜୀବନ ହୀ ଉନକେ ।
କୃଷ୍ଣ ମୁଖାମୃତ ପାନକରେଂ ନିତ ଲୋଚନ ଜିନକେ ॥
ଆବତ ଧେନୁ ଚରାଇ ସଖନ ସଁଗ ବେନୁ ବଜାବତ ।
ସୁଷମା ଶ୍ୟାମ ସିହାଇ ଲୁଟାବତ ସୁଖ ସରସାବତ ॥
ମୁରଲୀ ଅଧରନପେ ଧରେଂ, ଇତ ଇତ ନିରଖତ ଦୃଗ ଚପଲ ।
ପ୍ରେମ କରତ କଛୁ ଗାଇକେଂ, ବେନୁ ମାଧୁରୀ ଅତି ପ୍ରବଲ ॥



# ରୂପମାଧୁରୀ ଓ ବେଣୁମାଧୁରୀ

ଅକ୍ଷଣ୍ୱତାଂ ଫଳମିଦଂ ନ ପରଂ ବିଦାମଃ
ସଖ୍ୟଃ ପଶୂନନୁବିବେଶୟତୋର୍ବୟସ୍ୟୈଃ
ବକ୍ତ୍ରଂ ବ୍ରଜେଶସୁତୟୋରନୁବେଣୁ ଜୁଷ୍ଟମ୍
ଯୈର୍ବା ନିପୀତମନୁରକ୍ତକଟାକ୍ଷମୋକ୍ଷମ୍ ॥

(ଶ୍ରୀ ଭା ୧୦ ସ୍କ, ୨୧ ଅ, ୭ ଶ୍ଳୋକ)

## ଛପ୍‌ପୟ

ଏକ କହେ-ବଲରାମ ଶ୍ୟାମ ଦୋଉ ହୀ ନଟବର ।
ରଙ୍ଗ ଭୂମି ଅତ ସୁଘର ସରସ ବୃନ୍ଦାବନ ସୁଖକର ॥
ନତ ନବ ଅଭିନୟ କରେଂ ଗ୍ୱାଲବାଲନ ସଁଗ ଆବେଂ ।
କଣଲୟ ନୂତନ ସୁମନ ଧାତୁତେଂ ବେଷ ବନାବେଂ ॥
ସୁର ସବ ମୁରଲୀ ମହଁ ଭରହିଁ, ନାଚେଂ ଗାବେଂ ହରଷି ପରେଂ ।
ନୀଲ ପୀତ ପଟ ଧାରକେଂ, ଧେନୁକ ଲୈ କୌତୁକ କରେଂ ॥

ପ୍ରିୟଙ୍କ ସଂସର୍ଗରୁ ଯାହା କିଛି ବସ୍ତୁ ଲାଭ ହୁଏ, ତାହା ପ୍ରିୟ ହୁଏ । ପ୍ରେମମୟଙ୍କୁ ପ୍ରେମ କରିବାରେ ପ୍ରେମାନନ୍ଦ ଲାଭ ହୁଏ । ଆହୁରି ମଧ୍ୟ ପ୍ରିୟତମଙ୍କର ଯେ ଅତ୍ୟନ୍ତ ପ୍ରିୟ, ତାଙ୍କ ପ୍ରିୟତା ବିଷୟରେ ତ କିଛି କୁହାଯାଇ ନ ପାରେ । ପ୍ରେମମୟଙ୍କର ଚର୍ଚ୍ଚାରେ, ସ୍ମୃତିରେ ଏଥିପାଇଁ ଆମ୍ଭମାନଙ୍କୁ ଆନନ୍ଦ ଅନୁଭୂତ ହୁଏ । କାରଣ ତାଙ୍କର ପ୍ରତ୍ୟେକ ଚେଷ୍ଟା ସୁଖଦ, ରମଣୀୟ ଓ ଅପାର ଆକର୍ଷକ । କୌଣସି ସ୍ୱାଭାବିକ ସୁନ୍ଦର ବସ୍ତୁ ଆଡ଼କୁ ନିରୀକ୍ଷଣ କଲେ ତା' ଆଡ଼କୁ ଚିତ୍ତ ସ୍ୱତଃ ଆକର୍ଷିତ ହୁଏ; କିନ୍ତୁ ଯାହାଙ୍କର ଅଙ୍ଗେ ଅଙ୍ଗେ

ସୌନ୍ଦର୍ଯ୍ୟ ବିକଶିତ, ଯାହାଙ୍କର ସୁଖକର ବେଣୁ ସ୍ୱର ସରସତାରେ ଝଙ୍କୃତ ହୋଇ ସରସତମ ହୋଇଥାଏ, ତାଙ୍କର ବିଶଦ ବ୍ୟାଖ୍ୟାନ କରିବାରେ କିଏ ଅବା ସକ୍ଷମ ହୋଇପାରିବ ?

ସୂତ କହୁଛନ୍ତି—"ମୁନିଗଣ ! ଏବେ ଆପଣମାନେ କେବଳ ମୁଦ୍ରିତ କରନ୍ତୁ । ଭାବଜଗତରେ ସେହି ମହାଭାଗ୍ୟଶାଳିନୀ ଗୋପାଙ୍ଗନାଗଣଙ୍କର ଏକ ମାନସିକ ଚିତ୍ର ଅଙ୍କନ୍ତୁ । ସହସ୍ରାଧିକ ଅତି ସୁନ୍ଦରୀ ଷୋଡ଼ଶୀ ବ୍ରଜାଙ୍ଗନା ଶୃଙ୍ଗାର କରି, ବସ୍ତ୍ରାଳଙ୍କାରରେ ସୁସଜ୍ଜିତ ହୋଇ ସବୁଜ ଲତାଗହ୍ୱରରେ ଆବୃତ୍ତ ନିଭୃତ ନିକୁଞ୍ଜରେ ନିତ୍ୟ ବିରାଜମାନ କରୁଅଛନ୍ତି । ସେଠାରେ ବସି ସେମାନେ କୃଷ୍ଣକଥା ଆଲୋଚନା କରୁଛନ୍ତି । ନନ୍ଦନନ୍ଦନଙ୍କର ରୂପମାଧୁରୀର ବର୍ଣ୍ଣନା କରୁଛନ୍ତି । ତାଙ୍କର ବେଣୁଧ୍ୱନିକୁ ବାରମ୍ବାର ପ୍ରଶଂସା କରୁଛନ୍ତି । ନିୟମିତ ପ୍ରତ୍ୟେହ ସେଠାରେ ଯାଇ ବସୁଛନ୍ତି । ମଝେ ମଝେ ଏକ ପରମ ସୁନ୍ଦରୀ ଅଭୂତ ଅନୁରାଗବତୀ ଅଲୌକିକ ଯୁବତୀ ପ୍ରେମସମାଧିରେ ଅଚେତ ହୋଇ ପଡ଼ୁଛି । ତାଙ୍କୁ ଚେତା କରାଇବାର ଏକମାତ୍ର ଔଷଧ ହେଉଛି ଶ୍ରୀକୃଷ୍ଣଙ୍କର ଲୀଳାମାଧୁରୀ ତଥା ରୂପମାଧୁରୀ ଅଭୂତରସ ପାନ କରାଇବା । ସେହି ରସକୁ ଅନ୍ୟ ସଖୀମାନେ ତାଙ୍କର ଉଭୟ କର୍ଣ୍ଣରୂପକ ପାନପାତ୍ରରେ କ୍ରମଶଃ ଢାଳିବାକୁ ଚେଷ୍ଟା କରୁଛନ୍ତି । ସେମାନେ ମଧ୍ୟ ସେହି ଦିବ୍ୟାତିଦିବ୍ୟ ରସପାନ କରିବାକୁ ଇଚ୍ଛୁକା । ସେଥିପାଇଁ ସଖୀଗଣ ଅତ୍ୟନ୍ତ ଉତ୍କଣ୍ଠାର ସହିତ ନିଜ ନିଜର ବେଦନା ମିଶ୍ରିତ କର୍ଣ୍ଣରେଭରି ସେହି ପରମଅନୁରାଗବତୀ ଯୁବତୀଙ୍କ ସହିତ ତାହା ପାନ କରୁଅଛନ୍ତି । ପ୍ରଥମେ ଜଣେ ସେହି ରସକୁ ଭରିବାକୁ ଯାଉଛି, ସମସ୍ତେ ତାହା ଅନୁରାଗରେ ପାନ କରୁଅଛନ୍ତି । ସେହି ରସ ଶେଷ ନ ହେଉଣୁ ଅନ୍ୟ ଜଣେ ଭରିବାକୁ ଆରମ୍ଭ କରି ଦେଉଛି । ଏହିପରି ଏ ରସପାନ ପ୍ରସଙ୍ଗ ଅବିରତ ଚାଲିଅଛି । ଯଦ୍ୟପି ଏହି ରସରେ ଲୀଳା, ରୂପ ଓ ବେଣୁ ଏହି ତିନିଟି ତତ୍ତ୍ୱର ସମ୍ମିଶ୍ରିତ, ତଥାପି ବେଣୁମାଧୁରୀର ରସରେ ଆଧିକ୍ୟ ମଧୁରତା । ଏହି ସମୟରେ ପ୍ରତ୍ୟେକଙ୍କୁ ଏହି ରସ ବିଶେଷ ରୁଚିକର ।"

ଏକ ସଖୀ ଏହି ରସକୁ ସମସ୍ତଙ୍କ ଶ୍ରୋତ୍ରରୂପ ପାନପାତ୍ରରେ ଅଜାଡ଼ି ଦେବାକୁ ଆରମ୍ଭ କଲା—"ସଖୀଗଣ ! ଏ ସଂସାରରେ ଏକରୁ ଆରେକ ବସ୍ତୁ ସୁନ୍ଦର । ଏ ଆଖି ସୁନ୍ଦର ବସ୍ତୁକୁ ଦେଖି ଖୋଲିଯାଏ, ଝଲସି ଉଠେ; କିନ୍ତୁ ଅମ୍ଭମାନଙ୍କର ଆଖି ତ ଗୋଟିଏ ସର୍ବଶ୍ରେଷ୍ଠ ରୂପ ଦର୍ଶନ କରିଛି । ସେହି ଦୃଶ୍ୟ ଦର୍ଶନରେ ତାହା କୃତାର୍ଥ ହୋଇଛି । ସେହି ଦୃଶ୍ୟକୁ ଦେଖି ଏମାନେ ଏକ ସିଦ୍ଧାନ୍ତ ସ୍ଥିର କରି ନେଇଛନ୍ତି ଯେ, ଯେଉଁ ଆଖି ଏହି ଦୃଶ୍ୟ ଦେଖିଛନ୍ତି, ସେ ଆଖିକୁ ବାସ୍ତବ ଆଖି ବୋଲି କୁହା ଯାଇପାରେ । ଯେଉଁ ଆଖି ଏହି ଦୃଶ୍ୟ ଦେଖିବାରୁ ବଞ୍ଚିତ ସେଗୁଡ଼ିକ ତ ନାମମାତ୍ର ଆଖି । ଯେପରି ମୃତବ୍ୟକ୍ତିର ତଆଖି ବ

ଖେଳଥାଏ । ମୟୂର ପୁଚ୍ଛରେ ତ ଆଖିର ଆକୃତି ରହିଛି ଓ ଚନ୍ଦ୍ରରେ ମଧ୍ୟ ବଡ଼ ସୁନ୍ଦର ଆଖି ଦେଖିବାକୁ ମିଳେ; କିନ୍ତୁ ଏ ସମସ୍ତ ଆଖିକୁ ଆଖିବୋଲି କୁହାଯାଉଥିଲେ ମଧ୍ୟ ତାହା ଯଥାର୍ଥରେ ଆଖି ନୁହେଁ ।"

ସଖୀମାନଙ୍କ ମଧ୍ୟରୁ ଜଣେ ପଚାରିଲି—"ଆଲୀ ! ତୁମ୍ଭେମାନେ ନେତ୍ରରେ କି ଦୃଶ୍ୟ ଦେଖିଲ, ଯାହାକି ତୁମ୍ଭେମାନେ ଭୁଲି ପାରୁନାହିଁ । ଯାହା ଦେଖିବା ଦ୍ୱାରା ନେତ୍ର ସାର୍ଥକ ହେବ । ମୁଁ ସେହି ବିଷୟରେ ଶୁଣିବାକୁ ଚାହୁଁଛି । ମୁଁ ବି ମୋର ନେତ୍ରକୁ ସାର୍ଥକ କରିବାକୁ ଚାହୁଁଛି ।"

ସେହି ସଖୀ ପୁନଶ୍ଚ କହିଲି—"ସଖିଗଣ ! ସେ ଦୃଶ୍ୟ ତ ତୁମ୍ଭେମାନେ ଦେଖିଅଛ । ସେହି ଦୃଶ୍ୟକୁ ତ ତୁମ୍ଭେମାନେ ଦେଖି ପାଗଳିନୀଙ୍କପରି ହୋଇ ଏଣେତେଣେ ଭ୍ରମଣ କରୁଛ, ବ୍ୟତିବ୍ୟସ୍ତ ହୋଇ ପଡ଼ୁଛ । ସାୟଂକାଳରେ ଶ୍ୟାମସୁନ୍ଦର ଗୋରୁମାନଙ୍କୁ ଚରାଇ ଘରକୁ ଫେରନ୍ତି । ବଳରାମ ତଥା ଅନ୍ୟସଖାଗଣ ତାଙ୍କ ସଙ୍ଗରେ ଥାଆନ୍ତି । ଗୋରୁପଲ ଆଗେ ଆଗେ ଚାଲନ୍ତି । ତାଙ୍କ ପଛେ ପଛେ ତାଙ୍କର ଲୋକବିଶ୍ରୁତ ବିରୁଦାବଳୀର ବଖାଣ କରି ଗୋପବାଳକଗଣ ଚାଲୁଥାଆନ୍ତି । ସେହି ପ୍ରତ୍ୟେକଟାକ୍ଷଯୁକ୍ତ ମୁରଳୀରେ ସୁଶୋଭିତ କମଳ ଓ ଇନ୍ଦ୍ର ନନ୍ଦିତ ମୁଖାମୃତକୁ ଯେଉଁମାନେ ଅପଲକ ନୟନରେ ଆକଣ୍ଠ ପାନ କରି ଅଛନ୍ତି, ସେମାନଙ୍କ ନେତ୍ର ସାର୍ଥକ ହୋଇ ଅଛି । ଏହି ଦୃଶ୍ୟ ଦର୍ଶନ କରିଥିବା ନେତ୍ର ହିଁ, ପ୍ରକୃତ ନେତ୍ର । ଏହା କଣ ସତ୍ୟ ନୁହେଁ ? ଶ୍ୟାମସୁନ୍ଦର ବନରୁ ଠାଣିମାଣିରେ ଫେରିବା ଦୃଶ୍ୟ କି ସୁନ୍ଦର ନୁହେଁ ସତେ ।" ଏହା କହୁ କହୁ ଶ୍ୟାମସୁନ୍ଦରଙ୍କର ରୂପମାଧୁରୀ ଅଧିକ ପାନ କରିବାରୁ ସେହି ସଖୀ ପାଗଳିନୀଙ୍କ ଭଳି ହୋଇଗଲା । ତାହାର କଣ୍ଠ ଅବରୁଦ୍ଧ ହୋଇଗଲା । ସେ ଆଉ କିଛି କହି ପାରିଲା ନାହିଁ ।

ସେତେବେଳେ ଅନ୍ୟ ଏକ ସଖୀ କହିଲା—"ରାମ ଓ ଶ୍ୟାମଙ୍କର ଶୋଭାର ତୁଳନା ନାହିଁ । ମୋତେ ଏପରି ଲାଗୁଛି, ଏ ଦୁଇ ଜଣ ଗୋପବାଳକ ନୁହନ୍ତି, ଦିବ୍ୟ ନର୍ତ୍ତକ । କ୍ରୀଡ଼ା କରିବା ପାଇଁ ଏ ଦୁହେଁ ଏହି ସରସ ସୁଖଦ ବୃନ୍ଦାବନ ଭୂମିରେ ଅବତୀର୍ଣ୍ଣ ହୋଇଛନ୍ତି । ଏହି ସମଗ୍ର ବ୍ରଜମଣ୍ଡଳ ହିଁ ଏକ ରଙ୍ଗଭୂମି—ଲୀଳାଭୂମି । ଏଠାରେ ନୃତ୍ୟ ନୂତନ ଅଭିନୟକାରୀ ପ୍ରଧାନ ନଟ ଏ ଦୁଇଜଣ । ଗୋପବାଳକଗଣ ଏ ଦୁହିଁଙ୍କର ସହାୟକ ଓ ଭିନ୍ନ ଭିନ୍ନ ଅଭିନୟ-କାରୀ ଅଟନ୍ତି । ସାୟଂକାଳରେ ଏମାନେ କିପରି କିପରି ଅନୁପମ ଶୋଭାଧାରଣ କରି ଆସୁଛନ୍ତି । ବ୍ରଜରେ ପ୍ରବେଶ କରିବାର ଏମାନଙ୍କର ଯେଉଁ ବେଶ, ତାହା ଅତି ମନୋରମ ଓ ସୁଖଦାୟକ । ଦୁଇଭାଇଙ୍କ ଶିରରେ ମୟୂର ପୁଚ୍ଛ ସଜ୍ଜିତ, ମୁକୁଟ ଶୋଭାୟମାନ । କଣ୍ଠ ଦେଶରେ ସୁନ୍ଦର ସୁଗନ୍ଧିତ ପୁଷ୍ପର ମାଳା । ତାହା ଏପରି ଏକ ମାଳା ଯେ, ତହିଁରେ ତୁଳସୀ, କୁନ୍ଦ, ମନ୍ଦାର, ପାରିଜାତ, କମଳ ତଥା ଅନ୍ୟାନ୍ୟ ଦିବ୍ୟ ପୁଷ୍ପ ମଧ୍ୟରେ ସ୍ଥାନେ ସ୍ଥାନେ ଆମ୍ରପଲ୍ଲବ ଖଚିତ ହୋଇଥାଏ । ଜଳକମଳ ଓ ସ୍ଥଳ କମଳ ଦ୍ୱାରା

ମାଲାଗୁଡ଼ିକ ଅତ୍ୟନ୍ତ ସୁନ୍ଦର ଦିଶୁଥାଏ । ତନ୍ମଧ୍ୟରେ ଥିବା ପୁଷ୍ପମଧୁ ଲୋଭରେ ଭ୍ରମରମାନେ ତା' ଉପରେ ଗୁଞ୍ଜନ କରୁ ଥାଆନ୍ତି, ଯଦ୍ଦ୍ୱାରା ଯେପରି ମାଳଗୁଡ଼ିକରୁ ସଙ୍ଗୀତର ସ୍ୱର ଝଙ୍କୃତ ହୋଇ ଉଠୁଛି । ବଳଦେବ ନୀଳରଙ୍ଗର ରେଶମୀ ବସ୍ତ୍ର ପରିଧାନ କରିଛନ୍ତି ଓ ଶ୍ୟାମସୁନ୍ଦର ପୀତାମ୍ବର ଧାରଣ କରିଅଛନ୍ତି । ଉଭୟେ ବଂଶୀ ବଜାଇ ବଜାଇ ଗୋଷ୍ଠ ମଧ୍ୟରେ ମନ୍ଦମନ୍ଦ ଗତିରେ ଚାଲିଛନ୍ତି, ଯେପରି କି ବେଶଭୂଷା ହୋଇ ନଟ ରଙ୍ଗମଞ୍ଚରେ ଅବତରଣ କରି ଗାନ କରୁ ଅଛନ୍ତି, ଅଭିନୟ କରୁ ଅଛନ୍ତି । ସେମାନଙ୍କ ସଙ୍ଗରେ ଥିବା ଗୋପବାଳକ-ମାନଙ୍କର ଅଭିନୟ ମଧ୍ୟ ଦର୍ଶନୀୟ ।

ଏହାଶୁଣି ଶୌନକ ପଚାରୁଛନ୍ତି—"ହେ ସୂତ ! ସଖୀ ତ ଶ୍ୟାମଙ୍କର ଶୋଭା ବର୍ଣ୍ଣନା କରୁଥିଲେ, ସେ ତହିଁରେ ପୁଣି ବଳଦେବଙ୍କର ଶୋଭା କାହିଁକି ମିଶାଇ ଦେଲେ ?"

ସୂତ ହସି ହସି କହିଲେ—"ମହାରାଜ ! ଏହା ହେଉଛି ଏହି ପ୍ରେମର ବକ୍ରୋକ୍ତି । ଏଥିରେ କଥା କଥାକେ ନିଜର ଭାବକୁ ଗୋପନ ରଖାଯାଏ, ଏହା ସତ୍ୟ ଯେ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ତଥା ବେଣୁମାଧୁରୀ ସମ୍ବନ୍ଧରେ ବର୍ଣ୍ଣନା କରିବା ଥିଲା ଗୋପୀଙ୍କର ଉଦ୍ଦେଶ୍ୟ ; କିନ୍ତୁ ଭାବ ଗୋପନ ରଖିବାପାଇଁ ସେହି ଗୋପୀ ବୃନ୍ଦଙ୍କର ନାମ ପ୍ରକାଶ କରିଥିଲେ । ପ୍ରେମର ଭାଷା ସ୍ୱତନ୍ତ୍ର । ଏଥିରେ ଗୋଟିଏ କଥା କୁହାଯାଏ; କିନ୍ତୁ ଅଭିପ୍ରାୟ ଥାଏ ଭିନ୍ନ । ସେହି ଗୋପାଙ୍ଗନାଗଣ ଶ୍ରୀକୃଷ୍ଣଙ୍କର ବେଣୁର ପ୍ରଶଂସା କରୁଥିଲେ । ସେହି ଗୋପୀକାଟି ପୁନଶ୍ଚ କହିବାକୁ ଆରମ୍ଭ କଲା—'ସଖୀଗଣ ! ଆମ୍ଭେମାନେ ଜାଣୁ ଯେ, ଏ ସଂସାରରେ ଦୁଇଟି ବସ୍ତୁ ପରମଭାଗ୍ୟଶାଳିନୀ । ଗୋଟିଏ ହେଉଛି ବ୍ରଜର ରେଣୁ ଓ ଅପରଟି ବେଣୁ । ଏ ଦୁହେଁ କୃଷ୍ଣଙ୍କ ଅଙ୍ଗରେ ଓତଃପ୍ରୋତ ଜଡ଼ିତ ହୋଇ ଯାଆନ୍ତି । ଶ୍ୟାମସୁନ୍ଦର ଯେତେବେଳେ ବନଗମନ କରନ୍ତି ଓ ଯେତେବେଳେ ବନରୁ ଫେରନ୍ତି, ସେତେବେଳେ ବ୍ରଜର ରେଣୁ ଉଡ଼ି ଉଡ଼ି ତାଙ୍କ ଶ୍ରୀଅଙ୍ଗରେ ଏବଂ ତାଙ୍କର କୃଷ୍ଣ କୁଞ୍ଚିତ କେଶରେ ଲାଗି ଯାଆନ୍ତି, ନିହିରେ ଚମତ୍କୃତ ହୋଇ ଯାଆନ୍ତି; କିନ୍ତୁ ବେଣୁ ତ ଆମ୍ଭମାନଙ୍କ ଆଗରେ ଆମ୍ଭମାନଙ୍କୁ ଦେଖାଇ ଦେଖାଇ ନିର୍ଲଜ୍ଜଙ୍କ ଭଳି ତାଙ୍କ ଅଧରାମୃତ ପାନକରେ । ତା' ଭାଗ୍ୟର ସୀମା ଯେ କେତେ ତାହା କ'ଣ କଳନା କରି ହେବ ? ଅରେ ଯେଉଁ ଅଧରାମୃତ ପାନ କରି ମନ ଉନ୍ମତ୍ତ ହୋଇଯାଏ, ତାହାକୁ ସେ ସତତ ପାନ କରି କରି ତୃପ୍ତ ହୁଏ ନାହିଁ କିମ୍ବା ମତୁଆଲା ହୁଏ ନାହିଁ । ଏ ଧୃଷ୍ଟର କିଭଳି ଆଚରଣ ସତେ ।"

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଙ୍କର ଅଧରାମୃତର ସ୍ମୃତି ଆସିବାକ୍ଷଣି ସେହି ସଖୀ ମୂର୍ଚ୍ଛିତା ହୋଇ ତଳେ ପଡ଼ିଲା ଓ ଅଚେତ ହୋଇଗଲା । ଏହାପରେ ଅନ୍ୟ ସଖୀ କହିବାକୁ ଆରମ୍ଭ କଲା ।"

### ଛପ୍ପୟ

ବେନୁ ରେନୁ ଅତ ଧନ୍ୟ ଶ୍ୟାମ—ଅଁଗମହୁଁ ଜୋ ଲପଟେଂ ।
ବେନୁ ଅଧରପୈ ରହେ ରେନୁ ସବ ଅଙ୍ଗନ ଲପଟେଂ ॥
ବେନୁ ବାଁଶକୀ ସୁତା ରେନୁ ଧରନୀକୀ ଦୁହିତା ।
ପ୍ରୁଭିନ ଖଗ ସବହି ମାତୁ ଦୋଉନକୀ ମୁଦିତା ॥
ଯଦ୍ୟପି ବ୍ରଜରଜକେ ନମିତ, ଲଲାୟିତ ସୁରଗନ ରହହିଁ ।
ତଦପି ବେନୁକୁଁ ହୀ ପରମ, ଖଗ୍ୟବତୀ ହମ ସବ କହହିଁ ॥



## ତପସ୍ୱିନୀ ବଇଁଶୀ

ଗୋପ୍ୟଃ କିମାଚରଦୟଂ କୁଶଲଂ ସ୍ମ ବେଣୁ—
ର୍ଦାମୋଦରାଧରସୁଧାମପି ଗୋପିକାନାମ୍
ଭୁଙ୍କ୍ତେ ସ୍ୱୟଂ ଯଦବଶିଷ୍ଟରସଂ ହ୍ରଦିନ୍ୟୋ
ହୃଷ୍ୟତ୍ତ୍ୱଚୋଽଶ୍ରୁ ମୁମୁଚୁସ୍ତରବୋ ଯଥାଽର୍ଯ୍ୟାଃ ॥
(ଶ୍ରୀ ଭା ୧୦ ସ୍କ, ୨୧ ଅ, ୯ ଶ୍ଳୋକ)

### ଛପ୍ପୟ

ଜା ମୁରଲୀନେ କରହ୍ୟୋ କୌନ ତପ ଶ୍ୟାମ ରିଝାୟୋ ।
ମୁରଲୀଧର ଜିହି ହେତୁ ଜଗତ ଘନଶ୍ୟାମ କହାୟୋ ॥
ଅଧରନ ଶଯ୍ୟାମାହି ବେନୁକୁଁ ହରସି ସୁଆବେଂ ।
ହୋଲେଂ ହୋଲେଂ କମଲ କରନତେଂ ଚରନ ଦବାବେଂ ॥
କରେଂ ବାୟୁ ମୁଖକମଲତେଂ, ଏକ ପୈର ଠାଢ଼େ ରହେଂ ।
ସ୍ୱାଜନ ପ୍ୟାରୀ ମୁରଲୀକା, ମୈୟାତେଂ ନତ ହର କହେଂ ॥

କୌଣସି ସନ୍ଥଙ୍କର ଚରଣରେ ଚରଣପାଦୁକା ଦେଖି କୌଣସି ଭକ୍ତ ବହୁତ କାନ୍ଦିଲେ । କେହି ଜଣେ ତାଙ୍କ କ୍ରନ୍ଦନର କାରଣ ପଚ୍ଚାରିବାରୁ ସେ କହିଲେ—"ମୁଁ ଏହି ଚରଣପାଦୁକାର ଭାଗ୍ୟକୁ ନିରୀକ୍ଷଣ କରି କାନ୍ଦୁଅଛି । ହାୟ ! ଆମ୍ଭେମାନେ ତ କନ୍ୟା, ସନ୍ଥ ମହାତ୍ମାମାନଙ୍କର କେଉଁ କାର୍ଯ୍ୟରେ ଆମ୍ଭେମାନେ ଅବା ଆସିବୁ । ଏ ନାରୀ ଜନ୍ମରେ କୌଣସି ସାଧୁସନ୍ଥଙ୍କର ସେବା କରିବା ଆମ୍ଭମାନଙ୍କ ଭାଗ୍ୟରେ ନାହିଁ । କେବଳ ଖାଇବା, ପିଇବା ଓ ଶୋଇବାରେ ଆମ୍ଭମାନଙ୍କର ଜୀବନ କଟୁଛି, ମଲେ ଏ ଶରୀର ନଷ୍ଟ ହୋଇଯିବ । ସେହି କନ୍ୟା ହିଁ ଧନ୍ୟ, ଯେ ଶୁଷ୍କ ଶରୀରରେ ସାଧୁସନ୍ଥଙ୍କର ଚରଣ ସେବାରେରତ, ସନ୍ଥଙ୍କର କୌଣସି ନା କୌଣସି କାର୍ଯ୍ୟରେ ଯେ ନିଯୁକ୍ତ ।" ସେବାରେ ହିଁ ଏ ଶରୀରର ସାର୍ଥକତା । ଯେଉଁ ବ୍ୟକ୍ତି ଭଗବାନ ତଥା ଭକ୍ତଙ୍କର କୌଣସି ନା କୌଣସି ଉପଯୋଗରେ ଆସେ, ତାହାର ଜନ୍ମ ସଫଳ ହୁଏ । ଯେଉଁ ବସ୍ତୁଗୁଡ଼ିକର ଭଗବାନଙ୍କ ସହିତ ସମ୍ବନ୍ଧ, ସେସବୁ ଦିବ୍ୟବସ୍ତୁ, ଚିନ୍ମୟ ବସ୍ତୁ । ଶ୍ରୀକୃଷ୍ଣଙ୍କର ପୀତପଟ, ତାଙ୍କର ଲକୁଟ (ଲଗୁଡ଼), ମୟୂର ପୁଚ୍ଛ ଓ ମୁରଲୀ ଏ ସବୁ ଜଡ଼ ନୁହେଁ ଚିନ୍ମୟ । ପୂର୍ବଜନ୍ମରେ ଯେ ଅଶେଷ ତପ ଆଚରଣ କରିଥାଏ, ତାଙ୍କୁ ହିଁ ଭଗବାନଙ୍କର ଶ୍ରୀଅଙ୍ଗର ନିତ୍ୟ ସଂସର୍ଗ ପ୍ରାପ୍ତି ହୋଇଥାଏ । ଭଗବାନଙ୍କ ସାନ୍ନିଧିରେ ତାଙ୍କର ନିତ୍ୟପାର୍ଷଦରୂପେ ସେ ରହିପାରେ ।"

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣାନୁରାଗରେ ଆର୍ଦ୍ର ହୋଇଥିବା ଗୋପୀକାଗଣ ବେଣୁନାଦ ଶ୍ରବଣ କରି ପରସ୍ପର ମଧ୍ୟରେ ବେଣୁମାଧୁରୀ ସମ୍ବନ୍ଧରେ ଚର୍ଚ୍ଚା କରୁଅଛନ୍ତି ।" ଏକ ସଖୀ କହୁଛି—"ସଖିଗଣ ! ଦେଖ ଆମେ ଶ୍ରୀକୃଷ୍ଣଙ୍କର ଅଧରାମୃତ ପାନ କରିବା ପାଇଁ କେତେ ଲାଳାୟିତ । ଅରେ ହେଲେ ଆମ୍ଭମାନଙ୍କ ଓଷ୍ଠରେ ସେହି ଅମରକାରୀ ରସ ଯଦି ଲାଗି ଯାଆନ୍ତା, ତାହାହେଲେ ଆମ୍ଭେମାନେ କୃତାର୍ଥ ହୋଇ ଯାଆନ୍ତେ । ଆମ୍ଭେମାନେ ସେହି ଦିବ୍ୟାତିଦିବ୍ୟ ରସପାଇଁ ନିରନ୍ତର ଉତ୍କଣ୍ଠିତ ଓ ଏହି ବାଂଶର ମୁରଲୀ ଭଳି ନିର୍ଭୟରେ ତାହା ପାନ କରିବାକୁ ଲାଳାୟିତ । ସାଧାରଣତଃ ଏକାନ୍ତ ଜନଶୂନ୍ୟ ସ୍ଥାନରେ ଅଧରାମୃତ ପାନ କରାଯାଇ ଥାଏ; କିନ୍ତୁ ଏହି ନିର୍ଲଜ୍ଜା ତ ଦେଶ-କାଳ କିଛି ହେଲେ ଧ୍ୟାନ ଦେଉନାହିଁ । ସବୁ ସମୟରେ, ସମସ୍ତଙ୍କ ଆଗରେ ଶୀଳ ସଙ୍କୋଚ ତ୍ୟାଗକରି ନିର୍ଭୟ ହୋଇ ଶ୍ରୀହରିଙ୍କର ଅଧରାମୃତ ପାନ କରୁଅଛି । ଏହାର ପିତାମାତା ଧନ୍ୟ, ଏହାର କୁଳ ଧନ୍ୟ । କାରଣ ଏ ଶ୍ୟାମସୁନ୍ଦରଙ୍କୁ ଏ ପ୍ରକାର ବଶ କରିପାରିଛି । ଶ୍ୟାମସୁନ୍ଦରଙ୍କୁ ସତେ ଯେପରି ସେ କିଣି ନେଇଛି । ପଲକ ସମୟ ପାଇଁ ମଧ୍ୟ ସେ ଶ୍ୟାମସୁନ୍ଦରଙ୍କ ଅଙ୍ଗରୁ ପୃଥକ୍ ହେଉନାହିଁ । ଶ୍ୟାମସୁନ୍ଦର ରାତିରେ ମଧ୍ୟ ତାକୁ ପାଖରେ ରଖି ଶୟନ କରୁଛନ୍ତି । ବନକୁ ଗଲାବେଳେ ଅଣ୍ଟାରେ ଖୋସି ନେଉଛନ୍ତି । ଯେତେବେଳେ ଖୁସି ହୁଅନ୍ତି ଅଧରରେ ଲଗାଇ ବଜାଉଛନ୍ତି । ଶ୍ୟାମ ତାକୁ ଏତେ ସଙ୍କୋଚ କରନ୍ତି ଯେ, ଯେତେବେଳେ ଅଧରରେ ଲଗାଇ ବାଦନ କରନ୍ତି, ସେତେବେଳେ ଏକ ପାଦରେ ବଙ୍କିମ ଠାଣିରେ ଶେଷ ପର୍ଯ୍ୟନ୍ତ ଠିଆ ହୋଇ

ରହନ୍ତି । ସେ ତାଙ୍କର କୋମଳ ଅଙ୍ଗୁଳି ସ୍ପର୍ଶ କରି ଧୀରେ ଧୀରେ ସ୍ୱର ଝଙ୍କାର ତୋଳନ୍ତି । ନିଜ ମୁଖର ବାୟୁଦ୍ୱାରା ତାଙ୍କୁ ପ୍ରେମ କରନ୍ତି । କୌଣସି ଶୀଳବତୀ-କୁଳବତୀଙ୍କର ତ ଏପରି ସୌଭାଗ୍ୟ ଲାଭ ହୋଇ ନ ପାରେ । ଏହାଙ୍କୁ ଆପଣାର କରିନେବା ଦ୍ୱାରା, ଏହାର ଅଧୀନ ହେବାଦ୍ୱାରା ନନ୍ଦନନ୍ଦନଙ୍କୁ ମୁରଲୀଧର, ବଂଶୀଧର, ମୁରଲୀମନୋହର ବୋଲି କୁହାଯାଏ ।"

ଏକ ସଖୀ ପଚାରିଲି—"ସଖି ! ଏ ମୁରଲୀ କେଉଁ ବଂଶରେ ଉତ୍ପନ୍ନ ହୋଇଛି ?"

ପୂର୍ବରୁ ସେହି ସଖୀଟି କହିଲା—"ଭଉଣି ! ଏ କୁଳଟାର ବଂଶ ତ କୌଣସି ଉଚ୍ଚ ବଂଶ ନୁହେଁ । ବାଂଶ ଲଗାଇବା ଅତି ଅଶୁଭ ବୋଲି କୁହାଯାଏ । କୌଣସି ବୁଦ୍ଧିମାନ ବ୍ୟକ୍ତି ନିଜ ବଗିଚାରେ ଜାଣିଶୁଣି ବାଂଶ ଲଗାନ୍ତି ନାହିଁ । ସେହି ବାଂଶର ବଂଶରେ ତ ଏହି ବଂଶୀ ଉତ୍ପନ୍ନ । ପୃଥିବୀରେ ଉତ୍ପନ୍ନ ହୋଇଥିବା କାରଣରୁ ପୃଥିବୀ ହିଁ ତାହାର ମାତା । ମେଘର ଜଳବିନ୍ଦୁରେ ବଢ଼ିଥିବାରୁ ଘନ ହିଁ ଏହାର ପିତା । ନଦୀ ତଥା ସରୋବରର ଜଳ ପାନ କରି ବଢ଼ୁଥିବାରୁ, ତାହା ଏହାର ଧାତ୍ରୀ ସ୍ଥାନୀୟ । ପ୍ରଥମେ ତା'ମାତାର କୀର୍ତ୍ତି ଶୁଣି ରଖ । ନିତ୍ୟପ୍ରତି ଚରାଚର ଜୀବଙ୍କୁ ଉତ୍ପନ୍ନ କରି ଏ ସର୍ବଦା କୁମାରୀ ହୋଇ ରହିଛି । ଥରେ ଏହାଙ୍କୁ ଅସୁର ପାତାଳ ପୁରକୁ ନେଇ ଯାଇଥିଲେ । ଭଗବାନ ଶୂକର ବେଶଧାରଣ କରି କୌଣସି ପ୍ରକାରେ ତାଙ୍କୁ ପୁଣି ଉଦ୍ଧାର କଲେ । ଏହି ଧରିତ୍ରୀର ଏକ ନୁହେଁ ଅନେକ ପତି । ସମସ୍ତେ ତାଙ୍କୁ ମୋର ମୋର ବୋଲି କହି ମରି ଯାଆନ୍ତି; କିନ୍ତୁ ଏ କାହାରି ହୋଇ ରହେ ନାହିଁ । ବସୁନ୍ଧରା ଭୋଗ୍ୟା କେବେହେଲେ କୌଣସି ଜଣଙ୍କର ହୋଇ ରହନ୍ତି ନାହିଁ । ସେ କୌଣସି ଜଣଙ୍କୁ ପ୍ରେମ କରନ୍ତି ନାହିଁ । ସେ ନିତ୍ୟ ନୂତନ ପତି ବରଣ କରନ୍ତି, ଜଣଙ୍କୁ ଛାଡ଼ି ଅନ୍ୟ ଜଣଙ୍କର ହୋଇ ଯାଆନ୍ତି ଓ ପୁନଶ୍ଚ ତାଙ୍କୁ ମଧ୍ୟ ଛାଡ଼ି ଦିଅନ୍ତି । ଏହା ହିଁ ତ ମୁରଲୀର ମା'ଙ୍କର ଚରିତ । ତାହାର ପିତା ମେଘର ଚରିତ ମଧ୍ୟ ଶୁଣିଥାଅ । ମେଘ ବଡ଼ ନିଷ୍ଠୁର । ସେ ଶରଣାଗତ ପ୍ରତି ଧ୍ୟାନ ଦିଏ ନାହିଁ । ଚାତକ କେତେ ଆଶା କରି "ପିଉ, ପିଉ" ଚିତ୍କାର କରେ । ଏ ମେଘ ହେଉଛି ତାହାର ଅନନ୍ୟ ଗତି; କିନ୍ତୁ ସେ ତା' ଉପରେ ପଥର ବୃଷ୍ଟି କରେ । ଶୋଷରେ ସେ ଛଟପଟ ହୁଏ ଓ ମୃତ୍ୟୁ ବରଣ କରେ । ତଥାପି ଏ ନିଷ୍ଠୁର ତା' ମୁଖରେ ସ୍ୱାତି ବୁନ୍ଦଟିଏ ବି ଦିଏ ନାହିଁ । ପୁନଶ୍ଚ ଏ ବଂଶୀର ବଂଶ କଥା ବିଚାର କରାଯାଉ । ଏହାର ବଂଶ ସମୂହ ପରସ୍ପର ମଧ୍ୟରେ ସଂଘର୍ଷ କରି ଜଳି ଯାଆନ୍ତି । ନିଜେ ନିଜେ ଜଳି ମରୁଥିଲେ କିଛି କଥା ନ ଥିଲା. ସେମାନେ ସମ୍ପୂର୍ଣ୍ଣ ବନକୁ ଜାଳି ପୋଡ଼ି ଭସ୍ମ କରି ଦିଅନ୍ତି । ଜୀବଜନ୍ତୁମାନଙ୍କୁ ଜାଳିପୋଡ଼ି ଦିଅନ୍ତି । ଏ ବାଂଶ ଘର ତିଆରିରେ ଲାଗେ । ମୃତ ବ୍ୟକ୍ତିକୁ ଏ ଶ୍ମଶାନ ପର୍ଯ୍ୟନ୍ତ ନେଇ ଯାଏ । ଏହା ହିଁ ଏହାର ବଂଶାବଳୀଙ୍କ କୀର୍ତ୍ତି । ନଦୀମାନଙ୍କୁ ଦେଖ । ଏମାନଙ୍କର ସର୍ବଦା ବକ୍ର ଗତି । ଏମାନେ କାହାରି ପ୍ରତି ଦୟା ଦେଖାନ୍ତି ନାହିଁ । କ୍ଷେତକୁ ବୁଡ଼ାଇ ଦିଅନ୍ତି । ଯେଉଁମାନେ ତା'

ଭିତରେ ଯାଆନ୍ତି, ସେମାନଙ୍କୁ ମଧ୍ୟ ବୁଡ଼ାଇ ଦିଅନ୍ତି । ଏହା ତ ମୁରଳୀ ବଂଶର ପରିଚୟ । ଏଥିପାଇଁ ଏ ଯଦି କୌଣସି ଉଚ୍ଚକୁଳୋତ୍ପନ୍ନା କୁଳବତୀ କାମିନୀ ହୋଇ ଥାଆନ୍ତା, ତେବେ କୌଣସି କଥା ନ ଥିଲା ; କିନ୍ତୁ ଏହାକୁ ଶ୍ୟାମସୁନ୍ଦର ଆପଣାର କରି ନେଇଛନ୍ତି । ସେହି କାରଣରୁ ତାହାର ସବୁ ଦୋଷ ଘୋଡ଼ାଇ ହୋଇ ପଡ଼ୁଛି । ବଡ଼ଲୋକମାନେ ଯାହାକୁ ଆପଣାର କରି ନିଅନ୍ତି, ତାହାର ଗୋଟିଏ କଥା କେହି ପଚାରନ୍ତି ନାହିଁ ।"

ସେହି ଗୋପୀ କହିଲା—"ତେବେ ହେ ସଖି ! ଏ କୃଷ୍ଣ କେଉଁ ଦୃଷ୍ଟିରୁ କୁଳୀନ ? କେହି ତାଙ୍କୁ ନନ୍ଦନନ୍ଦନ କହନ୍ତି ତ କେହି ବସୁଦେବ ନନ୍ଦନ ବୋଲି କହନ୍ତି । କେହି ଗୋପାଳ, ଆହୀର ଆଦି କହନ୍ତି ତ କେହି ଯଦୁନନ୍ଦନ, ବାର୍ଷ୍ଣେୟ ବୋଲି କହନ୍ତି । କେହି କେହି ଦେବକୀ ନନ୍ଦନ କହନ୍ତି ତ ଅନ୍ୟକେହି ଯଶୋଦା ନନ୍ଦନ ବୋଲି କହନ୍ତି । ଗଉଡ଼ ଜାତି କୌଣସି କୁଳୀନ ଜାତି ନୁହନ୍ତି । ଦ୍ୱିଜାତିଗଣଙ୍କ ପାଇଁ ଦୁଗ୍ଧ, ଦଧି, ଘୃତ ଆଦି ରସ ବିକ୍ରୟ କରିବା ନିମିତ୍ତ । ଏହା ହିଁ ଆମ୍ଭମାନଙ୍କର ଜୀବିକା । ଏଣୁ ଏକ ଜୀବିକା ନିର୍ବାହ କରୁଥିବା ଲୋକଙ୍କ ମଧ୍ୟରେ ଯୋଡ଼ି ବା ବନ୍ଧୁତା ହୁଏ । କଥାରେ ଅଛି—'ଜୈସୀ ଅହୋ ତୈସୀ ମହୋ' ତାଙ୍କର ଚୂଳି ଅଛି ନା ଚାଉଅ ଅଛି । ତଥାପି ଦୁର୍ଲଭ ପଦାର୍ଥ ତାଙ୍କ ଅଧରାମୃତ ପାନ କରିବା ହେଉଛି ଅସାଧାରଣ ପୁଣ୍ୟର ଫଳ । ଦେଖ ଯଦି ସତ କଥା କୁହାଯାଏ, ତେବେ ଶ୍ୟାମସୁନ୍ଦରଙ୍କ ଅଧରାମୃତରେ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଅଧିକାର । ଆମେ ଗୋପୀଗଣ ତାହା ଆକଣ୍ଠ ପାନ କଲାପରେ ଯଦି ଅବଶିଷ୍ଟ କିଛି ରହିଯାଏ, ତାହାହେଲେ ସେ ଅନ୍ୟ କାହାରିକୁ ଦେଇପାରନ୍ତି । ଏହା ଆମ୍ଭମାନଙ୍କ କୃପା ଉପରେ ନିର୍ଭର କରେ । ଦୟାଳୁ ଲୋକ ନିଜର ଉଚ୍ଛିଷ୍ଟ ନିଜର ଆଶ୍ରିତଙ୍କୁ ହିଁ ଦେଇ ଥାଆନ୍ତି । ଏ କ୍ଷେତ୍ରରେ ଏହା ବିପରୀତ ହୋଇଛି । ଆମର ସୌତୁଣୀ ଏହି ମୁରଳୀ ସର୍ବପ୍ରଥମେ ନିଜେ ଉଦରଭରି ଅଧରାମୃତ ପାନ କରି ନେଉଛି । ଅବଶିଷ୍ଟ ରହିଥିବା ଉଚ୍ଛିଷ୍ଟ ଆମ୍ଭମାନଙ୍କ ପାଇଁ ଛାଡ଼ି ଦେଇ ଅଧରରୁ ଦୂରେଇ ଯାଉଛି । ଯେ ଧନର ପ୍ରକୃତ ଅଧିକାରିଣୀ, ସେ ସେହି ଧନକୁ ଗୋଟିଏ ପୋଟିଏ କରି ରଖେ ; କିନ୍ତୁ ଯେ ଦାସୀ, ସେ ପ୍ରଥମେ ତାହା ଯଥେଷ୍ଟ ପରିମାଣରେ ଉପଯୋଗ କରିନିଏ । ଶ୍ୟାମସୁନ୍ଦର ଏ କ୍ଷେତ୍ରରେ ଗଙ୍ଗାକୁ ଓଲଟା ବୁହାଉଛନ୍ତି । ଦେଖିବାକୁ ସବୁଜ ସୁନ୍ଦର ଭରି ଦୃଶ୍ୟ ; କିନ୍ତୁ ବାସ୍ତବରେ ତାହା ଶୁଷ୍କ, ନିରସ । ଏ ବଂଶୀ କୌଣସି ଚରିତ୍ରବାନ୍ ହୋଇଥାଆନ୍ତା ଅବା ନିଶ୍ଛିଦ୍ର ହୋଇଥାଆନ୍ତା, ତାହା ବି ନୁହେଁ । ଏକ ଛିଦ୍ର ବି ନୁହେଁ ଏହା ଅଷ୍ଟଛିଦ୍ର ବିଶିଷ୍ଟ । ଏତେଗୁଡ଼ିଏ ଦୋଷ ଥାଇ ମଧ୍ୟ ଯେ ଏତେବଡ଼ ପଦବୀର ଅଧିକାରୀ ହୋଇ ଏତେ ଅମୂଲ୍ୟନିଧିର ଉପଭୋଗକାରୀ ହୋଇପାରିଛି, ଏଥିରେ ଅବଶ୍ୟ କୌଣସି ନା କୌଣସି କାରଣ ରହିଛି । ପୂର୍ବଜନ୍ମର ତପସ୍ୟା ନ ଥିଲେ ଏତେ ସୌଭାଗ୍ୟ ଲାଭ କରିବା ସମ୍ଭବ ନୁହେଁ ।"

ଏହାଶୁଣି ସେହି ସଖୀଟି କହିଲା—"ହଁ ଭଉଣି ! ତୁ ଯାହା କହିଲୁ ସତ କଥା । ତପସ୍ୟାର ଫଳ ଯୋଗୁଁ ହିଁ ଏ ଅନ୍ୟର ଧନ ଉପରେ ସ୍ୱତନ୍ତ୍ର ଅଧିକାରିଣୀ ହୋଇ ପାରିଛି । ଏ ବଂଶର ତପସ୍ୟା ତ ଏହିପରି, ଯାହା କି କେହି ହେଲେ କରି ନାହିଁ । ବାଂଶର ଉପରଭାଗ ଅତି କଠିନ, ସେହି କଠିନ ବାଂଶର ଆବରଣକୁ ଫୋଡ଼ାଯାଇଁ ତାକୁ ପୋଲା କରି ଯାଇଛି ଅର୍ଥାତ୍ ଭିତରୁ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ଦମ୍ଭ, ଅହଂକାର ଓ ଅନ୍ୟ ସମସ୍ତ ଦୋଷକୁ ବାହାର କରି ଦିଆ ଯାଇଛି, ଏହା ପୋଲା ହୋଇ ଏକାନ୍ତ ବନରେ ବାସ କରି ଚିରକାଳ ଘରେ ରହି ହିଁ ସାଧନା କରୁଅଛି । ପ୍ରଥମେ ଏହାର ସାଧନା କଢାଥିଲା । ବନପ୍ରଦେଶରେ ଏକାନ୍ତରେ ସାଧନା କରି କରି ଏ ସିଦ୍ଧ (ପକ୍ୱ) ହୋଇ ଯାଇଛି । ଏବେ ଏହାର ପରୀକ୍ଷା ହେଉଛି । କୌଣସି କଠିନକର ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ଏହାକୁ କାଟି ନିଜ ବଂଶଠାରୁ ଏହାକୁ ପୃଥକ କରିଅଛି । ଏହାସତ୍ତ୍ୱେ ବି ସେ ଚିତ୍କାର କରି କାନ୍ଦି ନାହିଁ । କଟା ହୋଇ ଭୂମିରେ ତଳ ପଡ଼ିଛି । ସେହି ନିର୍ଦ୍ଦୟ ହସ୍ତ ତା' ଦେହରେ ଥିବା ପତ୍ରରୂପକ ବସ୍ତ୍ରକୁ କାଢ଼ି ସଫା କରି ଦେଇଛି । ତାକୁ ଉଲଗ୍ନ କରି ଦେଇଛି । ସେହି ନଗ୍ନାବସ୍ଥାରେ ମଧ୍ୟ ସେ କୌଣସି ପ୍ରତିବାଦ କରି ନାହିଁ । କାଟିଥିବା ଲୋକ ତା' ପ୍ରତି ନଜର ରଖିଛି । ସେ ଭାବୁଛି ଏତେ ତପସ୍ୟା କରି ମଧ୍ୟ ଏହାର ବକ୍ରତା ଦୋଷ ରହିଛି । ତେଣୁ ତାହାର ଯେଉଁ ବକ୍ରତା ଥିଲା, ସେହି ଲୋକ ତାକୁ ଅଗ୍ନିରେ ସେକ ଦେଇ. ଅଗ୍ନିପରୀକ୍ଷା କରି, ତାହା ଦୂର କରି ଦେଲା । ଉପରର ଗଣ୍ଠିଗୁଡ଼ିକୁ ଛେଲି ଦେଲା । ପୁନଶ୍ଚ ତାକୁ ଗଡ଼ ଗଡ଼ କରି କାଟି ଖରାରେ ଶୁଖାଇଲା । ଶୁଖି ତହିଁରୁ ସ୍ୱର ବାହାରିବାର ଉପଯୁକ୍ତ ହେବା ପର୍ଯ୍ୟନ୍ତ ସେ ଅନେକ ଦିନ ଖରାରେ ପଡ଼ି ରହିଲା । ଶେଷକୁ ସମ୍ପୂର୍ଣ୍ଣ ରୂପେ ଶୁଖିଗଲା । ଏତେ କଷ୍ଟ ଦେଲା ପରେ ବି କାଟିଲା ବାଲାର ମନରେ ଟିକିଏ ହେଲେ ଦୟା ହେଲା ନାହିଁ । ତାହାର ଅଙ୍ଗରେ ଲୁହାଦଣ୍ଡ ନିଆଁରେ ପୂରାଇ ଛିଦ୍ର କଲା । ଏବେ ତାକୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି ବୋଲି ଜାଣି ଆଗ୍ରହ ସହକାରେ ଅଧର ପାଖରେ ରଖି ତାହାର ସମ୍ମାନ ବଢ଼ାଇବାକୁ ଯାଇ ସେହି ଲୋକ ଦେଖିଲା—"ଏତେ କଷ୍ଟ ସହ୍ୟକରି ବଂଶୀଟି ଉଦାସ ହୋଇ ନାହିଁ କମ୍ବା ମୁଖରେ ଟିକିଏ ହେଲେ ଦୁଃଖ ପ୍ରକାଶ କରି ନାହିଁ । ଏଥିପାଇଁ ପ୍ରାଣବଲ୍ଲଭ ତାହାର କଟା ହୋଇଥିବା ଅଙ୍ଗରେ (ଛିଦ୍ରରେ) ଫୁଙ୍କ ମାରୁଛନ୍ତି । ପ୍ରେମିକଙ୍କର ଫୁଙ୍କ ବାଜିବା ମାତ୍ରେ ସେ ହସି ହସି ମଧୁର ସ୍ୱରରେ ଗୀତ ଗାଉଛି ।" ତାହାର ପ୍ରିୟ, ତା' ତପସ୍ୟାରେ ପ୍ରସନ୍ନ ହୋଇ ନିଜର ତନୁ ମନ ସର୍ବସ୍ୱ ତାକୁ ଅର୍ପଣ କରି ଅଛନ୍ତି । ତାହାର କିଂକର ହୋଇ ପଡ଼ିଛନ୍ତି । ସେତିକି କଷ୍ଟ ନ ସହିଲେ କେହି କାହାରି ଏତେ ଆପଣାର ହୋଇ ପାରନ୍ତି ନାହିଁ । କଷ୍ଟ ସହିଷ୍ଣୁତା ପାଷାଣ ହୃଦୟକୁ ମଧ୍ୟ ତରଳାଇ ଦିଏ । ଶ୍ୟାମସୁନ୍ଦର ତ ସହଜେ ଅତି ହୃଦୟବାନ୍ । ଏହି ମୁରଲୀକୁ ସେ ସୌଭାଗ୍ୟର ଅଧିକାରିଣୀ କରିଅଛନ୍ତି । ଆଜି ପର୍ଯ୍ୟନ୍ତ ସେପରି ସୌଭାଗ୍ୟ କାହାରିକୁ ପ୍ରାପ୍ତ ହୋଇ ନାହିଁ । ସ୍ୱୟଂ ଲକ୍ଷ୍ମୀଦେବୀ ମଧ୍ୟ ସେହି ସୌଭାଗ୍ୟ ଲାଭ କରିବାପାଇଁ ଚେଷ୍ଟିତା । ଏହି କାରଣରୁ ସେହି · ବଂଶୀର କୁଳକୁଟୁମ୍ବ ସମସ୍ତେ ପରମ

ପ୍ରମୁଦିତ । ନିଜ ବଂଶର କୌଣସି ଲୋକ ସୌଭାଗ୍ୟଶାଳୀ ହେଲେ ଆର୍ଯ୍ୟ ପୁରୁଷଗଣ ଗର୍ବ କରନ୍ତି ଓ ପ୍ରସନ୍ନ ହୁଅନ୍ତି । ସେମାନେ ଭାବନ୍ତି ଯେ, ଆମ କୁଳରେ ଏପରି ବ୍ୟକ୍ତି ଉତ୍ପନ୍ନ ହୋଇଛି, ଯେ କି ଆମ ବଂଶର ଖ୍ୟାତି ବଢ଼ାଇ ପାରିଛି ।"

ଏହି ବଂଶୀ ଯେଉଁ ବଂଶରେ ଉତ୍ପନ୍ନ ହୋଇଛି, ସେହି ବାଂଶର ଚେରରୂପୀ ମୁଖଦ୍ୱାରା ସେ ନଦୀର ଜଳରୂପ ଦୁଗ୍ଧ ପାନ କରେ । ଧାଈ ଯାହାକୁ ନିଜର ଦୁଗ୍ଧ ପାନ କରାଇ ଲାଳନପାଳନ କରି ବଢ଼ାଇଥାଏ, ସେ ଯଦି ପାଟରାଣୀ ହୋଇଯାଏ, ତାହାହେଲେ ଧାଈର ଲୋମ ପୁଲକିତ ହୋଇଉଠେ । ସେହିପରି ଏ ନଦୀଗୁଡ଼ିକ ଏହି ପାଳିତା କନ୍ୟାକୁ ଗୋପାଳଙ୍କର ଅଧରାମୃତ ଅଧିକାରିଣୀ ପ୍ରାଣପ୍ରିୟା ବୋଲି ଭାବି ପୁଲକିତ ହେଉ଼ ଅଛନ୍ତି । ଯେ ବାଂଶର ବଂଶରେ ଏପରି ଜାତ ହୋଇଛି, ସେ ତା ବଂଶରେ ମଦରଧାରା ପ୍ରବାହିତ କରୁଅଛି । ବଂଶୀକୁ ସୌଭାଗ୍ୟଶାଳିନୀ ଦେଖି ସତେ ଯେପରି ସେମାନେ ପ୍ରେମାଶ୍ରୁ ବିସର୍ଜନ କରୁଅଛନ୍ତି । ସବୁଜ ଶ୍ୟାମଳ ଦୁର୍ବାଦଳ ରୂପକ ଲୋମଦ୍ୱାରା ପୃଥିବୀ ନିଜର କନ୍ୟାର ସୁପ୍ରଭାବରେ ପ୍ରସନ୍ନ ହୋଇ ସତେ ଯେପରି ରୋମାଞ୍ଚିତ ହୋଇ ଉଠୁଛି । ମେଘ ଗର୍ଜ୍ଜନ ତର୍ଜ୍ଜନ କରି ଗ୍ରେଟ ଗ୍ରେଟ ଜଳବିନ୍ଦୁ ବୃଷ୍ଟି କରି କନ୍ୟାର ସୌଭାଗ୍ୟ ଦେଖି ଶିହରିତ ହେଉଅଛି । ଏକ ବସ୍ତୁପ୍ରିୟା ଯୋଗୁଁ ସମସ୍ତେ ଆଜି ସୁଖୀ, ସମସ୍ତେ ଆଜି ପ୍ରମୁଦିତ ।"

ଏହା ଶୁଣି ଶୌନକ କହିଲେ—"ହେ ସୂତ ! ଆପଣ ଗୋପୀଗଣଙ୍କର ଏ ଯେଉଁ ଅନୁପମ ଅନୁରାଗ ବିଷୟରେ ବର୍ଣ୍ଣନା କରୁଅଛନ୍ତି, ତାହା କର୍ଣ୍ଣକୁ ଅତ୍ୟନ୍ତ ସୁଖଦ ପ୍ରତୀତ ହେଉଛି; କିନ୍ତୁ ଏହାର ଅର୍ଥ କ'ଣ ତାହା ଆମ୍ଭେମାନେ ବୁଝିପାରୁ ନାହୁଁ ।"

ଏ କଥା ଶୁଣି ସୂତ ହସି ହସି କହିଲେ—"ଭଗବନ ! ପ୍ରେମର କ'ଣ କୌଣସି ଅର୍ଥ ଥାଇପାରେ ? ଏହା ନିରର୍ଥକ । ପ୍ରେମ କଥା ପ୍ରେମ ବୃଦ୍ଧି ପାଇଁ ହିଁ ପ୍ରକାଶ କରାଯାଏ । ଯେତେ ନର ନାରୀ ଅଛନ୍ତି, ସମସ୍ତେ ଦିବାରାତ୍ର କଥାବାର୍ତ୍ତା ହୁଅନ୍ତି, ଦିନେ ଅବଧି ନୁହେଁ, ବର୍ଷେ ଦୁଇ ବର୍ଷ ନୁହେଁ, ଜୀବନସାରା ସେମାନେ କଥାବାର୍ତ୍ତା ହୋଇ ଥାଆନ୍ତି । ସେମାନଙ୍କୁ ପଚାରି ବୁଝନ୍ତୁ, ସେମାନେ ଯାହାକୁ କଥାବାର୍ତ୍ତା ହୁଅନ୍ତି, ତାହାର ଅର୍ଥ କ'ଣ ?"

ଶ୍ରୀକୃଷ୍ଣ ଚରିତର ପ୍ରାଣ ରାସଲୀଳା । ରାସଲୀଳା ହେଉଛି ପ୍ରେମ ପରାକାଷ୍ଠାର ଲୀଳା । ମୁଁ ଏହାପରେ ସେହି କଥା ହିଁ ବର୍ଣ୍ଣନା କରିବି । ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ତ ଏବେ ସମାପ୍ତ ପ୍ରାୟ । ଏବେ ତ ତାଙ୍କର ରସମୟୀ ପ୍ରେମଲୀଳାଗୁଡ଼ିକର ସୂତ୍ରପାତ ହୋଇ ବେଣୁଗୀତ ରସଲୀଳାର ଭୂମିକା ପ୍ରସ୍ତୁତ ହୋଇଛି । ମଧୁର ରସର ଉପାସକ ଏହି ଲୀଳାକୁ ହିଁ ସର୍ବୋତ୍କୃଷ୍ଟ ବୋଲି କହନ୍ତି । ଅସୁର ଉଦ୍ଧାର ଲୀଳା, ବାଲ୍ୟଲୀଳା ତଥା ଅନ୍ୟାନ୍ୟ ଫୁଟଲୀଳାଗୁଡ଼ିକ ପ୍ରସଙ୍ଗ ଅନୁସାରେ ତ ଉପଲୀଳା । ଏହି ଲୀଳାଗୁଡ଼ିକ ଦ୍ୱାରା ମଧୁରଲୀଳା

ପରିପୁଷ୍ଟ ହୋଇଥାଏ । ମହାରାଜ ! ପ୍ରାଣୀମାନଙ୍କର ଇଚ୍ଛା ପ୍ରେମ ପ୍ରାପ୍ତି । ପ୍ରେମ ବ୍ୟତିରେକେ ଜୀବ ଭ୍ରମି ହେଉଥାଏ । ପ୍ରେମବିନା ପ୍ରାଣୀ ବିକଳ ହେଉଥିବାର ଦେଖାଯାଏ । ଏ ଜୀବ କାହାରିକୁ ନା କାହାରିକୁ ହେଲେ ପ୍ରେମ କରିବାକୁ ଇଚ୍ଛାକରେ; କିନ୍ତୁ ଯାହାର ପ୍ରେମ ସ୍ଥାୟୀ ନୁହେଁ, କୌଣସି ଗୋଟିଏ ଗୁଣ ଦେଖି ଆଜି ଆମେ ପ୍ରେମ କରୁଥାଉଁ । କାଲିକୁ ସେ ଗୁଣ ନ ରହିଲେ ପୁଣି ଦ୍ୱେଷ କରୁଥାଉଁ । ଏହା ପ୍ରେମନୁହେଁ, କେବଳ ଗୁଣପ୍ରତି ଆକର୍ଷଣ । ପ୍ରେମ ଏପରି ହେବା ଆବଶ୍ୟକ ଯେ, ତାହା କେବେହେଲେ ତୁଟିଯିବ ନାହିଁ କି ଆବିଳଯୁକ୍ତ ହେବ ନାହିଁ । ତାହା ଦିନକୁ ଦିନ ବୃଦ୍ଧି ପାଇବାରେ ଲଗିବ । ପ୍ରେମର ସ୍ୱରୂପ ହେଉଛି ପ୍ରତିକ୍ଷଣ ବୃଦ୍ଧି । ତାହା ସଂସାରି ପୁରୁଷ ବା ସ୍ତ୍ରୀଙ୍କଠାରୁ ମିଳିବା ସମ୍ଭବ ନୁହେଁ । ମଧୁର ରସର ଉପାସକମାନେ କହନ୍ତି—ଏହି ପ୍ରେମ ହିଁ କେବଳ ନନ୍ଦନନ୍ଦନଙ୍କଠାରୁ ହିଁ ପ୍ରାପ୍ତ ହୋଇପାରେ । ତାହା ଗୋପୀକାଗଣଙ୍କୁ ପ୍ରାପ୍ତ ହୋଇଥିଲା । ଗୋପୀ କୌଣସି ଶରୀରଧାରି ନୁହନ୍ତି, ସେମାନଙ୍କ-ଠାରେ ସ୍ତ୍ରୀ, ପୁରୁଷ ବା ନପୁଂସକ ଭେଦ ନାହିଁ । ଗୋପୀ ଏକ ପ୍ରକାର ଭାବର ନାମ । ଏହା ସ୍ତ୍ରୀଲିଙ୍ଗ ଶବ୍ଦ ; ତେଣୁ ଏହା ସ୍ତ୍ରୀ ବାଚକ ଶବ୍ଦ ରୂପେ ବ୍ୟବହାର କରାଯାଏ । ନନ୍ଦନନ୍ଦନଙ୍କଠାରେ ଯେଉଁ ପ୍ରେମ ଜାତ ହୁଏ, ତାହା କୌଣସି କାରଣ ଉପରେ ଆଧାରିତ ହୋଇ ହୁଏନାହିଁ । ଏହା ସ୍ୱାଭାବିକ ଭାବରେ ହୋଇଥାଏ ଓ ଦିନକୁ ଦିନ ବୃଦ୍ଧି ପାଇବାରେ ଲଗେ । ପ୍ରେମ ଯେ କୌଣସି ଏକ ବିଚିତ୍ର ବସ୍ତୁ, ତାହା ବି ନୁହେଁ । ଆମ୍ଭେମାନେ ନିତିଦିନ ଭାଇ, ଭଉଣୀ, ପିତା, ମାତା, ପତ୍ନୀ, ମିତ୍ର ତଥା ବନ୍ଧୁବାନ୍ଧବଙ୍କୁ ଯେଉଁ ପ୍ରେମ କରୁ, ତାହାକୁ ପ୍ରେମ ବୋଲି ମଧ କୁହାଯାଏ । ଏଥିରେ ଏତିକି ମାତ୍ର ପ୍ରଭେଦ ଯେ, ନାଶବାନ୍ ବସ୍ତୁ ସହିତ ଆଚରିତ ପ୍ରେମ ମୋହ ନାମରେ ଅଭିହିତ ହୁଏ ଓ ସେହି ପ୍ରେମ ଅବିନାଶୀ ଶ୍ରୀକୃଷ୍ଣଙ୍କପ୍ରତି ଜାତ ହେବା ଦ୍ୱାରା ତାହା ବାସ୍ତବ ପ୍ରେମ ନାମରେ ଅଭିହିତ ହୋଇଥାଏ । ପ୍ରାକୃତ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଯେଉଁ ପ୍ରେମ ଦେଖାଯାଏ, ତାହାକୁ କାମ କୁହାଯାଏ । ସେହି ପ୍ରେମ ଗୋପୀ ଯେବେ ଶ୍ରୀକୃଷ୍ଣଙ୍କୁ କରନ୍ତି, ତେବେ ତାହା ବାସ୍ତବ ପ୍ରେମରେ ପରିଣତ ହୁଏ । ଗୋପୀମାନଙ୍କର କାମ ହିଁ ପ୍ରେମ । ଏଣୁ ମଧୁର ରସଗ୍ରାହୀ ବ୍ୟକ୍ତି ଗୃହସ୍ଥାଶ୍ରମକୁ ପ୍ରେମର ଚାଟଶାଳୀ ବୋଲି ମନେକରନ୍ତି । ଚାଟଶାଳୀରେ ପଟି ପକାଇ ବସି ପଥର ଖଡ଼ିଦ୍ୱାରା ଯେପରି ଅକ୍ଷର ଲେଖିବାର ଅଭ୍ୟାସ କରାଯାଏ ଓ ଯେତେବେଳେ ପଟି ଉପରେ ବସି ଅକ୍ଷର ଲେଖିବା ଅଭ୍ୟାସ ହୋଇଯାଏ, ବାରମ୍ବାର ଲେଖିବା ଦ୍ୱାରା ହାତ ସିଧା ହୋଇଯାଏ, ସେତେବେଳେ କାଗଜରେ ଅକ୍ଷର ଲେଖିବାକୁ ହୁଏ ଓ ଏହା ସ୍ଥାୟୀ ହୋଇଯାଏ । ଗୃହସ୍ଥୀ ଘରେ ରହି ପ୍ରେମ କରନ୍ତି ଓ ତାହା କ୍ରମେ ଶ୍ରୀକୃଷ୍ଣଙ୍କ ଆଡ଼କୁ ପ୍ରବର୍ତ୍ତିତ ହୁଏ । ଏହି ରାସ ଓ ଗୋପୀ ପ୍ରେମରେ ଶବ୍ଦ ଓ ଭାବ ତାହା, ଯାହା କି ପ୍ରାକୃତ ସ୍ତ୍ରୀ-ପୁରୁଷଙ୍କର କାମ ଭାବରେ ବ୍ୟବହୃତ ହୋଇ ଥାଏ ; କିନ୍ତୁ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧଯୁକ୍ତ ଏହି ଭାବ ଅପ୍ରାକୃତ । ଜୀବଙ୍କର ବିଷୟରେ ସ୍ୱାଭାବିକ ରୁଚିଥାଏ, ତେଣୁ

ଭଗବାନ ବ୍ୟାସ ଏହି ପ୍ରେମ ପ୍ରସଙ୍ଗକୁ ଏ ପ୍ରକାର ବର୍ଣ୍ଣନା କରିଛନ୍ତି ଯେ, ତାହା ପ୍ରତ୍ୟେକଙ୍କ ମନକୁ ସେ ଦିଗରେ ଆକର୍ଷିତ କରିଥାଏ । ଯେପରି ଛୋଟ ପିଲାଙ୍କୁ କଟୁ ଔଷଧ ଦେବାକୁ ହେଲେ ତା' ଉପରେ ଚିନି ଲଗାଇ ଦେବାକୁ ହୋଇଥାଏ । ଏଥିରେ ଚିନି ଖୁଆଇବା ଅଭିପ୍ରାୟ ନ ଥାଏ । କୌଣସି ଉପାୟରେ କଟୁ ଔଷଧ ଖୁଆଇବା ହିଁ ଏହାର ଉଦ୍ଦେଶ୍ୟ; କିନ୍ତୁ କଟୁ ବସ୍ତୁରେ ସ୍ୱାଭାବିକ ଅରୁଚି ଜାତ ହୋଇଥାଏ ଓ ମିଷ୍ଟ ବସ୍ତୁରେ ସ୍ୱାଭାବିକ ରୁଚି ଜାତ ହୁଏ । ଏଥିପାଇଁ ଏ ସ୍ଥଳରେ ପ୍ରାକୃତ ସ୍ତ୍ରୀ ପୁରୁଷଙ୍କ ପ୍ରେମ ସଦୃଶ ଏହା ଦୃଷ୍ଟ ହେଉଥିଲେ ମଧ୍ୟ ଏହାର ସନ୍ନିହିତ ରହସ୍ୟ ଅତ୍ୟନ୍ତ ଗୂଢ଼ । ଏହା ଅବଗତ ହୋଇ ଜୀବ ଏହି ମାୟିକ ଜଗତରୁ ଊର୍ଦ୍ଧ୍ୱକୁ ଉଠି ଚିନ୍ମୟ ଜଗତରେ ପ୍ରବେଶ କରେ । ଯାହାଙ୍କ ହୃଦୟରେ ଘଟ, ପଟ, ଅହଂକାର, ପ୍ରକୃତି, ପଞ୍ଚଭୂତ, ପଞ୍ଚୀକରଣ ଆଦି ଶୁଷ୍କ କଥା-ଗୁଡ଼ିକ ଭରି ରହିଛି, ସେହି ଶୁଷ୍କ ହୃଦୟ ବିଶିଷ୍ଟ ବ୍ୟକ୍ତିଙ୍କୁ ଏ ସବୁ କଥା ବଡ଼ ଅଡ଼ୁଆ ଲାଗେ । କାରଣ ଏ ସବୁ କଥା ତ ସରସତା ପରିପୂର୍ଣ୍ଣ । ଆଚ୍ଛା, ଆପଣମାନେ ମୋ'ତେ ଏବେ ସ୍ପଷ୍ଟ ଭାବରେ କହନ୍ତୁ, ଏହି ନିରର୍ଥକ ପ୍ରଳାପ ଆଉ ଅଧିକା କରିବି କି ନାହିଁ ? ଯଦି ଆପଣ-ମାନଙ୍କର ଆଜ୍ଞା ହୁଏ, ତାହା ହେଲେ ଅନ୍ୟ କୌଣସି କଥା ପ୍ରସଙ୍ଗ ବର୍ଣ୍ଣନା କରିବି ।"

ଏହାଶୁଣି ଶୌନକ ସଙ୍ଗେ ସଙ୍ଗେ କହିଲେ—"ନା ସୂତଜୀ ! ଆପଣ ଏ କ'ଣ କହୁଛନ୍ତି ? ଯଦିଚ ଆମ୍ଭେମାନେ ସଂସାରୀ ନୋହୁ, ତଥାପି ଆମ୍ଭମାନଙ୍କ ହୃଦୟ ତ ନିରସ ନୁହେଁ । ଆମ୍ଭମାନଙ୍କ ପାଇଁ ଏହା ମଧ୍ୟ ନୂଆ କଥା ନୁହେଁ । ଭଗବାନ ନାରଦଙ୍କ ମୁଖରୁ ଆମ୍ଭେମାନେ ରାଗାନୁରାଗଭକ୍ତି ସମ୍ବନ୍ଧରେ ବିଧିବତ ଶିକ୍ଷାଲାଭ କରିଅଛୁଁ । ଶ୍ରୀକୃଷ୍ଣଙ୍କର ରହସ୍ୟମୟୀ ଲୀଳାଗୁଡ଼ିକୁ ଆମ୍ଭେମାନେ ଅନେକ ଥର ଶୁଣିଅଛୁଁ ।"

ଏ କଥା ଶୁଣି ସୂତ କାନରେ ହାତ ଦେଇ କହିଲେ—"ଭଗବନ ! ମୋର ଏହା ଅଭିପ୍ରାୟ ନୁହେଁ ଯେ ଆପଣମାନେ ଶୁଷ୍କ ହୃଦୟର ବିମୁକ୍ତମାନୀ ଜ୍ଞାନୀ ଅଟନ୍ତି । ଯଦି ମୁଁ ଆପଣମାନଙ୍କୁ ଏପରି ଜାଣିଥାଆନ୍ତି ତାହାହେଲେ ତ ଏହି ରହସ୍ୟମୟୀ ପ୍ରସଙ୍ଗ କହନ୍ତି କାହିଁକି ? ମୁଁ ସେପରି କିଛି ଭାବୁନାହିଁ । ଗୃହସ୍ଥମାନେ ମଧ୍ୟ ରାଗାନୁରାଗଭକ୍ତିର ଅଧିକାରୀ ଅଟନ୍ତି । ମୋର କହିବାର ଅଭିପ୍ରାୟ ଏହି ଯେ, ଗୃହସ୍ଥାଶ୍ରମରେ ମନୁଷ୍ୟ ସବୁ କିଛି ଜାଣିଥାଏ । ସେ ଭାଇକୁ କିପରି ସ୍ନେହ କରିବାକୁ ପଡ଼େ, ପିତା, ମାତା, ପତ୍ନୀ, ବନ୍ଧୁ ଆଦିକୁ କିପରି ପ୍ରେମ କରାଯାଏ, ପତ୍ନୀ ପତିଙ୍କୁ କିପରି ପ୍ରେମ କରେ ସମସ୍ତ ଜାଣିଥାଏ । ଏହି ମାର୍ଗରେ ତ ପତ୍ନୀ ହେବାକୁ ପଡ଼େ ଅର୍ଥାତ୍ ପତ୍ନୀଭାବ ପୋଷଣ କରିବାକୁ ହୁଏ । କାମୀ ଲୋକ ତ ଏ ମାର୍ଗରେ ପ୍ରବେଶ କରିପାରେ ନାହିଁ । ଯେ ପର୍ଯ୍ୟନ୍ତ ହୃଦୟରେ କାମଭାବ ବସା ବାନ୍ଧିଥାଏ, ସେ ପର୍ଯ୍ୟନ୍ତ କୃଷ୍ଣପ୍ରେମ ଲାଭ ହୋଇ ପାରେନାହିଁ । ଯେଉଁ ବ୍ୟକ୍ତି କାମଭାବର ଊର୍ଦ୍ଧ୍ୱ ସୋପାନରେ ପଦାର୍ପଣ କରି ପାରିଛି, ସେହି ହିଁ ପ୍ରେମ ମାର୍ଗର

ସଚ୍ଚା ଅଧିକାରୀ । ଆପଣମାନେ ତ ଏ ଲୀଳା ଶ୍ରବଣ କରିବାର ପ୍ରକୃତ ଅଧିକାରୀ ଅଟନ୍ତି । ମୋର ଗୁରୁଦେବ ଭଗବାନ ଶୁକ ବାଳବ୍ରହ୍ମଚାରୀ ଥିଲେ, ସେ ଥିଲେ ଏହି ରସଶାସ୍ତ୍ରର ଆଚାର୍ଯ୍ୟ । ସେହି ପରମହଂସ ଚକ୍ର ଚୂଡ଼ାମଣି ହିଁ ଏହି ଦିବ୍ୟାତିଦିବ୍ୟ ରସ ପାନ କରିବାରେ ଓ କରାଇବାରେ ସିଦ୍ଧହସ୍ତ ଅଟନ୍ତି । ମୋର ବାବା ଗୁରୁଙ୍କର ଗୁରୁ ଭଗବାନ ନାରଦ ମଧ୍ୟ ସୃଷ୍ଟିର ଆରମ୍ଭରୁ 'ବିରକ୍ତ' ଅଟନ୍ତି । (ସଂସାର ପ୍ରତି ଅନୁରକ୍ତ ନୁହନ୍ତି) ; କିନ୍ତୁ ଏହି ରସର ପ୍ରଚାର-ପ୍ରସାର ତାଙ୍କର ଦ୍ୱାରା ହିଁ ସମ୍ପାଦିତ ହୋଇଅଛି । ତାଙ୍କ ଗୁରୁ ସନକ, ସନନ୍ଦନ, ସନତ୍କୁମାର ଓ ସନାତନ ଏହି ଚତୁଃସନ ମଧ୍ୟ ବାଳବ୍ରହ୍ମଚାରୀ ଅଟନ୍ତି । ଏ ଚାରିଜଣ ସର୍ବଦା ପାଞ୍ଚବର୍ଷର ବାଳକ ହୋଇ ରହିଅଛନ୍ତି । ଭଗବାନଙ୍କର ମଧୁର ଲୀଳାମାନଙ୍କରେ ଏହି କୁମାରମାନଙ୍କର ଯେତେ ଆସକ୍ତି, ଏପରି ଏତେ ଆସକ୍ତି ଅନ୍ୟ କାହାରି ନାହିଁ । ଆପଣମାନେ ତ ମହାରାଜ ତଥା ଆଚାର୍ଯ୍ୟ ଅଟନ୍ତି । ମୋର କହିବାର ଅଭିପ୍ରାୟ ଏହି ଯେ, ଆପଣମାନେ ଯଦି ଏହି ସରସ ପ୍ରସଙ୍ଗକୁ ଲୋକ ସଂଗ୍ରହର ବିରୁଦ୍ଧ ବୋଲି ମନେ କରନ୍ତି, ତାହାହେଲେ ମୁଁ ଏ ପ୍ରସଙ୍ଗ ଏହିଠାରେ ବନ୍ଦ ରଖିବି ।"

ଶୌନକ କହିଲେ—"ନା ସୂତ ! ପ୍ରସଙ୍ଗ ଛାଡ଼ିଦେବା ଉଚିତ୍ ନୁହେଁ । ନାସ୍ତିକ ଓ କୁତର୍କୀମାନେ ତ ଏହାକୁ କଦାପି ପଢ଼ିବେ ନାହିଁ । ବିଷୟୀ ପୁରୁଷ ଶ୍ରୀକୃଷ୍ଣଙ୍କୁ ପ୍ରାକୃତ ପୁରୁଷ ବୋଲି ମନେକରି ତାଙ୍କ ଲୀଳାଗୁଡ଼ିକୁ ପ୍ରାକୃତ ଲୀଳା ମନେକରି ପଢ଼ିବେ । ତଥାପି ଏଥିରେ ସେମାନଙ୍କର ମନୋରଞ୍ଜନ ହେବ । ସାଂସାରିକ ପ୍ରେମ ବୃଦ୍ଧି ହେବ । ସେମାନଙ୍କର ହୃଦୟ ସରସ ହେବ ଓ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ଭଗବାନ ବୋଲି ମନେକରି, ତାଙ୍କ ଲୀଳାକୁ ବୁଦ୍ଧିସମ୍ମୁଖି ପଢ଼ିବେ । ଏଥିରେ ସହଜେ ତ ତାଙ୍କର କଲ୍ୟାଣ ହେବ । ତାହା ବ୍ୟତୀତ ଏମାନେ ଏହି ମାୟିକ ଜଗତକୁ ଛାଡ଼ି ଅପ୍ରାକୃତ ଦିବ୍ୟଲୋକର ଅଧିକାରୀ ହେବେ । ଏଣୁ ଏହି ଲୀଳାଗୁଡ଼ିକ ମୁକ୍ତ, ମୁମୁକ୍ଷୁ, ଜ୍ଞାନୀ ଓ ବିଷୟୀ ପ୍ରତ୍ୟେକଙ୍କ ପାଇଁ ହିତକର ଓ ମନୋରଞ୍ଜକ ହେବ । ଆପଣମାନେ ଏହାକୁ ଯେତେ ଇଚ୍ଛା ସେତେ ବିସ୍ତାର କରି ବର୍ଣ୍ଣନା କରି ପାରନ୍ତି । ଏହା ଶ୍ରବଣ କରି ମୁଁ ବ୍ରହ୍ମାନନ୍ଦ ସୁଖ ଅନୁଭବ କରୁଅଛି ।"

ସୂତ କହୁଛନ୍ତି—"ତେବେ ଠିକ୍ ଅଛି, ମହାରାଜ ! ବେଣୁ ସମ୍ବନ୍ଧରେ ଅନ୍ୟ ଗୋପୀଗଣ ଯେଉଁ ବର୍ଣ୍ଣନା କରିଥିଲେ ଏବେ ମୁଁ ତାହା କହିବି । ଆପଣମାନେ ମନଯୋଗ ସହକାରେ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ଲଖି ବଂଶୀ ସୌଭାଗ୍ୟ ବଂଶକୁଳ ଅତି ସୁଖ ପାବେଂ ।
ସରିତା ଧାଇ ସରସ ପ୍ରେମ ଜନୁ କମଲ ଖିଲାବେଂ ॥

ପାଦବ ପ୍ରମୁଦିତ ହୋଇଁ ଫୁଲ୍ଲ ଜାତେଂ ବନ ଉପବନ ।
ନନ ଦୁନ୍ଦୁଭୀକେ କରେଂ ଗାନ ଶୁନ ଗରଜି ଗରଜି ଘନ ॥
ମଦଧାର୍ ତରୁ ବାଁସକେ, ଆନନ୍ଦାଶ୍ରୁ ବହାଇଁ ଜନୁ ।
ବୃନ୍ଦାବନ କୁଳମହଁ ଭକ୍ତ ଲଖି, ବହେ ନୟନ ଜଲ ପୁଲକି ତନୁ ॥



## ମହାମୋହକାରୀ ମୁରଲୀ ଧ୍ୱନି

ଧନ୍ୟାଃ ସ୍ମ ମୂଢ଼ମତୟୋଽପି ହରିଣ୍ୟ ଏତା
ଯା ନନ୍ଦନନ୍ଦନମୁପାତ୍ତବିଚିତ୍ରବେଷମ୍ ।
ଆକର୍ଣ୍ୟ ବେଣୁରଣିତଂ ସହକୃଷ୍ଣସାରାଃ
ପୂଜାଂ ଦଧୁର୍ବିରଚିତାଂ ପ୍ରଣୟାବଲୋକୈଃ ॥
(ଶ୍ରୀ ଭା ୧୦ ସ୍କ, ୨୧ ଅ, ୧୧, ଶ୍ଳୋକ)

### ଛପ୍ପୟ

ଧନ୍ୟ ବୃନ୍ଦାବନ ଧନ୍ୟ ଧରଣୀ ଧନ ଜନୁ ଅନୁପମ ।
ଚରନନ ନୂପୁର ଧାରି ଚଲେଂ ହରି ଜାମେଂ ଛମ-ଛମ ॥
ବେନୁ ବଜାବତ ଶ୍ୟାମ ମୋର ସମୁଝେଂ ଜନୁ ଘନରବ ।
ଗରଜି ରହେ ହୟ ଜାନ ମତ୍ତ ହ୍ୱୈ ନୃତ୍ୟ କରେଂ ସବ ॥
ମୋହନ ମୁରଲୀ ମଧୁର ସୁନି, ନାଚେଂ କେକୀ ତାଲମହଁ ।
ହମ ସବ ବଲଘଣ ବିବସନଣ, ଫଁସୀ ନିଠୁର କେ ଜାଲମହଁ ॥

ପ୍ରାଣୀମାନେ ହିଁ ପ୍ରେମ ବିହ୍ୱଳ ହୋଇ, ତରବର ହୋଇ ବାର୍ତ୍ତାଳାପ କରିବାକୁ ଓ ଏଣୁତେଣୁ ଗୁଡ଼ାଏ ଚିନ୍ତା କରିବାକୁ ଲାଗନ୍ତି । ସେ କ'ଣ କରୁଛନ୍ତି, କି ଚିନ୍ତା କରୁଛନ୍ତି ତାହା ମଧ୍ୟ ସେ ଜାଣିପାରନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ଜଡ଼-ଚେତନ ଅଚର-ସଚର ଆଦିର ଭେଦଭାବ ରହେନାହିଁ । ଯେପରିକି ଭାଙ୍ଗ ନିଶାରେ ଲୋକ ଏଣୁତେଣୁ ଚିନ୍ତାକରେ, ହସି ହସି ଗଡ଼ିଯାଏ ଓ କାନ୍ଦି କାନ୍ଦି ଅଧୀର ହୋଇପଡ଼େ । ତାଙ୍କର ଯେଉଁ ଶରୀର ବନ୍ଧମୂଳଧାରଣା

ହୋଇଥାଏ, ନିଜ ପ୍ରିୟଙ୍କର ଯେଉଁ ସ୍ମୃତି ସ୍ମରଣ ହୁଏ, ସେହି କଥା ଉପରେ ହିଁ ସେ ପ୍ରହର ପ୍ରହର ଧରି ଚିନ୍ତା କରୁଥାଆନ୍ତି ଓ ଉତ୍ପ୍ରେକ୍ଷା କରନ୍ତି । ତାଙ୍କର ମନ ସେଥିରେ ଆନନ୍ଦିତ ହୁଏ । ପ୍ରେମମାର୍ଗରେ ଯେଉଁ ସୁଖ କଥା ଚିନ୍ତା କରିବାର ଥାଏ, ଯେତେ ଶୋଚନା କରିବାର ଥାଏ, ସ୍ମରଣ କରିବାର ଥାଏ ଓ ତଦ୍ଦ୍ୱାରା ଯେତେ ଆନନ୍ଦ ଲାଭହୁଏ, ପ୍ରିୟଙ୍କ ସହିତ ମିଳନ ହେବାଦ୍ୱାରା ସେତେ ହୁଏନାହିଁ । ଶାରୀରିକ ସମ୍ମିଳନ ସୁଖ କ୍ଷଣିକ ଓ ଅସ୍ଥାୟୀ । ମାନସିକ ମିଳନ ନିତ୍ୟ ନିରନ୍ତର ହୁଏ । ତାହା କେହି ନାଶକରି ପାରନ୍ତି ନାହିଁ । ତାହାକୁ ଧ୍ୟାନ, ଧାରଣା, ସମାଧି ଯେ କୌଣସି ନାମରେ ଅଭିହିତ କରନ୍ତୁ ନାହିଁକି, ତାହା କେବେହେଲେ ନାଶ ହୁଏନାହିଁ । ଚିତ୍ତବୃତ୍ତି ସବୁଦିଗରୁ ହଟିଆସି କେବଳ ପ୍ରିୟତମଙ୍କଠାରେ ହିଁ ନିରନ୍ତର ଅବଚ୍ଛିନ୍ନ ତୈଳଧାରବତ୍ ଲାଗିରହେ । ଏହା ହିଁ ପ୍ରେମର ପରାଗତି, ଏହା ହିଁ ପରାକାଷ୍ଠା ।

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଙ୍କର ମୁରଳୀ ଧ୍ୱନି ଶ୍ରବଣରେ ମତ୍ତଆଳୀ ହୋଇଥିବା ଗୋପୀକାଗଣ ପରସ୍ପର ମଧ୍ୟରେ କଥୋପକଥନ ହେବାରେ ମଜ୍ଜି ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ କହିଲା—'ସଖି ! ଆମ୍ଭେମାନେ ତ ଏହି ପବିତ୍ର ଭୂମି ବୃନ୍ଦାବନକୁ ସଂସାରର ସବୁଠାରୁ ଅଧିକ ଧନ୍ୟତମ ବୋଲି ଜାଣୁଥାଉଁ । ଏହି ଭୂମିର ସୌଭାଗ୍ୟ ସମ୍ବନ୍ଧରେ ବର୍ଣ୍ଣନା କରିବା ସହଜ ସାଧ୍ୟ ନୁହେଁ । ଯାହା କିଛି ବର୍ଣ୍ଣନା କରାଯାଏ, ତାହା ଅତି ସଂକ୍ଷେପ । ଯେତେବେଳେ ଦେବକୀନନ୍ଦନ ନିଜର ଅନାବୃତ୍ତ ଅରୁଣ-ଚରଣକୁ ଏହାର ବକ୍ଷସ୍ଥଳରେ ସ୍ଥାପନ କରନ୍ତି, ସେତେବେଳେ ସମସ୍ତ ବନ ଉପବନ ପ୍ରଫୁଲ୍ଲିତ ହୋଇ ଉଠନ୍ତି । ବୃନ୍ଦାବନ ଭୂମିର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ସେତେବେଳେ ସତେ ଯେପରି ରୋମାଞ୍ଚିତ ହୋଇଉଠେ । ଋଷିଗଣ ! ଯେତେବେଳେ ଏହି ପୁଣ୍ୟମୟୀ ପାବନ ଭୂମି ଉପରେ ସେ ତ୍ରିଭଙ୍ଗ ଲଳିତ ଠାଣିରେ ଠିଆ ହୋଇ ମୁରଳୀ ବଜାନ୍ତି, ଭୂଲତାକୁ ବିଚିତ୍ର ଭଙ୍ଗୀରେ ନଚାଇ ଏଥିରେ ଫୁଙ୍କ ମାରନ୍ତି ଓ ସେହି ବୈରିଣୀ ମୁରଳୀ ଗାନ କରିବାକୁ ଆରମ୍ଭ କରେ, ସେତେବେଳର କଥା ତ କିଛି କହିବାର ନାହିଁ । ସେତେବେଳେ ବନ ମଧ୍ୟରେ ବୁଲୁଥିବା ମୟୂରମାନଙ୍କର ଭ୍ରମ ଜାତ ହୋଇଥାଏ । ସତେ ଯେପରି ମନ୍ଦ ମନ୍ଦ ସ୍ୱରରେ ମେଘ ଗର୍ଜୁଛି । ସେହି ମୃଦୁ ମେଘ ଗର୍ଜନ ଭଳି ମୁରଳୀ ଧ୍ୱନିକୁ ଶୁଣି ହୃଦୟରେ ପ୍ରେମର ହିଲ୍ଲୋଳ ଉଠିବାକୁ ଲାଗେ । ମନମୟୂର ନିଜ ବଶରେ ନ ରହି ନାଚିଉଠେ । ଏଣୁ ମୟୂରମାନେ ନିଜ ନିଜର ଚନ୍ଦ୍ରବିଚିତ୍ର ପରକୁ ଟେକି ନୃତ୍ୟ କରିବାରେ ଲାଗନ୍ତି । ସେମାନଙ୍କ ନୃତ୍ୟ ଦେଖି ଓ ବିଚିତ୍ର ବେଣୁରବକୁ ଶୁଣି ଚରାଚର ପ୍ରତ୍ୟେକ ପ୍ରାଣୀ ସ୍ତବ୍ଧ ହୋଇଯାଆନ୍ତି । ସମସ୍ତଙ୍କର ଗତି-ରୋଧ ହୋଇଯାଏ । ଯେଉଁଠାରେ ଥାଆନ୍ତି ନା କାହିଁକି, ସେଠାରେ ସେହିପରି ରହି ଯାଆନ୍ତି । ଏହି ବୈରିଣୀ ବାଂଶୁରୀର ଧ୍ୱନିରେ ଏପରି କୌଣସି ଯାଦୁ ଅଛି, ଯେ କେହି ଏହା ଶୁଣୁଛି, ସେ ଆତ୍ମବିସ୍ମୃତ ହୋଇ ପଡ଼ିବ । ଏ ଭୂଲତା ପିତାମହ ବ୍ରହ୍ମାଙ୍କଠାରୁ ସବୁ କଥାରେ ବଳି ପଡ଼ୁଛି ।"

ଏ କଥା ଶୁଣି ଅନ୍ୟଜଣେ ସଖୀ କହିଲା—"ସଖି ! ତୁ ଏ ମୁରଲୀରେ ବ୍ରହ୍ମାଙ୍କର ଉପମା କିପରି ଦେଉଥିଲୁ ? ବ୍ରହ୍ମାଙ୍କର ତ ଚାରି ମୁଖ । ସେ ଚାରିମୁଖରେ ଚତୁର୍ବେଦ ଉପଦେଶ ଦିଅନ୍ତି ।"

ଏହାଶୁଣି ସେହି ସଖୀ କହିଲା—"ଆଲୋ ସଖି ! ବ୍ରହ୍ମାଙ୍କର ତ ଚାରିମୁଖ ; କିନ୍ତୁ ଏ ଗଣ୍ଡିର ତ ଚାରି ପରିବର୍ତ୍ତେ ଆଠ ଛିଦ୍ର ବିଶିଷ୍ଟ ଅଷ୍ଟମୁଖ । ଏ ଅଷ୍ଟମୁଖରେ ସେ ଯେପରି ଭଙ୍ଗୀରେ ଗର୍ଜ୍ଜନ କରେ, ତଦ୍ଦ୍ୱାରା ସାରାବିଶ୍ୱ ବିମୋହିତ ହୋଇଯାଏ ।"

ସେ ସଖୀଟି ପୁନଶ୍ଚ ପଚାରିଲା—"ନାଭିକମଳ ଉପରେ ଉପବେଶନ କରିଥିବା ବ୍ରହ୍ମାଙ୍କୁ ତ ସୃଷ୍ଟି ଆରମ୍ଭରେ ଭଗବାନ ଉପଦେଶ ଦେଇଥିଲେ । ଏ ମୁରଲୀକୁ ପୁଣି କିଏ ଏତେ ମୋହକ ଉପଦେଶ ଦେଇଥିଲା ?"

ଏ ପ୍ରଶ୍ନର ଉତ୍ତରରେ ସେହି ଗୋପୀଟି କହିଲା—"ସଖି ! ପିତାମହ ବ୍ରହ୍ମାଙ୍କୁ ତ ନାଭିକମଳ ଉପରେ ଭଗବାନ ଥରେମାତ୍ର ଉପଦେଶ ଦେଇଥିଲେ, ସେହି କାରଣରୁ ସେ ସେ ଏତେବଡ଼ ଜ୍ଞାନୀ ହୋଇଛନ୍ତି । ଏ ପୋଡ଼ାମୁହିଁକୁ ତ ଶ୍ୟାମସୁନ୍ଦର ମୁଖକମଳ ଉପରେ ବସାଇ ନିରନ୍ତର ଉପଦେଶ ଦେଉଅଛନ୍ତି, ପୁନଶ୍ଚ ଏ ଜ୍ଞାନର କ'ଣ କିଛି ଅଳଧୂଳ ଅଛି ?"

ପଚାରୁଥିବା ସଖୀଟି ପୁଣି ପଚାରିଲା—"ଆଗୋ, ସଖି ! କହି ତ ଦେଖି, ବ୍ରହ୍ମା ତ କମଳ ଉପରେ ବସି ଏ ଚରାଚର ସୃଷ୍ଟିକୁ ରଚନା କଲେ, ଏ ମୁରଲୀ ପୁଣି କେଉଁ କମଳ ଉପରେ ବସି ସୃଷ୍ଟି କରୁଛି ?"

ଉତ୍ତର ଦେଉଥିବା ସଖୀଟି କହିଲା—"ଆଲୋ, ବାଉଳି ! ତୁ ଏ କଥା ବି ଜାଣିନୁ ? ବ୍ରହ୍ମା ତ ଏକ କମଳ ଉପରେ ବସିଥିଲେ; କିନ୍ତୁ ଏ ଶ୍ରୀକୃଷ୍ଣଙ୍କର ଦୁଇ କରକମଳରେ ସର୍ବଦା ବସି ରହି ମୁଖକମଳକୁ ଶଯ୍ୟାରୂପେ ବ୍ୟବହାର କରୁଛି ।"

ପ୍ରଶ୍ନ କରୁଥିବା ସଖୀଟି ପଚାରିଲା—ଆଚ୍ଛା, ବ୍ରହ୍ମାଙ୍କର ବାହନ ହଂସଟି କିପରି ହଂସ ?"

ପ୍ରଶ୍ନର ଉତ୍ତର ଦେଉଥିବା ଗୋପୀ ଜଣକ କହିଲା—"ବ୍ରହ୍ମା ତ ଗୋଟିଏ ହଂସ ଉପରେ ଚଢ଼ୁଥିଲେ । ଏ ବୈଣବୀ ଆମ ସମସ୍ତ ଗୋପୀକାଙ୍କ ମାନସହଂସକୁ ନିଜର ବାହନ କରି ରଖିଛି । ସେ ତା' ଉପରେ ବସି ଯେଉଁଠାକୁ ଇଚ୍ଛା ସେଠାରେ ନେଇ ଘୂରାଉଛି ।"

ପ୍ରଶ୍ନକାରିଣୀ ଗୋପୀ ପୁନଶ୍ଚ ପଚାରିଲା—"ଆମ୍ଭେମାନେ ଶୁଣିଥିଲୁ ଯେ, ବ୍ରହ୍ମା ନିଜର କନ୍ୟା ସରସ୍ୱତୀଙ୍କ ପାଇଁ ନିଜର କୁଳବ୍ରତ ତ୍ୟାଗକରି ଦେଇଥିଲେ ।"

ଅନ୍ୟ ସଖୀଟି ରାଗିଯାଇ କହିଲା—"ତାହା ହେଲେ ଏ ଏପରି କି ବ୍ରତ ପାଳନକାରିଣୀ ? ଏ ତ ଅଧରସୁଧା ଲୋଭରେ ନିଜର କୁଳବ୍ରତ ତ୍ୟାଗକରି ଦେଇଛି ।

ଏପରି କି ଶିଖାସୂତ୍ର, ବ୍ରତ ସବୁ ତ୍ୟାଗ କରିଦେଇଛି । ଦିଗମ୍ବର ହୋଇ ଅଧରସୁଧାର ସ୍ୱାଦକୁ ସମସ୍ତଙ୍କ ସମ୍ମୁଖରେ ଚାଖିବାରେ ଲାଗିଛି । ଏହି ସବୁ କାରଣରୁ ମୁଁ ତ ଏ ବଂଶୀକୁ ପିତାମହ ବ୍ରହ୍ମାଙ୍କର ମାଉସୀ ବୋଲି ମନେ କରୁଛି ।"

ପ୍ରଶ୍ନକାରିଣୀ ସଖୀଟି ପଚାରିଲା—"ସଖି ! ଏହାର ନାମ ବଂଶୀ କାହିଁକି ରଖା ଯାଇଛି ?"

ଗୋପୀ କହିଲା—"ବାଂଶରୁ ତାହା ଉତ୍ପନ୍ନ ହୋଇଥିବାରୁ ତାକୁ 'ବଂଶୀ' କୁହାଯାଏ । ପ୍ରକୃତରେ ବଡ଼ିଶୀ କୁହାଯାଏ ମାଛ ଧରାଯାଉଥିବା ଏକ ସୂତା ଦେଇଥିବା ଓ ଲୁହାକଣ୍ଟା ବିଶିଷ୍ଟ ଏକ ବାଂଶ ଛଡ଼କୁ । ଏହି ବଡ଼ିଶୀ କଣ୍ଟାରେ ଖୋପ ଗୁନ୍ଥା ହୋଇ ଜଳ ମଧ୍ୟକୁ ତାହା ପକାଇ ଦେଇ ବାଂଶ ଦଣ୍ଡକୁ ଧରି ସ୍ଥଳଭାଗରେ ଜଗି ରହିବାକୁ ପଡ଼େ । ଖାଇବା ଲୋଭରେ ମାଛ ସେହି ଖୋପକୁ କଣ୍ଟା ସହିତ ଗିଳିଦିଏ । ତା' ଗଳାରେ କଣ୍ଟା ଲାଗିଯାଏ । ମାଛଧରାଳି ତାକୁ ଉପରକୁ ଟାଣି ଆଣି ବଶ କରନ୍ତି । ସେହିପରି ବୃନ୍ଦାବନ ବିହାରୀ ବନମାଳୀଙ୍କର ଏହି ବଂଶୀ ତାହାର ତାନରୂପକ ଡୋରରେ ମଧୁରରସ ସ୍ୱରୂପ ଖାଦ୍ୟ ଗୁନ୍ଥି ଜୀବରୂପକ ମୀନଙ୍କୁ ଆକର୍ଷିତ କରେ । ଯେତେବେଳେ ସେହି ଶବ୍ଦ କାନରେ ପଡ଼େ ପ୍ରାଣୀ ସେ ଆଡ଼େ ଟାଣି ହୋଇଯାଏ । ତେଣୁ ଏହି ବଂଶୀ ହେଉଛି ଆକର୍ଷଣକାରୀ ।

ପ୍ରଶ୍ନ କରୁଥିବା ସଖୀଟି ପଚାରିଲା—"ସଖି ! ଏ ବଂଶୀ ପ୍ରତ୍ୟେକଙ୍କୁ ଆକର୍ଷିତ କରେ ନା କେବଳ ସ୍ତ୍ରୀ ଲୋକଙ୍କୁ ?"

ଗୋପୀ କହିଲା—"ତାହାର ଯାଦୁ ତ ସହଜେ ପ୍ରତ୍ୟେକଙ୍କ ଉପରେ ପ୍ରଭାବ ପକାଏ; କିନ୍ତୁ ସ୍ତ୍ରୀ ଲୋକମାନଙ୍କର ହୃଦୟ ଅଧିକ କୋମଳ । ଏଥିପାଇଁ ଶାସ୍ତ୍ରକାରଗଣ ସେମାନଙ୍କୁ ଅବଳା ବୋଲି କହିଥାଆନ୍ତି । ଏମାନେ ସେହି ମାଦକ ଧ୍ୱନିକୁ ଶୁଣି ଅବିଳମ୍ବେ ଚେତାଶୂନ୍ୟ ହୋଇ ଯାଆନ୍ତି । ସେହି ମାଧୁରୀ ଜାଲରେ ପଡ଼ି ଯାଆନ୍ତି । ପରେ ଏଥିରେ ପଡ଼ିଗଲେ ବାହାରିବା ଅସମ୍ଭବ । ଏ ଫାନ୍ଦରେ ପକାଇ ଛାଡ଼ିଦେବା ତ ଏ ବଂଶୀଧାରୀ ଆଦୌ ଶିଖି ନାହିଁ । କେବଳ ଫାନ୍ଦରେ ପକାଇ ଜାଣିଛି । କନ୍ଦାଇ ଜାଣିଛି; କିନ୍ତୁ ହସାଇ ଜାଣି ନାହିଁ । କେହି ଛଟପଟ ହେବା ଦେଖିଲେ ତାକୁ ଅନନ୍ଦ ଲାଗେ । ସଖି ! ଯଦି ବ୍ରହ୍ମା କେବଳ ଆମ୍ଭମାନଙ୍କୁ ଏ ସ୍ତ୍ରୀ ଜନ୍ମ ଦେବାର ଥିଲା, ତେବେ ପୁରୁଷ କାହିଁକି ସ୍ତ୍ରୀ କାହିଁକି କରୁଥିଲେ । ଯଦି ପୁରୁଷ କାହିଁକି ହିଁ ସ୍ତ୍ରୀ, ଏହି ଇଚ୍ଛାରେ ସୃଷ୍ଟି କରୁଥିଲେ, ତାହାହେଲେ ଆମ୍ଭମାନଙ୍କ ହୃଦୟରେ ଲୋକଲଜ୍ଜା, କୁଳଲଜ୍ଜା, ବେଦଲଜ୍ଜା ତଥା ଆହୁରି ଅନେକ ପ୍ରକାରର ବ୍ୟର୍ଥଲଜ୍ଜା କାହିଁକି ଭରି ଦେଉଥିଲେ ? ଆମ୍ଭମାନଙ୍କଠାରୁ ମୃଗୁଣୀମାନେ ତ ସରସ । କାରଣ ସେମାନେ ଏହି ମୁରଲୀର ମଧୁର ସ୍ୱନକୁ ନିଶ୍ଚେଷ୍ଟ ହୋଇ ନୀରବରେ ଠିଆ ହୋଇ

ଶ୍ରବଣ କରୁ ଅଛନ୍ତି ? ଏମାନଙ୍କର ବଡ଼ ବଡ଼ ଶିଙ୍ଗ ଥିବା ପତି ଏହି କୃଷ୍ଣସାର ମୃଗମାନେ ବି ଏମାନଙ୍କ ପାଖରେ ଠିଆ ହୋଇଛନ୍ତି । ଏମାନଙ୍କର ତ କୌଣସି ଶୀଳ ସଂକୋଚ ନାହିଁ କିମ୍ବା ଏମାନେ ତ ମୃଗୁଣୀମାନଙ୍କୁ ଅବିଶ୍ୱାସ ଅଥବା ଈର୍ଷା କରୁନାହାନ୍ତି ? ପତିପତ୍ନୀ ଉଭୟେ ଏକ ସଙ୍ଗେ ବେଣୁମାଧୁରୀରେ ମତ୍ତ ହୋଇ ତାହା ପାନ କରୁଅଛନ୍ତି । ଏମାନେ ତ ପୁଣି ଆମର ପରି ସ୍ତ୍ରୀ । ଆମକୁ ଯଦି କୌଣସି ଅସମୟରେ ବନ ଆଡ଼କୁ ଯିବାର ଦେଖି ଦେଉଛନ୍ତି, ତେବେ ଆମ୍ଭମାନଙ୍କୁ ପଚାଶ ପ୍ରକାର ପ୍ରଶ୍ନ ପଚରା ଯାଉଛି । କାହିଁକି ଯାଇଥିଲ ? ସେଠାରେ କଣ ଥିଲା ? ଏପରି ଅସମୟରେ ଯିବାର କି ଆବଶ୍ୟକତା ଥିଲା ? ଇତ୍ୟାଦି । ଏହି ହତଭାଗ୍ୟମାନଙ୍କୁ ଯଦି କେହି ପଚାରେ—"ଶ୍ୟାମସୁନ୍ଦରଙ୍କର ବଂଶୀଧ୍ୱନି ଶ୍ରବଣ କରିବା କ'ଣ କୌଣସି ପାପ ନୁହେଁ ? ନିଜ ନିଜର ନିରସ ଅସ୍ଥିର ହୃଦୟରେ ସରସ ବେଣୁଧ୍ୱନିକୁ ଧାରଣ କରିବା କ'ଣ ଏକ ଅନୁଚିତ କାର୍ଯ୍ୟ ? ଯେଉଁ ରୂପମାଧୁରୀ ଆମ୍ଭମାନଙ୍କୁ ବଶ କରିଛି, ଯେଉଁ ବଂଶୀର ଝଙ୍କାର ଆମ୍ଭମାନଙ୍କୁ ଫାନ୍ଦରେ ପକାଇଛି, ଆମ୍ଭେମାନେ ଅବଶ ହୋଇ ତା' ଆଡ଼କୁ ଧାଉଁଛୁ । ଏହା କ'ଣ ଆମ୍ଭମାନଙ୍କର ଅପରାଧ ? ଯଦି ଏ ମୂର୍ଖ ପଶୁ ଜାତିରେ ଉତ୍ପନ୍ନ ଜଙ୍ଗଲୀ ହରିଣୀମାନେ ନିଜ ନିଜର ପ୍ରଣୟୟୁକ୍ତ କଟାକ୍ଷଦ୍ୱାରା ପତିଙ୍କ ସମ୍ମୁଖରେ ପଶୁପାଳ ପ୍ରଭୁଙ୍କୁ ପ୍ରେମପୂର୍ବକ ପୂଜା କରିପାରନ୍ତି, ସେହି ନନ୍ଦନନ୍ଦନଙ୍କୁ ନିଜ ନିଜର ପ୍ରଣୟୋପହାର ସମର୍ପିତ କରି ପାରନ୍ତି, ତାହାହେଲେ ଆମେ ମନୁଷ୍ୟରୂପେ ଜନ୍ମ ହୋଇ କଣ ତାଙ୍କୁ ଅର୍ଚ୍ଚନ-ବନ୍ଦନ କରି ପାରିବୁ ନାହିଁ ? ତାଙ୍କପ୍ରତି କୃତଜ୍ଞତା ପ୍ରକାଶ କରି ପାରିବୁ ନାହିଁ ? ଏହା କିପରି ବିଡ଼ମ୍ବନା କଥା ? କିପରି ବିବଶତା ? ଲୋକଲଜ୍ୟା ଓ କୁଳ ମର୍ଯ୍ୟାଦାର ତ ପୁଣି କୌଣସି ସୀମା ଅଛି ? ଆଚ୍ଛା, ମନେ କରାଯାଉ ମୁରଲୀ ଧ୍ୱନି ଶୁଣି ଆମ୍ଭେମାନେ ତା' ତାନରେ ଆକୃଷ୍ଟ ହୋଇ ପଡ଼ୁଛୁ, ଆମର କୌଣସି ଅପରାଧ ନାହିଁ, ସବୁ ଅପରାଧ ମୁରଲୀର । ତାକୁ ଭାଙ୍ଗି ଦିଆଯାଉ କିମ୍ବା ବ୍ରଜରୁ ତଡ଼ି ଦିଆଯାଉ । ଅଥବା ବୈରୀକୁ ନ ମାରି ବୈରୀର ମାତାକୁ ମାରି ଦିଆଯାଉ । ବଂଶୀକୁ ନ ଭାଙ୍ଗି କେବଳ ବ୍ରଜରେ ଥିବା ବାଂଶବୁଦା ସବୁ ସଫାକରି ଦିଆଯାଉ । ତେବେ ଆଉ ବାଂଶ ନ ଥିବ କି ବଂଶୀ ମଧ୍ୟ ବାଜିବାକୁ ନ ଥିବ । ଲୋକଙ୍କର ଯାହା କର୍ତ୍ତବ୍ୟ ସେମାନେ ତାହା ନ କରି କେବଳ ଆମ୍ଭମାନଙ୍କୁ ଲଜ୍ଜିତ କରୁଛନ୍ତି । ଏଭଳି ମୋହକ ମୁରଲୀ ଧ୍ୱନିକୁ ଶୁଣି କାହାର ହୃଦୟ ଭଲି ଜଳ ଭଳି ତରଳି ନ ଯିବ ?"

ସୂତ କହୁଛନ୍ତି—"ମୁନିଗଣ ! ଏତିକି କହୁ କହୁ ସେହି ସଖୀର ଶ୍ୟାମସୁନ୍ଦରଙ୍କର ତ୍ରିଭୁବନ ମୋହନ ରୂପର ସ୍ମୃତି ଆସିଯିବାରୁ ସଙ୍ଗେ ସଙ୍ଗେ ସେ ମୂର୍ଚ୍ଛିତା ହୋଇ ତଳେ ପଡ଼ିଲା । ଏହାପରେ ଅନ୍ୟ ସଖୀ କିଛି କହିବାକୁ ଆରମ୍ଭ କଲା ।"

## ଛପ୍ପୟ

ହ୍ୱୈ ତ୍ରିଭଙ୍ଗ ଦୈ ଫୁଙ୍କ ବଜାବେଂ ବେନୁ ବନ୍ୱାରୀ ।
ବଂଶୀ ବଂଶୀ ବନୀ ଫଁସାଇ ସବ ବ୍ରଜନାରୀ ॥
ମୃଗୀ ପତଙ୍ଗ ସଁଗ ସୁନତ ତୁରତ ଜଡ଼ବତ ବନ ଜାବେଂ ।
ପ୍ରନୟ କଟାକ୍ଷ ଚଲାୟ ଶ୍ୟାମ ପ୍ରତି ଭକ୍ତି ଦିଖାବେଂ ॥
ଚଢ଼ି ବିମାନ ସୁନ ବେନୁ ଧୁନି, ସୁରନ ସହିତ ସୁର ସୁନ୍ଦରୀଂ ।
ଭଈଂ ବିବସ ନୀବୀ ଖିସୀଂ, ଶିଥିଲକେଶ ମାଲ ଗିରୀଂ ॥



# ମୂର୍ଚ୍ଛିତକାରଣୀ ବଇଁଶୀ

ଗାବଶ୍ଚ କୃଷ୍ଣମୁଖନିର୍ଗତବେଣୁଗୀତ
ପୀୟୂଷମୁତ୍ତଭିତକର୍ଣ୍ଣପୁଟୈଃ ପିବନ୍ତ୍ୟଃ ।
ଶାବାଃ ସ୍ନୁତସ୍ତନପୟଃ କବଲାଃ ସ୍ମ ତସ୍ଥୁ
ର୍ଗୋବିନ୍ଦମାତ୍ମନି ଦୃଶାଶ୍ରୁକଲାଃ ସ୍ପୃଶନ୍ତ୍ୟଃ ॥

(ଶ୍ରୀ ଭା ୧୦ ସ୍କ, ୨୧ ଅ, ୧୩ ଶ୍ଳୋକ)

## ଛପ୍ପୟ

ଚରତ-ଚରତ ତୃନ ଧେନୁ ସୁନୀ ମାଦକ ମୁରଲୀ ଧୁନି ।
ଶ୍ରବନପୂଟନତେଂ ପାନକରୈଂ ହରଷିତ ହ୍ୱୈ ପୁନି ପୁନି ॥
ନୟନନ ନୀର ବହାଇ ହୃଦୟ ମହଁ ଛବି ଲୈ ଜାବୈଂ ।
ଆଲିଙ୍ଗନ କର ହ୍ୱାହୀଁ ସୁଖୀ ସୁଧି ତନ ବିସରାବୈଂ ॥
ବଛର ମୁଖମହଁ କ୍ଷୀର ଧର, ଜ୍ୟୋଂକେ ତ୍ୟୋଂ ଠାଢ଼େ ରହେଂ ।
ଝାଗ ଗିରେଂ ମୋତୀ ସରସ, ଧୁନି ପ୍ରବାହ-ମହଁ ସବ ବହେଂ ॥

ଏହା କଥିତ ଅଛି ଯେ, ପ୍ରେମ ବିଷୟ ପଶୁ-ପକ୍ଷୀମାନେ ମଧ୍ୟ ଜାଣନ୍ତି । କେବଳ ପଶୁ-ପକ୍ଷୀ କାହିଁକି, ପାଦପଠାରୁ ପାଷାଣ ପର୍ଯ୍ୟନ୍ତ ସମସ୍ତେ ହିଁ ପ୍ରେମର ବଶୀଭୂତ

ହୋଇଯାଆନ୍ତି । କଥିତ ଅଛି—"ଭରତଙ୍କର ଅଲୌକିକ ପ୍ରେମକୁ ଦେଖି ଚିତ୍ରକୂଟ ପର୍ବତର ପାଷାଣ ତରଳ ଯାଇଥିଲା । ମଦନମୋହନ ମୁରଲୀଧରଙ୍କ ମୁରଲୀର ଧ୍ୱନି ଶ୍ରବଣ କରି ଗିରିଗୋବର୍ଦ୍ଧନର ଶିଳା କୋମଳ ହୋଇ ତରଳ ଯାଇଥିଲା । ଅଦ୍ୟାବଧି ତା'ଉପରେ ଗୋପବାଳକ ଶ୍ରୀକୃଷ୍ଣ ଓ ଗୋରୁମାନଙ୍କର ପାଦଚିହ୍ନ ବିଦ୍ୟମାନ । ଗୋବର୍ଦ୍ଧନ ପର୍ବତ ପରିକ୍ରମା କରୁଥିବା ସୌଭାଗ୍ୟବାନ୍ ଯାତ୍ରୀଗଣ ଏହି ସୌଭାଗ୍ୟଶାଳିନୀ ଶିଳାଗୁଡ଼ିକୁ ଦର୍ଶନ କରନ୍ତି । ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନି ସାଧାରଣଧ୍ୱନି ନ ଥିଲା । ଏହା ଥିଲା ବିଶ୍ୱକୁ ବିମୋହନକାରୀ ମଧୁରାତି ମଧୁର ଧ୍ୱନି ।

ସୂତ କହୁଛନ୍ତି—"ମୁନିଗଣ ! ଏହି ବଂଶୀଧ୍ୱନିରେ ଗୋପାଙ୍ଗନାଗଣ ପାଗଳୀ ହୋଇ ପରସ୍ପର ମଧ୍ୟରେ ଭଗବାନଙ୍କର ରୂପମାଧୁରୀ, ଲୀଳାମାଧୁରୀ ଓ ବେଣୁମାଧୁରୀ ସମ୍ବନ୍ଧରେ ଆଲୋଚନା କରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା—"ସଖି ! ଭଗବାନ ସ୍ତ୍ରୀ ଜାତିକୁ ଏତେ ଦହନଶୀଳା କରି କାହିଁକି ସୃଷ୍ଟି କଲେ ? ସୌତୁଣୀ ଯୋଗୁଁ ଏମାନଙ୍କ ହୃଦୟ କାହିଁକି ଏତେ ଡାହ ହୁଏ ? ହୃଦୟ କାହିଁକି ବିଦୀର୍ଣ୍ଣ ହୋଇଉଠେ ? ଏମାନେ ନିଜର ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ନଗଣ୍ୟ ଦୃଷ୍ଟିରେ ଦେଖନ୍ତି । କେବଳ ସ୍ତ୍ରୀ କାହିଁକି, ପ୍ରାଣୀମାନଙ୍କର ହିଁ ଏହି ସ୍ୱଭାବ । ଯେତେବେଳେ ବହୁତ ପ୍ରାଣୀ ଏକ ପ୍ରାଣୀକୁ ଚାହାନ୍ତି, ସେତେବେଳେ ପ୍ରତ୍ୟେକଙ୍କ ମନରେ ଏହି ଭାବ ଉତ୍ପନ୍ନ ହୁଏ ଯେ, ମୋର ପ୍ରିୟ ଅମୁକକୁ ଅଧିକ ଭଲ ପାଉଛି । କେତେକ ଲୋକ ନିଜର ଚଞ୍ଚଳତା, ଚପଳତା, ବାକ୍‌ପଟୁତା, ସେବା, ଶୁଶ୍ରୂଷା ତଥା ଅନ୍ୟ ଅନୁକୂଳ ଆଚରଣ ଦ୍ୱାରା ସ୍ୱାମୀଙ୍କୁ ଅପଣାର କରି ନିଅନ୍ତି । ଏମାନଙ୍କର ଶୀଳ ସଙ୍କୋଚ କିଛି ରହେ ନାହିଁ । ଏମାନେ ଯେତେବେଳେ ଇଚ୍ଛା ସେତେବେଳେ ଯାହା ଚାହାନ୍ତି କହି ଦିଅନ୍ତି । ଯାହାକୁ ଇଚ୍ଛା ତାକୁ ଅପମାନିତ କରନ୍ତି । ସ୍ୱାମୀ ଏ ଘଟଣାରେ ଲଜରେ ନୀରବ ରହି ଯାଆନ୍ତି । ପାଖ ଲୋକ ହୋଇ ଥିବାରୁ ସେ ସର୍ବଦା ସ୍ୱାମୀଙ୍କୁ ଅଧୀନ କରି ରଖିଥାଆନ୍ତି । ସ୍ୱାମୀ ଯଦି ଅନ୍ୟ କାହାରିକୁ ଭଲ ପାଇବାକୁ ଇଚ୍ଛା କରନ୍ତି, ଏ ମୁହଁଲଗୀ ତାହା କରାଇ ଦିଅନ୍ତି ନାହିଁ । ଏ ମୁରଲୀ ହେଉଛି ମୋହନଙ୍କର ମୁହଁଲଗୀ । ଏ ପୋଡ଼ାମୁହିଁ ଶ୍ୟାମସୁନ୍ଦରଙ୍କୁ ବଶ କରି ନେଇଛି । ବୁଦ୍ଧିମାନ୍ ଲୋକମାନେ ନୀତିଶାସ୍ତ୍ରରେ ଯାହାକିଛି ଲେଖିଛନ୍ତି, ତାହା ବୁଝି ବିଚାରି ଲେଖିଛନ୍ତି । ନୀତି ଶାସ୍ତ୍ରରେ ଅଛି—ନିଜଠାରୁ କ୍ଷୁଦ୍ରାତିକ୍ଷୁଦ୍ର ପ୍ରତିଦ୍ୱନ୍ଦ୍ୱୀଙ୍କୁ, ଦୁର୍ବଳାତି ଦୁର୍ବଳ ଶତ୍ରୁଙ୍କୁ କେବେହେଲେ ନଗଣ୍ୟ ବୋଲି ମନେ କରିବ ନାହିଁ । ଆମେ ପ୍ରଥମେ ମନେ କରିଥିଲୁ—"ଏ ନଗଣ୍ୟ ଛିଦ୍ର ବିଶିଷ୍ଟ ବାଂଶ ନଳଟା ଆମର କଣ କରି ପାରିବ । ଆମେ କେଉଁଠି, ଆଉ ଏ କ୍ଷୁଦ୍ର ବାଉଁଶ ନଳ କେଉଁଠି ? କିନ୍ତୁ ଏ ତ ଆମ ସମସ୍ତଙ୍କର କାନ ମୋଡ଼ି ଦେଉଛି । ଶ୍ୟାମସୁନ୍ଦରଙ୍କର ଅଧରାମୃତ ପାନ କରି କରି ଏ ତ ହୃଷ୍ଟପୁଷ୍ଟ ହୋଇଯାଇଛି । ଏହାଠାରେ ତ ଯାଦୁବିଦ୍ୟା ଭରି ରହିଛି । ଶ୍ୟାମସୁନ୍ଦରଙ୍କର ରୂପମାଧୁରୀ ପ୍ରଥମରୁ ହିଁ ଆମ୍ଭମାନଙ୍କ ପ୍ରାଣକୁ ବିକଳ କରୁଥିଲା, ଏବେ ସେହି ରୂପମାଧୁରୀ

ସହିତ ଏ ବେଣୁମାଧୁରୀ ମିଶିଗଲା । ଉଭୟ ସହଚରୀ ମିଶି ଦିଗ୍‌ବିଜୟ କରିବାକୁ ସଂକଳ୍ପବଦ୍ଧ । ଏ ଦୁହେଁ ସଂସାରକୁ ବଶ କରିବାରେ ପାରଙ୍ଗମ । ଆମ୍ଭେମାନେ ତ ମର୍ତ୍ତ୍ୟଲୋକର ନାରୀ । ଆମ୍ଭମାନଙ୍କର ତ ସେପରି କୌଣସି ସୌନ୍ଦର୍ଯ୍ୟ ନାହିଁ; କିନ୍ତୁ ଏ ଶ୍ୟାମସୁନ୍ଦରଙ୍କର ସ୍ୱଭାବ ଆମକୁ ଜଣା ଅଛି । ତାଙ୍କର ମୋହନକାରୀ ସୌନ୍ଦର୍ଯ୍ୟ ଅତ୍ୟନ୍ତ ଆକର୍ଷକ । ଯେଉଁ ନାରୀ ତାହା ଅବଲୋକନ କରୁଛି, ସେ ମୁଗ୍‌ଧ ହୋଇ ଯାଉଛି, ଆନନ୍ଦିତ ତଥା ପ୍ରଫୁଲ୍ଲିତ ହୋଇଯାଉଛି ଓ ନିଜର ସର୍ବସ୍ୱ ସମର୍ପଣ କରି ଦେଉଛି । ସେହି ନିର୍ଲଜ୍ଜ ବାଂଶୁରୀ ପୁଣି ସେହି ନାରୀଙ୍କୁ କଟାଘାରେ ଲୁଣ ଦେବାଭଳି ଯନ୍ତ୍ରଣା ଦେଉଛି । ଦେଖ, ସମ୍ମୁଖରେ ଥିବା ବିମାନରେ ସୁରସୁନ୍ଦରୀଗଣ ନିଜ ନିଜର ପତିମାନଙ୍କ ସଙ୍ଗରେ ବସି ଅଛନ୍ତି । ଆମ୍ଭମାନଙ୍କର ସ୍ୱାମୀ ଆମ୍ଭମାନଙ୍କ ସମ୍ମୁଖରେ ଥାଇ ମଧ୍ୟ ଅମ୍ଭେମାନେ ମୁଖ ଖୋଲି ପଦେ ହେଲେ କଥା କହିପାରୁ ନାହୁଁ କିମ୍ବା ଓଢ଼ଣା ତଳୁ ଅଖି ଉଠାଇ ଚାହିଁ ପାରୁ ନାହିଁ । ଏ ଦେବାଙ୍ଗନା-ମାନଙ୍କର ସୌଭାଗ୍ୟକୁ ପ୍ରଶଂସା କରିବାର କଥା । ଏମାନେ ଶ୍ୟାମସୁନ୍ଦରଙ୍କର ରୂପ ସୁଧା ନୟନ ଭରି ପାନ କରୁ ଅଛନ୍ତି; କର୍ଣ୍ଣରୂପୀ ପାନପାତ୍ରରେ ବେଣୁଧ୍ୱନି ରୂପୀ ଅମୃତକୁ ଆକଣ୍ଠ ପାନ କରୁ ଅଛନ୍ତି । ଏହି ଦିବ୍ୟରସଦ୍ୱୟ ପାନ କରିବା ଦ୍ୱାରା ଏମାନଙ୍କର ହୃଦୟ ଦ୍ରବିତ ହୋଇ ଯାଉଛି ଓ ଶରୀର ରୋମାଞ୍ଚିତ ହୋଇ ଉଠୁଛି । କନ୍ଦର୍ପ ଏମାନଙ୍କ ଅଙ୍ଗପ୍ରତ୍ୟଙ୍ଗରେ ପ୍ରବେଶ କରି ଏମାନଙ୍କୁ ଲଜକୋଳି ଲତାଭଳି ଲଜ୍ଜାବନତ କରି ଦେଉଛି । ଫଳରେ ଏମାନଙ୍କ କେଶବନ୍ଧ ଆପେ ଆପେ ଖୋଲି ଯାଉଛି । ମୁଖମଣ୍ଡଳରେ ସ୍ୱେଦ ମୋତିବିନ୍ଦୁ ସଦୃଶ ଝଲସି ଉଠୁଛି । କେଶରେ ଗୁନ୍ଥା ହୋଇଥିବା ପୁଷ୍ପ ସ୍ୱତଃ ଝଡ଼ିପଡ଼ୁଛି । ଏମାନଙ୍କର କଟିତଟରୁ ଖୋସଣୀ ଖସି ଯାଉଛି । ଏ ସବୁ ପୁଣି ନିଜ ନିଜର ପତିଙ୍କ ସମ୍ମୁଖରେ ହେଉଛି; କିନ୍ତୁ ଏମାନଙ୍କୁ ଜଣା ନାହିଁ ଯେ ମଦନମୋହନଙ୍କର ମଧୁରାତି ମଧୁର ମାଧୁରୀରେ ସମସ୍ତେ ମୋହିତ ।'' ଏତିକି କହୁ କହୁ ସେହି ସଖୀର ହୃତ୍‌କମ୍ପ ଜାତ ହେଲା, ଶରୀର ଥରିବାକୁ ଲାଗିଲା । ସେ ମୂର୍ଚ୍ଛିତ ହୋଇଗଲା ।

ତାହାର ଏପରି ଦଶା ଦେଖି ଅନ୍ୟ ଏକ ସଖୀ ଦୁଃଖରେ ମ୍ରିୟମାଣା ହୋଇ ପଡ଼ିଲା । ଏହା ତ ହେବା ସ୍ୱାଭାବିକ । କେବଳ ମନୁଷ୍ୟ କାହିଁକି ଗୋରୁଗାଈମାନେ ବି ମଦନମୋହନଙ୍କ ମୁଖ ନିସୃତ ବେଣୁଗୀତ ରୂପୀ ଅମୃତ କର୍ଣ୍ଣପୁଟରେ ପାନ କରି ଆତ୍ମବିଭୋର ହୋଇ ପଡ଼ୁଥିଲେ । ଏମାନଙ୍କର ତ ଶାରୀରିକ ଶୁଦ୍ଧିବୁଦ୍ଧି ନ ଥିଲା । ଏମାନେ ନିରନ୍ତର ନୟନରୁ ନୀର ନିର୍ଗତ କରି ନିସ୍ତବ୍‌ଧ ହୋଇ ଠିଆ ହେଉଥିଲେ । ଏ ଘଟଣାରୁ ପ୍ରତୀତ ହେଉଥିଲା—ଏମାନେ ଶ୍ୟାମସୁନ୍ଦରଙ୍କର ମଧୁରାତି ମଧୁର ମୂର୍ତ୍ତି ଦର୍ଶନ କରି ଅନ୍ତର୍ଦେଶରେ ତାଙ୍କୁ ସତେ ଯେପରି ଆଲିଙ୍ଗନ କରୁ ଅଛନ୍ତି । ବତ୍ସମାନେ ମା'ର ପହ୍ନାରେ ମୁଖଦେଇ ଚୁପ୍‌ଚାପ୍ ଠିଆ ହୋଇଛନ୍ତି । ସେମାନଙ୍କ ମୁଖରୁ ଦୁଗ୍‌ଧବିନ୍ଦୁ ସତେ ଯେପରି ବୃକ୍ଷରୁ ଶ୍ୱେତପୁଷ୍ପମାନ ଝଡ଼ିପଡ଼ିଲା ଭଳି ଟପ୍‌ଟାପ୍ ହୋଇ ତଳେ ଖସି ପଡ଼ୁଛି । ସେହି

ଗୋ-ବତ୍ସାମାନେ ଧନ୍ୟ, ଯେଉଁମାନେ କ ଶ୍ରୀକୃଷ୍ଣଙ୍କୁ ମନରେ ସ୍ମରଣ କରୁଛନ୍ତି ।” ଭଗବାନଙ୍କ ଭାବରେ ତନ୍ମୟ ହେବା କ୍ଷଣି ସେହି ଗୋପୀକା ଶରୀରରେ ସିହରଣ ଜାତ ହେବାକୁ ଲାଗିଲା, ଶରୀର ଥରିବାକୁ ଲାଗିଲା, ହୃତ୍କମ୍ପ ଜାତ ହେଲା ଓ ସେ ମଧ୍ୟ ମୂର୍ଚ୍ଛିତା ହୋଇ ଭୂମିରେ ଟଳି ପଡ଼ିଲା ।

ଏବେ ଅନ୍ୟଜଣେ ସଖୀ କହିବାକୁ ଆରମ୍ଭ କଲା—“ବୃଦ୍ଧ ବ୍ରହ୍ମା ଏ ସ୍ତ୍ରୀ ଜାତି ପାଇଁ କ’ଣ ସମସ୍ତ ପ୍ରକାରର ବିବଶତା ସୃଷ୍ଟି କରି ପୁରୁଷ ଜାତିକୁ ଏତେ ନିଷ୍ଠୁର କରି ଗଢ଼ିଛନ୍ତି ? ଆମ୍ଭେମାନେ ଜାଣୁ ଯେ, ନିଷ୍ଠୁର ହୃଦୟ ବିଶିଷ୍ଟ ପୁରୁଷଙ୍କୁ ଦେଖିବା ପାପ । ଏ କୃଷ୍ଣ ଅତି ନିଷ୍ଠୁର, ଏହାର ହୃଦୟ କେଉଁ ବସ୍ତୁରେ ଗଢ଼ା ତାହା ଆମକୁ ଜଣା ନାହିଁ । ତାଙ୍କ ହୃଦୟ କୋମଳ ନୁହେଁ । ସେ ଦୟାମାୟା ଶୂନ୍ୟ । ଏବେ ଦେଖ ସେ କିପରି ତନ୍ମୟ ହୋଇ ବେଣୁବାଦନ କରୁଛି, ସେହି ଧ୍ୱନିରେ ସେ ପାଗଳ । ସଂସାରର ହାନିଲାଭ ଓ ଭଲ ମନ୍ଦ ଆଦି ତା’ ଉପରେ କିଛି ପ୍ରଭାବ ପକାଇ ପାରୁ ନାହିଁ । ଆମ୍ଭେମାନେ ଭୟଭୀତା ହୋଇଥିବାରୁ ସେହି ମୋହକ ମୁରଲୀ ଧ୍ୱନିକୁ ଶୁଣିପାରୁ ନାହୁଁ । ଆମ୍ଭମାନଙ୍କ ଉପରେ ସମାଜର ଅନେକ ପ୍ରତିବନ୍ଧ । ବୃନ୍ଦାବନର ବୃକ୍ଷମାନଙ୍କରେ ବାସ କରୁଥିବା ପକ୍ଷୀମାନେ ବରଂ ଧନ୍ୟ । ସେମାନଙ୍କୁ ଦେଖ, ସେମାନେ କିପରି କୂଜନ ବନ୍ଦ କରି ଚୁପ୍‌ଚାପ୍ ହୋଇ ଏକାଗ୍ର ଚିତ୍ତରେ ବେଣୁ ନାଦକୁ ଶ୍ରବଣ କରୁଛନ୍ତି । ତାଙ୍କ ଆଡ଼କୁ ନିର୍ନିମେଷ ନୟନରେ ଚାହୁଁଛନ୍ତି । ଏମାନଙ୍କର ଶାନ୍ତ, ଦାନ୍ତ, ଏକାଗ୍ର, ତନ୍ମୟ ଓ ନିର୍ନିମେଷତାକୁ ଦେଖି ଆମ୍ଭମାନଙ୍କୁ ଏପରି ପ୍ରତୀତ ହେଉଛି, ସତେଯେପରି ଏମାନେ ପୂର୍ବ ଜନ୍ମରେ କୌଣସି ମୁନୀଶ୍ୱର ଥିଲେ । ଏମାନେ ଅତ୍ୟନ୍ତ ସୌଭାଗ୍ୟଶାଳୀ । କାରଣ ଏମାନେ ବୃନ୍ଦାବନର ପାଦପମାନଙ୍କରେ ଜନ୍ମଗ୍ରହଣ କରିଛନ୍ତି, ପ୍ରତିଦିନ ଯମୁନା ଜଳପାନ କରିବାପାଇଁ ଏକତ୍ରିତ ହେଉଛନ୍ତି ଓ ଯେଉଁଠାରୁ ଶ୍ୟାମସୁନ୍ଦରଙ୍କୁ ଭଲଭାବେ ଦେଖି ପାରିବେ, ସେହି ମନୋହର ପଲ୍ଲବିତ ବୃକ୍ଷ ଶାଖାରେ ବସି ଶ୍ରୀକୃଷ୍ଣଙ୍କର ରୂପମାଧୁରୀ ନେତ୍ରପଥରେ ମନଇଚ୍ଛା ପାନ କରୁଛନ୍ତି । ଏମାନଙ୍କର ସୌଭାଗ୍ୟର ପଟାନ୍ତର ନାହିଁ । ଏତେ ବିକଳ ହୋଇ ମଧ୍ୟ ଆମ୍ଭେମାନେ ତ ଟିକିଏ ଭଲଭାବରେ ଶ୍ୟାମସୁନ୍ଦରଙ୍କ ମୁରଲୀ ଧ୍ୱନି ଶୁଣିପାରୁ ନାହିଁ କିମ୍ବା ତାଙ୍କର ଅନୁପମ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ସ୍ଥିର ଭାବରେ, ଅପଲକ ଭାବରେ ପାନ କରି ପାରୁ ନାହୁଁ ।” ଏହା କହୁ କହୁ ସେହି ଗୋପୀକାର ମଧ୍ୟ ଭାବ-ସମାଧି ହୋଇଗଲା ।”

ଏହା ଦେଖି ଅନ୍ୟ ସଖୀ କହିଲା—“ଏ ବୃନ୍ଦାବନର ପକ୍ଷୀମାନଙ୍କୁ ଶ୍ୟାମସୁନ୍ଦରଙ୍କର ରୂପମାଧୁରୀ ଯୋଗୁ ଭାବ ସମାଧି ହୋଇ ଯାଉଥିବା କୌଣସି ଆଶ୍ଚର୍ଯ୍ୟ କଥା ନୁହେଁ । ଏ ତ ପୁଣି ପ୍ରାଣଧାରୀ ଜୀବ । ସଚେତନ ପ୍ରାଣୀମାନଙ୍କର ପ୍ରେମଭାବ ଉଦ୍ରେକ ହେବା ସ୍ୱାଭାବିକ । ପରନ୍ତୁ ଏ ଅଚେତନ ନଦୀମାନଙ୍କୁ ଦେଖି ମୁଁ ଏପରି ଅନୁଭବ କରୁଛି ଯେ, ଶ୍ରୀକୃଷ୍ଣଙ୍କର

ରୂପମାଧୁର୍ଯ୍ୟ ଓ ବେଣୁମାଧୁର୍ଯ୍ୟ କାରଣରୁ ସତେଯେପରି ଏମାନେ କାମବକାରରେ ପୀଡ଼ିତ ହୋଇ ପଡ଼ିଛନ୍ତି ।"

ଦ୍ୱିତୀୟଟି କହିଲା—"ସଖୀ ! ତୁ ଏହା କିପରି ଜାଣିଲୁ ?"

ସେ କହିଲା—"ଆରେ ପାଗଳି ! ତୁ ନାରୀ ହୋଇ ବି ଏ କଥା ବୁଝିପାରୁ ନାହୁଁ ? ଏମାନେ ନିଜ ନିଜର ତରଙ୍ଗରୂପୀ ଭୁଜରେ କମଳ କୁସୁମ ସମର୍ପଣ ପୂର୍ବକ ଦର୍ଶନ କରୁ ଅଛନ୍ତି । ମାନସିକ ଆଲିଙ୍ଗନ କାରଣରୁ ଅବସନ୍ନ ହୋଇ ପ୍ରାଣନାଥଙ୍କ ପାଦପଦ୍ମର ସ୍ପର୍ଶ ସେହି ତରଙ୍ଗରେ ହିଁ କରୁ ଅଛନ୍ତି । ସତେ ଯେପରି ସେମାନେ ତାଙ୍କ ଯୁଗଳ-ଚରଣ ପ୍ରକ୍ଷାଳନ କରୁ ଅଛନ୍ତି । ପ୍ରସ୍ଫୁଟିତ କମଳରୂପକ ଜନ୍ମିମେଷ ନେତ୍ରଦ୍ୱାରା ସେମାନେ ତାଙ୍କ ମୁଖ କମଳକୁ ଗୁହିଁ ରହିଛନ୍ତି । ତାଙ୍କର ଭ୍ରମର ରୂପ ନାଭିକୁ ସଲିଳ ଭାବରେ ଉପାସ୍ୟାନ୍ତରରେ ଦେଖିବାରେ ଲଗିଛନ୍ତି ।" ଏହିପ୍ରକାର ବର୍ଣ୍ଣନା କରୁ କରୁ ସେହି ସଖୀଟିର ଅବସ୍ଥା ମଧ୍ୟ ବିଚିତ୍ର ପ୍ରକାର ହୋଇଗଲା ଓ ସେ ଆଉ ଆଗକୁ କିଛି କହି ପାରିଲା ନାହିଁ ।

ସୂତ କହୁଛନ୍ତି—"ମୁନିଗଣ ! ଆପଣମାନେ ଧୈର୍ଯ୍ୟ ଧରି ଶୁଣନ୍ତୁ, ମୁଁ ଆଉ ଗୋଟିଏ ଏହି ମଧୁରାତି ମଧୁର ବେଣୁମାଧୁର୍ଯ୍ୟ ରସ ପ୍ରସଙ୍ଗ ବର୍ଣ୍ଣନା କରିବି । ଅଧିକ ସ୍ୱାଦିଷ୍ଟ ସେହି ରସ ଆପଣମାନଙ୍କୁ ଚଖାଇବି ।"

## ଛପ୍ପୟ

ସଖି ଇନ ବହୁଁଗନ ଲଖୋ ବନେ ମୌନୀ ବାବା ମନୁ ।
ଅପଲକ ନରଖତ ରହତ କରତ ସାଧକ ତ୍ରାଟକ ଜନୁ ।।
ବୈଠି ତରୁନକୀ ଡ଼ାର ସୁନେଂ ବଂଶୀ ଧୂନ ଝତ ପ୍ରୀତ ।
ହମ ଲଜାଯୁତ ରହେଂ ରୂପ ରସକୀ ପ୍ୟାସୀ ଅତ ।।
ବଡ଼ଭାଗୀ ସରିତା ସକଲ, ଭୁଜ ତରଙ୍ଗତୈଂ ସୁମନ ଧରି ।
ଆଲିଙ୍ଗନ ହିୟମେଂ କରେଂ, ରୂପମାଧୁରୀ ନୟନ ଭରି ।।



## ଅଚରକୁ ସଚର କରୁଥିବା ବେଣୁ

ହନ୍ତାୟମଦ୍ରିରବଲା ହରିଦାସବର୍ଯ୍ୟୋ—
ଯଦ୍ ରାମକୃଷ୍ଣଚରଣସ୍ପର୍ଶପ୍ରମୋଦଃ ।
ମାନଂ ତନୋତି ସହଗୋଗଣୟୋସ୍ତୟୋର୍ଯତ୍
ପାନୀୟସୂୟବସକନ୍ଦରକନ୍ଦମୂଲୈଃ ॥

(ଶ୍ରୀ ଭା ୧୦ସ୍କ. ୨୧ଅ, ୧୮ ଶ୍ଳୋ )

### ଛପ୍‌ପଯ୍ୟ

ଘୋର ଘାମମହଁ ଶ୍ୟାମ ନିରଖି ଉମଡ଼େ ଘୁମଡ଼େ ଘନ ।
ଫୁଲ ଝରିୟା ବରସାଇ କରେଂ ଛତରୀ ଛାୟା ତନ ॥
କୁଚ କୁଂକୁମକୀ କୀଚ ସନେ ପଗ ବନ ବହରେଂ ହରି ।
ଦୂବନିପୈ ଲଗି ଜାଇଁ ବନଚରନି ହୃଦୟ ଜାଇଁ ଭରି ॥
ହୃଦୟ, ମୂଖ କୁଚ କୁଂକୁମ ମଲେଂ, ପ୍ରେମ ବ୍ୟଥା ମେଟେଂ ଅଲୀଂ ।
ସ୍ପର୍ଶ ସବହେଂ ସୁରବଧୂ, ହମତେଂ ତୋ ଭୀଲନି ଭଲୀଂ ॥

ଯଦି ଶ୍ୟାମସୁନ୍ଦରଙ୍କ ସହିତ ଜୀବର ସମ୍ପର୍କ ଆପେ ଆପେ ସ୍ଥାପିତ ହୋଇଯାଏ କିମ୍ବା ପରସ୍ପର ମଧ୍ୟରେ ସମ୍ପର୍କ ଦୃଢ଼ ହୁଏ, ତାହାହେଲେ ତାହାର ଜୀବନ ସଫଳ ହୋଇପାରେ । ସାଧକଙ୍କର ଜୀବନ ସେତେବେଳେ ସଫଳ ହୁଏ, ଯେତେବେଳେ ତାଙ୍କୁ ନନ୍ଦଜନନ୍ଦନଙ୍କର ପୂର୍ଣ୍ଣପ୍ରେମ ଲାଭ ହୁଏ; ଅଥବା ତାଙ୍କର କୌଣସି ଈଶ୍ୱର-ପ୍ରେମୀଙ୍କର ସାନ୍ନିଧ୍ୟ ଲାଭ ହୁଏ । ମହାପୁରୁଷମାନଙ୍କର ଚରଣ ପାଦୁକାକୁ ଆମ୍ଭେମାନେ ଶିରରେ ଧାରଣ କରୁ ଓ ନେତ୍ର ସ୍ପର୍ଶ କରାଉ । ଭାଗ୍ୟବାନ୍ ବ୍ୟକ୍ତିଙ୍କ ଉପରେ ମହାପୁରୁଷମାନଙ୍କର ଚରଣ ଧୂଳି

ପଡ଼େ । ଯେଉଁ ବସ୍ତୁଗୁଡ଼ିକ ସହିତ ନନ୍ଦନନ୍ଦନଙ୍କର ସାକ୍ଷାତ୍ ସଂସର୍ଗ, ସେହିସବୁ ବସ୍ତୁ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଜଣେ ଭକ୍ତଥିଲେ, ସେ ଶ୍ରୀକୃଷ୍ଣ ପ୍ରେମରେ ବ୍ୟାକୁଳ ହୋଇ ବାରମ୍ବାର କ୍ରନ୍ଦନ କରିବାକୁ ଲାଗିଲେ । ସେ କାନ୍ଦି କାନ୍ଦି ବାରମ୍ବାର କହିଲେ—"ମୁଁ ବୃନ୍ଦାବନ ଯିବି । ତାଙ୍କୁ ଅନ୍ୟ ଜଣେ କହିଲା—"ଏବେ ବୃନ୍ଦାବନରେ ଆଉ କ'ଣ ଅଛି ? ନନ୍ଦନନ୍ଦନ ତ ତାଙ୍କର ପ୍ରକଟ ଲୀଳା ସମ୍ବରଣ କରି ଅଛନ୍ତି । ଏବେ ସେଠାରେ ତ ଶ୍ରୀକୃଷ୍ଣଙ୍କର ପ୍ରତ୍ୟକ୍ଷ ଦର୍ଶନ ହେବା ଅତ୍ୟନ୍ତ କଷ୍ଟକର ବ୍ୟାପାର । ସେହି ଭକ୍ତଟି କାନ୍ଦି କାନ୍ଦି କହିଲା—"ଭଗବାନଙ୍କର ଲୀଳା ତ ନିତ୍ୟ, ସେ ନିରନ୍ତର ସର୍ବତ୍ର ବିରାଜିତ । ଯଦି ତ ମୋର ତାଙ୍କ ସହିତ ସାକ୍ଷାତ୍ ଦର୍ଶନ ନ ହୁଏ, ତେବେ ସେହି ଗୋବର୍ଦ୍ଧନ ପର୍ବତକୁ ତ ମୁଁ ଦର୍ଶନ କରିବି, ଯେଉଁ ପର୍ବତ ଉପରେ କି ସେ ସ୍ୱୟଂ ବୁଲି ବୁଲି ଗାଈ ଚରାଉଥିଲେ । ସେହି କାଳିନ୍ଦୀ ହ୍ରଦକୁ ତ ମୁଁ ଦର୍ଶନ କରିବି, ଯେଉଁ ହ୍ରଦରେ କି ସେ ସ୍ନାନ କରୁଥିଲେ, ଗୋରୁମାନଙ୍କୁ ଜଳପାନ କରାଉ ଥିଲେ । ବୃନ୍ଦାବନର ସେହି ପରମ ପବିତ୍ର ଭୂମିର ତ ଦର୍ଶନ ହେବ, ଯେଉଁ ଭୂମିରେ ଅଚ୍ୟୁତ ନିଜର ଅରୁଣଚରଣ କମଳ ସର୍ବଦା ବୁଲାଉ କରୁଥିଲେ । ମୋ ପକ୍ଷେ ଏତିକ ଦର୍ଶନ କରିବାର ସୁଯୋଗ ମିଳିବା କ'ଣ ଯଥେଷ୍ଟ ନୁହେଁ ? ଏତିକ ସୌଭାଗ୍ୟ ତ ସମସ୍ତଙ୍କୁ ପ୍ରାପ୍ତ ହୁଏ ନାହିଁ ।"

ସୂତ କହୁଛନ୍ତି—"ମୁନିଗଣ ! ସେହି ମହାଭାଗ୍ୟବତୀ ଗୋପାଙ୍ଗନାଙ୍କର ଅନୁରାଗ ସମ୍ବନ୍ଧରେ ବର୍ଣ୍ଣନା କରିବା ମୋ' ପକ୍ଷେ ସମ୍ଭବ ନୁହେଁ । ଏମାନେ ଭଗବାନଙ୍କର ମୁରଲୀ ଧ୍ୱନି ଶ୍ରବଣ କରି ଏପରି ତନ୍ମୟ ହୋଇଯାଇଥିଲେ ଯେ, କିଛି କହିବାକୁ ଆରମ୍ଭ କଲାମାତ୍ରେ ପ୍ରିୟତମଙ୍କର ରୂପମାଧୁରୀ ସ୍ମରଣ ହେବାମାତ୍ରେ ଅସ୍ୱାଭାବିକ ହୋଇ ଯାଉଥିଲେ । ପ୍ରତ୍ୟେକଙ୍କର ଲକ୍ଷ୍ୟ ଥିଲା ସେହି ଭାବମୟୀ ପ୍ରଧାନାଙ୍କୁ କିପରି ସୁଖ ପ୍ରଦାନ କରିବେ । ସେଥିପାଇଁ ପ୍ରତ୍ୟେକେ ତାଙ୍କୁ ଶୁଣାଇ ଶୁଣାଇ କହୁଥିଲେ ଓ କହୁ କହୁ ସମସ୍ତେ ଅନୁରାଗରସ ସାଗରରେ ନିମଜ୍ଜିତ ହୋଇ ଯାଉଥିଲେ । ସେହିଠାରେ ସେମାନେ ରହିଯାଉଥିଲେ । ଏହାପରେ ଅନ୍ୟଜଣେ କିଛି କହିବାକୁ ପ୍ରସ୍ତୁତ ହେଉଥିଲା । ପ୍ରଥମଟି ଆତ୍ମବିଭୋର ହୋଇଯିବାକ୍ଷଣି ଅନ୍ୟ ସଖୀଟି କହୁଥିଲା—"ସଖିଗଣ ! ଦେଖ, ନଭୋମଣ୍ଡଳରେ କଳାମେଘ କାହିଁକି ଗର୍ଜନ କଲାଣି ?"

ଅନ୍ୟ ଜଣେ କହୁଥିଲା—"ନା ସଖି ! ଆମ୍ଭେମାନେ ଏହାର କାରଣ କ'ଣ ଜାଣିନାହୁଁ, ତୁ କହ ।"

ଏହାଶୁଣି ସେ କହିବାକୁ ଆରମ୍ଭ କଲା—"ଏ ମେଘ ଦେଖିଲା ଯେ, ଗୋପବାଳକ ଓ ବଳରାମଙ୍କ ସହିତ ବନମାଳୀ ଖାଲି ପାଦରେ ବନ ମଧ୍ୟରେ ଗୋରୁଙ୍କ ପଛେ ପଛେ ଭ୍ରମଣ କରୁଅଛନ୍ତି । ଶରତ୍‌କାଳ, ଶରଦ୍‌ଋତୁରେ ଓ କାର୍ତ୍ତିକରେ ସୂର୍ଯ୍ୟକିରଣ ଏତେ

ଅଧିକ ତପ୍ତ ହୁଏ ଯେ, ସେଥିଯୋଗୁଁ ହରିଣମାନେ କଳା ପଡ଼ିଯାଆନ୍ତି । ମେଘ ବର୍ଷିଲା— "ଶ୍ୟାମସୁନ୍ଦର ତ ନଗ୍ନ ପାଦରେ ଭ୍ରମଣ କରୁଛନ୍ତି, ତା' ସହିତ ନିରନ୍ତର ବଂଶୀ ମଧ୍ୟ ବଜାଉଛନ୍ତି । ବଂଶୀ ବଜାଉ ଥିବାରୁ ତାଙ୍କ ମସ୍ତକରେ ସ୍ୱେଦବିନ୍ଦୁ ଝଲସି ଉଠୁଛି । ଏକେତ ଝାଣଖରା, ଦ୍ୱିତୀୟରେ ଏତେ ଶ୍ରମ । ଶ୍ରୀକୃଷ୍ଣ ଆମର ସଜାତୀୟ ଓ ଏକବର୍ଣ୍ଣର । ଆମ୍ଭେମାନେ ବି ଘନଶ୍ୟାମ ଓ ନନ୍ଦନନ୍ଦନ ବି ଘନଶ୍ୟାମ । ଆମ୍ଭେମାନେ ଥାଉ ଥାଉ ଅମ୍ଭମାନଙ୍କର ସଜାତୀୟଙ୍କୁ ଏତେ କଷ୍ଟ ହେବ ? ଧିକ୍ ଆମର ଜୀବନ ।" ଏଥିପାଇଁ ଏମାନେ ଚକ୍ରାର କରି ନିଜ ନିଜର ଶରୀରର ଛାୟାରେ ଶ୍ୟାମସୁନ୍ଦରଙ୍କୁ ଢାଙ୍କି ତାଙ୍କ ପଛେ ପଛେ ଧାଇଁଛନ୍ତି । ସତେ ଯେପରି ସେମାନେ ନିଜ ନିଜ ଶରୀରର ଛାୟାରୂପୀ ଛତ୍ର ଆଢୁଆଳରେ ଶ୍ୟାମସୁନ୍ଦରଙ୍କୁ ସୂର୍ଯ୍ୟତେଜ ପ୍ରକୋପରୁ ରକ୍ଷା କରୁଛନ୍ତି । ଊର୍ଦ୍ଧ୍ୱ ଦେଶରୁ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁ ପୁଷ୍ପରାଜି ଝରିଲା ପରି ବୃଷ୍ଟି ହେଉଥାଏ । ଧନ୍ୟ ତାଙ୍କର ଜୀବନ, ଯେ କି ଜଳରୂପରେ ନିଜର ଶରୀରକୁ ଶ୍ରୀକୃଷ୍ଣଙ୍କର କିଙ୍କରରୂପେ ସଦୁପଯୋଗ କରୁଅଛନ୍ତି । ଆମେ ହତଭାଗିନୀଗଣ ଏଭଳି ଜୀବନ ଧାରଣ କରିଛୁ ଯେ, ଶ୍ୟାମସୁନ୍ଦରଙ୍କର କୌଣସି କାର୍ଯ୍ୟରେ ନିଜ ନିଜକୁ ବିନିଯୋଗ କରିପାରୁ ନାହୁଁ । ତାଙ୍କ ମୁରଲୀ ଧନ୍ୟ, ଯେ କି ମଦନମୋହନଙ୍କର ମନୋରଞ୍ଜନ କରୁଅଛି । ଏହା କହୁ କହୁ ସେହି ସଖୀଟିର କଣ୍ଠରୁଦ୍ଧ ହୋଇଗଲା । ଶରୀର ରୋମାଞ୍ଚିତ ହୋଇଗଲା ଓ ନେତ୍ର ଅଶ୍ରୁପୂର୍ଣ୍ଣ ହୋଇଗଲା ।"

ଏହାପରେ ଅନ୍ୟଜଣେ କହିଲା—"ସଖିଗଣ ! ଆମ୍ଭେମାନେ ତ ଏହି ବନବିହାରିଣୀ ବନ୍ଦବାସିନୀ ଭିଲ୍ଲଯୁବତୀମାନଙ୍କର ସୌଭାଗ୍ୟକୁ ପ୍ରଶଂସା କରିବାର କଥା । ଏମାନଙ୍କର ସୌଭାଗ୍ୟ ସନ୍ଦର୍ଶନରେ ତ ସୁରସୁନ୍ଦରୀଗଣ ବିସ୍ମିତ ହୋଇଯାଆନ୍ତି ।"

ଅନ୍ୟ ଜଣେ ପଚାରିଲା—"ସଖି ! ଏହି ଭିଲ୍ ଯୁବତୀଗଣ ଏପରି କେଉଁ ନିଧିପ୍ରାପ୍ତ ହୋଇଛନ୍ତି ଯେ ତୁ ସେମାନଙ୍କର ଭାଗ୍ୟକୁ ଏତେ ପ୍ରଶଂସା କରୁଛୁ ?"

ସେ ସଖୀଟି କହିଲା—"ସଖି ! ତାଙ୍କ ଭାଗ୍ୟ କଥା ତୁ ମୋତେ ଆଉ ପଚାର ନା । ଆମ୍ଭମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ରୀଜୀ ଭାବବିଭୋର ହୋଇ ପଡ଼ିଛନ୍ତି । ତାଙ୍କ ହୃଦୟରେ ଯେଉଁ ଗାଢ଼ କୁଙ୍କୁମ ବିନ୍ଦୁ ସୁଶୋଭିତ ତା' ଉପରେ ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦ ପଡ଼ିଥାଏ । ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦ ସେହିପରି ନୂତନ ନଳିନସ୍ଥ ସଦୃଶ ଅରୁଣବର୍ଣ୍ଣ ବିଶିଷ୍ଟ । ପୁନଶ୍ଚ ତାହା କୁଙ୍କୁମରାଗରେ ଅତ୍ୟଧିକ ରଞ୍ଜିତ ହୋଇଯାଏ । ସେହି କୁଙ୍କୁମବିନ୍ଦୁ ଆଡ଼େ ମନ ଆକର୍ଷିତ ହୁଏ, ମନରେ ତାହା ନିମଜ୍ଜିତ ହୋଇଯାଏ, ଜଡ଼ିତ ହୋଇଯାଏ । ସେହି ଚରଣାବିନ୍ଦରେ ସେ ବୃନ୍ଦାବନର କୋମଳ ସବୁଜ ଘାସ ଉପରେ ବିହାର କରନ୍ତି । ବିହାର କରୁ କରୁ ସେହି କୁଙ୍କୁମ ସ୍ୱତଃ ଘାସ ପତ୍ରରେ ଲାଗିଯାଏ । ସେହି ଦ୍ରବ୍ୟଗନ୍ଧକୁ ଅଘ୍ରାଣ କରି ସେହି ପୁଲିନ୍ଦ ଜାତିର ଜଙ୍ଗଲୀ ସ୍ତ୍ରୀ ଲୋକମାନେ କାମଜ୍ୱାଳାରେ ଅଧୀର

ହୋଇ ପଡ଼ନ୍ତି । ଅତ୍ୟନ୍ତ ଉଲ୍ଲାସର ସହିତ ସେହି କୁଙ୍କୁମକୁ ସେମାନେ ?? ଜଳରେ ଭିଜାଇ ମୁଖରେ ଲଗାନ୍ତି ଓ ବାରମ୍ବାର ବକ୍ଷସ୍ଥଳରେ ଲଗାନ୍ତି । ଏହିପରି ଭାବରେ ସେମାନେ ନିଜ ନିଜର କାମବ୍ୟଥାକୁ ଶାନ୍ତ କରିଥାଆନ୍ତି । ସେହି କୁଙ୍କୁମରେ ଯୁଗଳ ପ୍ରାଣର ଅନନ୍ତ ସ୍ମୃତି ବିଜଡ଼ିତ । ପ୍ରଥମତଃ ତାହା ଶ୍ରୀଜୀଙ୍କର କାମ ସନ୍ତପ୍ତ ହୃଦୟରେ ଲେପିତ ହୋଇଥାଏ ଓ ଦ୍ୱିତୀୟରେ ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦରେ ଲଗାଯାଇଥାଏ । ତାହା ଦେହରେ ଲଗାଇବାକ୍ଷଣି ସେମାନେ ବ୍ରହ୍ମାନନ୍ଦସୁଖ ଅନୁଭବ କରନ୍ତି ।” କୁଚକୁଙ୍କୁମ ଓ ଶ୍ୟାମସୁନ୍ଦରଙ୍କର ଅରୁଣକୋମଳ ଚରଣର ସ୍ମୃତି ଜାଗରିତ ହେବାକ୍ଷଣି ସେହି ସଖୀଟି ବାହ୍ୟଜ୍ଞାନଶୂନ୍ୟ ହୋଇଗଲି ।

ତାହାପରେ ଅନ୍ୟଜଣେ ସଖି କହିଲି—“ସଖିଗଣ ! ଶ୍ୟାମସୁନ୍ଦରଙ୍କଠାରେ ଯାହାଙ୍କର କୌଣସି ପ୍ରକାରେ ଟିକିଏ ସମ୍ବନ୍ଧ ହୋଇଯାଏ, ସେ ଧନ୍ୟ ହୋଇଯାଏ; କିନ୍ତୁ ଆମ୍ଭେମାନେ ତ ଏହି ଗିରିରାଜ ଗୋବର୍ଦ୍ଧନ ପର୍ବତକୁ ସବୁଠାରୁ ଅଧିକ ଧନ୍ୟ ବୋଲି ମାନୁଥାଉଁ, ଏହାର ସୌଭାଗ୍ୟ ଭଳି ସୌଭାଗ୍ୟ ଅନ୍ୟ କେହି ପ୍ରାପ୍ତ ହୋଇପାରି ନାହାନ୍ତି । ନାରଦ ସନକାଦି ଆଦି ଯେତେ ଯେତେ ଋଷି ଅଛନ୍ତି, ସେମାନେ ତ ହରିଙ୍କର ଦାସ ଅଟନ୍ତି; କିନ୍ତୁ ଏହି ପର୍ବତ ତ ହରିଦାସବର୍ଯ୍ୟ (ହରିଦାସଙ୍କ ମଧ୍ୟରେ ଶ୍ରେଷ୍ଠ) ।

ଅନ୍ୟ ଜଣେ ସଖି ପଚ୍ଚାରିଲି—“ସଖି ! ଏ ପର୍ବତର ଏପରି କି ବିଶେଷତା ଅଛି ? ଏ କେଉଁ ପର୍ବତରେ ଗଣା ? ଏଇଟା ତ ଗୋଟାଏ ଗ୍ରେଡ଼ିଆ ପାହାଡ଼ । ଏହାର ମହିମା କାହିଁକି ତୁ ଗାନ କରୁଛୁ ?”

ଏହାଶୁଣି ସେହି ସଖୀଟି କହିଲି—“ଭଜନି ! ଯଦିଚ ଏହି ପର୍ବତକୁ ସମସ୍ତେ ଜଡ଼ ବୋଲି କହନ୍ତି, ତଥାପି ମୋ ମତରେ ଏହା ଯଥାର୍ଥ ଚୈତନ୍ୟ ପ୍ରାପ୍ତ ହୋଇଅଛି । ଏହାର ପ୍ରତି ଶିଳାରେ ବଳରାମଙ୍କ ସହିତ ବନରେ ଗୋଚ୍ଚାରଣ କରି ବିଚରଣ କରୁଥିବା ଶ୍ୟାମସୁନ୍ଦରଙ୍କର ପାଦପଦ୍ମ ପଡ଼ିଅଛି । ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦ ସ୍ପର୍ଶରେ ଏହା ଧନ୍ୟ ହୋଇଅଛି । ପୁନଶ୍ଚ ଘରକୁ ଯଦି କୌଣସି ଯୋଗ୍ୟ ଅତିଥି ଆସନ୍ତି, ତାହାହେଲେ ଗୃହୀଙ୍କ ଶରୀର ରୋମାଞ୍ଚିତ ହୋଇଥାଏ । ସେହିପରି ଏ ପର୍ବତର ଶରୀର ଶ୍ରୀକୃଷ୍ଣଙ୍କ ପାଦସ୍ପର୍ଶରେ, ତାଙ୍କ ଦର୍ଶନରେ ରୋମାଞ୍ଚିତ ହୋଇଯାଉଥିଲା । ସେ ଭଗବାନଙ୍କ ସଖାମାନଙ୍କର ଗୋରୁମାନଙ୍କ ସ୍ୱାଗତ ସତ୍କାର କରୁଥିଲା । ଗୋରୁମାନଙ୍କୁ ମଧୁର କନ୍ଦମୂଳ ଖାଇବାକୁ ଦେଉଥିଲା । ପ୍ରତ୍ୟେକଙ୍କୁ ପାନ କରିବା ପାଇଁ ସ୍ୱଚ୍ଛ ଝରଣାଜଳ ପ୍ରଦାନ କରୁଥିଲା । ବିଶ୍ରାମ ନେବା ପାଇଁ ନିଜର ଗୁହା ପ୍ରଦାନ କରୁଥିଲା । ଅତିଥିଙ୍କର ସତ୍କାର ବିଶ୍ରାମ ପାଇଁ ସ୍ଥାନ, ଭୋଜନ ସାମଗ୍ରୀ ଓ ଜଳ ଏକାନ୍ତ ଆବଶ୍ୟକ । ତେଣୁ ସେ ନିଜର ସର୍ବସ୍ୱ ଅତିଥିଙ୍କୁ ସମର୍ପଣ କରି ଦେଉଥିଲା । ତେଣୁ ତାଠାରୁ ବଳି ସୌଭାଗ୍ୟଶାଳୀ ଆଉ କିଏ ହୋଇ ପାରନ୍ତା ?”

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଏ ମହାଭାଗ ଗୋବର୍ଦ୍ଧନ ପର୍ବତ କିଏ ଓ ସେ କାହିଁକି ଏତେ ସୌଭାଗ୍ୟଶାଳୀ ହୋଇ ପାରିଛି ? ଆମେ ଦେଖୁଛୁ, ପ୍ରତ୍ୟେକେ ଶ୍ରୀକୃଷ୍ଣଙ୍କନରେ ତାଙ୍କୁ ପୂଜା କରୁ ଅଛନ୍ତି । ତାହାର ଶିଳାକୁ ଶାଳଗ୍ରାମ ରୂପେ ପୂଜା କରୁଅଛନ୍ତି । ଶାଳଗ୍ରାମଶିଳା ଓ ଗୋବର୍ଦ୍ଧନର ଶିଳା ମଧ୍ୟରେ କୌଣସି ଭେଦବୁଦ୍ଧି ରଖୁ ନାହାନ୍ତି । ଲକ୍ଷ ଲକ୍ଷ ନରନାରୀ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କୁ ପରିକ୍ରମା କରୁଛନ୍ତି । ଏହାଙ୍କୁ ଶ୍ରୀକୃଷ୍ଣଙ୍କ ତାଦାତ୍ମ୍ୟ ଭାବ କିପରି ପ୍ରାପ୍ତ ହେଲା ? କୃପାକରି ତାହା ଆମ୍ଭମାନଙ୍କୁ କହନ୍ତୁ ।"

ଏହାଶୁଣି ସୂତ କହିଲେ—"ଭଗବନ୍ ! ନିତ୍ୟଗୋଲୋକବିହାରୀ ଶ୍ରୀକୃଷ୍ଣଙ୍କ ସଂସର୍ଗରେ ଯାହା କିଛି ଆସେ, ସେ ସମସ୍ତ ଚିନ୍ମୟ । ଏ କ୍ଷେତ୍ରରେ ଜଡ଼ତାର ପ୍ରଶ୍ନ ନାହିଁ । ଏଠାରେ ଯେପରି ବୃନ୍ଦାବନ, ଗୋଲୋକରେ ମଧ୍ୟ ସେହିପରି ଦିବ୍ୟ ବୃନ୍ଦାବନ । ଏଠାଭଳି ସେଠାରେ ମଧ୍ୟ କାଳିନ୍ଦୀ ହ୍ରଦ ବିଦ୍ୟମାନ, ଗିରିରାଜ ଗୋବର୍ଦ୍ଧନ ବିଦ୍ୟମାନ ଯେତେବେଳେ ଅନନ୍ତକୋଟି ବ୍ରହ୍ମାଣ୍ଡ କର୍ତ୍ତା ଶ୍ରୀକୃଷ୍ଣଚନ୍ଦ୍ର ଗୋଲୋକରୁ ନିଜର ସମସ୍ତ ପରିବାରଙ୍କ ସହିତ ଧରାବକ୍ଷରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ଏହି ଗୋବର୍ଦ୍ଧନ ପର୍ବତ ମଧ୍ୟ ଆସିଥାଏ । ସେ ଭଗବାନଙ୍କର ନିତ୍ୟସହଚର । ତାକୁ ଛାଡ଼ି ଭଗବାନ ରହି ପାରନ୍ତି ନାହିଁ । ଭଗବାନଙ୍କ ଅବତାର ସମ୍ବନ୍ଧରେ ଯେପରି କୁହାଯାଇଛି—ସ୍ୱାୟଂଭୁବ ମନୁ ଓ ଶତରୂପା ତପସ୍ୟା କରି ବରପ୍ରାପ୍ତ ହୋଇଥିଲେ ଯେ ଭଗବାନ ତାଙ୍କ ପୁତ୍ରରୂପେ ଜନ୍ମ ହେବେ । ଦ୍ରୋଣ ଓ ଧରା ବର ମାଗିଥିଲେ ଯେ, ସର୍ବେଶ୍ୱର ଆମ୍ଭର ପୁତ୍ର ହୁଅନ୍ତୁ । ସେହି ଅନୁସାରେ ଏ ପର୍ବତ ବ୍ରଜରେ ଆବିର୍ଭାବ ହେବାର କାରଣ ମୁଁ କହୁଅଛି । ଏ ସବୁ କାରଣ ଗୌଣ, ଲୀଳା ବିସ୍ତାର ପାଇଁ ତଥା ସଙ୍ଗତି ମିଳାଇବା ପାଇଁ ଏହା ଉଦ୍ଦିଷ୍ଟ । ବାସ୍ତବ କଥା ହେଲା—ଏ ସମସ୍ତ ଘଟଣା ଲୀଳାଧାରୀଙ୍କର ଲୀଳା ଅନ୍ତର୍ଗତ । ଏହା ସେହି ଗୋଲୋକ-ବିହାରୀଙ୍କର ଖେଳ । ଯେତେବେଳେ ସେ ନିଜର ଶ୍ରୁତିମଧୁର ଲୀଳାଗୁଡ଼ିକୁ ଭକ୍ତମାନଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ଧରାବକ୍ଷରେ ପ୍ରକଟ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ଏ ସମସ୍ତ ଉପକରଣ ପ୍ରସ୍ତୁତ କରିଦଅନ୍ତି । ସେହି ହିଁ ସବୁକିଛି କରନ୍ତି ଓ କରାନ୍ତି ।

ହଁ, ଏବେ ଗୋବର୍ଦ୍ଧନ ପର୍ବତ ବ୍ରଜରେ ଅବତୀର୍ଣ୍ଣ ହେବା କଥା ଶୁଣନ୍ତୁ । ବିନ୍ଧ୍ୟ ପର୍ବତ ଅନେକ ଦିନ ପର୍ଯ୍ୟନ୍ତ ତପସ୍ୟା କରି ବର ପ୍ରାର୍ଥୀ ହୋଇଥିଲା ଯେ—"ମୋତେ ଗୋଟିଏ ପରମ ଭଗବଦ୍‌ଭକ୍ତ ପୁତ୍ର ପ୍ରାପ୍ତ ହେଉ, ଯେ କି ଭକ୍ତିରେ ଭଗବାନଙ୍କ ସଦୃଶ ହୋଇଥିବ ଓ ଭଗବାନ ତାକୁ ପ୍ରାଣଠାରୁ ବଳି ଭଲ ପାଉଥିବେ । ଏବେ ତ ସେ ପର୍ବତ, ପର୍ବତର ପୁତ୍ର ପର୍ବତ ହିଁ ହୋଇପାରେ । ଶ୍ରୀକୃଷ୍ଣଙ୍କର ଗୋବର୍ଦ୍ଧନ ପର୍ବତଠାରୁ ବଳି ଅନ୍ୟ କୌଣସି ପର୍ବତ ଏତେ ପ୍ରିୟ ନୁହନ୍ତି । ତେଣୁ ଭକ୍ତ ବଶ ହୋଇ ଭଗବାନ ବିନ୍ଧ୍ୟ ପର୍ବତକୁ ବରଦେଲେ—"ତୁମର ଗୋବର୍ଦ୍ଧନ ନାମକ ଏକ ପୁତ୍ର ହେବ ।" ଭଗବାନ

ମଧ୍ୟ ବ୍ରଜରେ ପ୍ରକଟଲୀଳା କରିବା ପାଇଁ ମନସ୍ଥ କରିଥିଲେ । ଲୀଳାର ପ୍ରଧାନ ଉପକରଣ-ମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ ଗିରିରାଜ ଗୋବର୍ଦ୍ଧନଙ୍କୁ ଗ୍ରହଣ କରିଥିଲେ । ଗୋବର୍ଦ୍ଧନ ନ ଥିଲେ ଗୋଚାରଣ ଲୀଳା ସାଙ୍ଗୋପାଙ୍ଗ ହୋଇ ପାରି ନ ଥାନ୍ତା । ତେଣୁ ଗୋବର୍ଦ୍ଧନ ପର୍ବତରେ ଅବତରିତ ହେବା ତାଙ୍କ ପାଇଁ ଅତି ଆବଶ୍ୟକ ଥିଲା । ତେଣୁ ଏହି ଗୋବର୍ଦ୍ଧନ ବିନ୍ଧ୍ୟ ପର୍ବତର ପୁତ୍ରରୂପରେ ପ୍ରକଟ ହୋଇଥିଲେ ।

ଭଗବାନଙ୍କର ବ୍ରଜରେ ଲୀଳା କରିବାର ଥିଲା; କିନ୍ତୁ ଗୋବର୍ଦ୍ଧନ ପର୍ବତ ପ୍ରକଟ ହେଲେ ବିନ୍ଧ୍ୟ ପ୍ରଦେଶରେ । ଏବେ ଲୀଳା ରଚନା ପାଇଁ ତାଙ୍କୁ ଅସୁବିଧା ହେଲା । ସେ ତ ସ୍ୱୟଂ ସମସ୍ତ କାର୍ଯ୍ୟର କାରଣ । ଯେତେବେଳେ ତାଙ୍କର ଯାହା କରିବାକୁ ଇଚ୍ଛା ହୁଏ ସେ ତାହା କରିପାରନ୍ତି ଓ ଲୋକଙ୍କର ବୁଦ୍ଧି ମଧ୍ୟ ସେହି ଅନୁସାରେ କରାଇ ଥାଆନ୍ତି । କାଶୀନଗରୀରେ ସେତେବେଳେ ଜଣେ ଅତି ଶାନ୍ତ ଦାନ୍ତ, ତେଜସ୍ୱୀ ବ୍ରାହ୍ମଣ ଥିଲେ । ତାଙ୍କର ତପସ୍ୟା ଅତ୍ୟନ୍ତ କଠୋର ଥିଲା ସେ ବାଳବ୍ରହ୍ମଚାରୀ ଥିଲେ ଓ ଭଗବାନ ନନ୍ଦନନ୍ଦନଙ୍କର ଅନନ୍ୟ ଉପାସକ ଥିଲେ । ଦିନେ ତାଙ୍କ ମନରେ ସଙ୍କଳ୍ପ ଜାତ ହେଲା ଯେ, ମୁଁ ଏହି କାଶୀନଗରୀକୁ ଏକ ପବିତ୍ର ପର୍ବତ ଆଣିବି, ଯେଉଁଥିରେ କି ବସି ସୁଖରେ ତପସ୍ୟା କରିବି । ସେଥିପାଇଁ ସେ ଭଗବାନଙ୍କୁ ଏକାଗ୍ରଚିତ୍ତରେ ଆରାଧନା କଲେ । ତାଙ୍କୁ ଶୂନ୍ୟବାଣୀ ହେଲା ଯେ, ତୁମେ ବିନ୍ଧ୍ୟ ପର୍ବତକୁ ଯାଅ । ଏହାଶୁଣି ତପସ୍ୱୀ ବ୍ରାହ୍ମଣ ବିନ୍ଧ୍ୟ ପର୍ବତରେ ଯାଇ ପହଞ୍ଚିଲେ ଓ ସେଠାରେ ତାଙ୍କୁ ପ୍ରାର୍ଥନା କଲେ । ଏବେ ବିନ୍ଧ୍ୟ ପର୍ବତ ବଡ଼ ଧର୍ମସଙ୍କଟରେ ପଡ଼ିଲେ । ସେ ଗୋବର୍ଦ୍ଧନଙ୍କୁ ପ୍ରାଣଠାରୁ ଅଧିକ ସ୍ନେହ କରୁଥିଲେ । ପୁନଶ୍ଚ ଅତିଥି ସତ୍କାର କରିବା ମଧ୍ୟ ତାଙ୍କର ବ୍ରତ ଥିଲା । ସେ ଭାବିଲେ ଏତେ ଯୋଗ୍ୟ ଅତିଥି ଯଦି ମୋ' ଦ୍ୱାରଦେଶରୁ ନିରାଶ ହୋଇ ଫେରିଯାଆନ୍ତି, ତାହାହେଲେ ମୋ' ଜୀବନ ଶତଧିକ୍; କିନ୍ତୁ ସେ ନିଜ ପ୍ରାଣଠାରୁ ଅଧିକ ସ୍ନେହ କରୁଥିବା ପୁତ୍ରକୁ କିପରି ଅବା ପ୍ରଦାନ କରିପାରନ୍ତେ ? ଏହି ଧର୍ମସଙ୍କଟରେ ପଡ଼ି ବିନ୍ଧ୍ୟ ପର୍ବତ ପ୍ରେମବିହ୍ୱଳ ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ତାଙ୍କ ଅଶ୍ରୁ ଝରଣା ରୂପରେ ନିମ୍ନଦେଶକୁ ବହି ଚାଲିଲା ।

ଏହା ଦେଖି ଗୋବର୍ଦ୍ଧନ ନିଜ ପିତାଙ୍କୁ ସାନ୍ତ୍ୱନା ଦେଇ କହିଲେ—"ପିତା ! ଆପଣ ଦୁଃଖ କରନ୍ତୁ ନାହିଁ । ଆପଣଙ୍କ ପରି ମହାନ୍ ବ୍ୟକ୍ତି ପକ୍ଷେ ଏତେ ଅଧୈର୍ଯ୍ୟ ହେବା ଶୋଭନୀୟ ନୁହେଁ । ସେବାଦ୍ୱାରା ହିଁ ଜୀବନ ସାର୍ଥକ ହୁଏ । ପଞ୍ଚଭୂତରେ ଗଢ଼ା ଏହି ନଶ୍ୱର ଶରୀରଧାରଣ କରି ଯଦି ସାଧୁ ସନ୍ଥ ଓ ଅତିଥିଙ୍କର ସେବା କରି ନ ଯାଏ, ତାହାହେଲେ ଏ ଜୀବନ ବ୍ୟର୍ଥ । ଅତିଥି ସତ୍କାର ପାଇଁ କପୋତ ନିଜ ଶିର ଦାନ କରିଥିଲା । ରାଜା ବିରୋଚନ ବ୍ରାହ୍ମଣରୂପରେ ଆସିଥିବା ଦେବଗଣଙ୍କୁ ଅତିଥିରୂପେ ସତ୍କାର କରି ନିଜର ପ୍ରାଣବଳି ଦେଇଥିଲେ । ଅତିଥି ସେବାରେ ଧନ, ଜନ, ସ୍ତ୍ରୀ, ପୁତ୍ର ଏପରି କି

ନିଜର ପ୍ରାଣ ମଧ୍ୟ ଯଦି ବଳି ଦେବାକୁ ପଡ଼େ, ତେବେ ବୁଦ୍ଧିମାନ ବ୍ୟକ୍ତି ଏହା ଶୀଘ୍ର କରିବା ଉଚିତ୍ । ଆପଣ ମୋତେ ପ୍ରଦାନ କରି ନିଜର ଧର୍ମ ଓ ସତ୍ୟବ୍ରତ ରକ୍ଷା କରନ୍ତୁ ।"

ଏହାଶୁଣି ବିନ୍ଧ୍ୟ ପର୍ବତ ଧୈର୍ଯ୍ୟଧରି ଗୋବର୍ଦ୍ଧନଙ୍କୁ ପ୍ରଦାନ କରିବା ପାଇଁ ସ୍ୱୀକାର କଲେ । ସେ ନମ୍ରତାର ସହିତ ବ୍ରାହ୍ମଣଙ୍କୁ କହିଲେ—"ଭଗବନ୍ ! ମୁଁ ମୋର ପ୍ରାଣଠାରୁ ବଳି ଅଧିକ ସ୍ନେହ କରୁଥିବା ପରମ ପବିତ୍ର ପ୍ରଭୁପ୍ରେମୀ ପୁତ୍ରକୁ ପ୍ରସନ୍ନତା ପୂର୍ବକ ପ୍ରଦାନ କରୁଅଛି ! ଆପଣ ତାହା ଗ୍ରହଣ କରି ସଙ୍ଗରେ ନେଇଯାଆନ୍ତୁ ।"

ଗୋବର୍ଦ୍ଧନ ପର୍ବତ ଏକଥା ଶୁଣି କହିଲେ—"ବ୍ରହ୍ମନ୍ ! ମୁଁ ଆପଣଙ୍କ ସଙ୍ଗରେ ତ ଯିବି; କିନ୍ତୁ ଆପଣଙ୍କୁ ଗୋଟିଏ ପ୍ରତିଜ୍ଞା କରିବାକୁ ହେବ ।"

ବ୍ରାହ୍ମଣ ପଚାରିଲେ—"ତାହା କ'ଣ ?"

ଗୋବର୍ଦ୍ଧନ କହିଲେ—"ଆପଣଙ୍କୁ ଏହା ପ୍ରତିଜ୍ଞା କରିବାକୁ ହେବ ଯେ, ଆପଣ ପଥ ମଧ୍ୟରେ ମୋତେ କୌଣସିଠାରେ ରଖିବେ ନାହିଁ । ଯେଉଁଠାରେ ରଖିଦେବ, ମୁଁ ସେଠାରୁ ଆଉ ଉଠିବି ନାହିଁ ।" ବ୍ରାହ୍ମଣଙ୍କର ତ ତପସ୍ୟାର ଅଭିମାନ ଥିଲା, ତେଣୁ ସେ କହିଲେ—"ତେବେ ଠିକ୍ ଅଛି, ମୁଁ ତୁମକୁ ପଥ ମଧ୍ୟରେ କେଉଁଠାରେ ହେଲେ ରଖିବି ନାହିଁ ।"

ବ୍ରାହ୍ମଣ ପ୍ରତିଜ୍ଞାବଦ୍ଧ ହେବାରୁ ବିନ୍ଧ୍ୟ ପର୍ବତ କାନ୍ଦି କାନ୍ଦି ନିଜର ପ୍ରାଣଠାରୁ ବଳି ସ୍ନେହ କରୁଥିବା ପୁତ୍ରକୁ ବ୍ରାହ୍ମଣଙ୍କ ପାଇଁ ଦେଇଦେଲେ । ଗୋବର୍ଦ୍ଧନ ମଧ୍ୟ ଫୁଲପରି ହାଲୁକା ହୋଇଗଲେ । ବ୍ରାହ୍ମଣ ତାଙ୍କୁ ନେଇ କାଶୀ ପଥରେ ଅଗ୍ରସର ହେଲେ । ଯେତେବେଳେ ସେ ବ୍ରଜରେ ପଦାର୍ପଣ କଲେ, ସେତେବେଳେ ପର୍ବତ ତାଙ୍କୁ ଅଧିକ ଭାରି ପ୍ରତୀତ ହେଲା । ତାଙ୍କର ହାତ ଖୁବ୍ ବ୍ୟଥା ହେଲା, ସେ ପାଦେ ହେଲେ ଆଗକୁ ଅଗ୍ରସର ହୋଇପାରିଲେ ନାହିଁ । ଶେଷରେ ଥକିଯାଇ ସେ ସେହି ସ୍ଥାନରେ ଗୋବର୍ଦ୍ଧନଙ୍କୁ ରଖିଦେଲେ । ଗୋବର୍ଦ୍ଧନ ହସି ହସି କହିଲେ—"ବ୍ରହ୍ମନ୍ ! ଏବେ ମୁଁ ଆଉ ଏଠାରୁ ଆଗକୁ ନ ଚଳେ । ଆପଣଙ୍କ ପ୍ରତିଜ୍ଞା ତ ରକ୍ଷା ହୋଇପାରିଲା ନାହିଁ ।"

ତପସ୍ୱୀ ବ୍ରାହ୍ମଣ ଥିଲେ ଭଗବଦ୍‌ଭକ୍ତ, ସେ ଧ୍ୟାନ ବଳରେ ଜାଣିପାରିଲେ ଯେ, ଏହା ତ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳାର ଉପକରଣ । ଏ ହେଉଛନ୍ତି ଗୋଲୋକର ଦିବ୍ୟ-ଚିନ୍ମୟ ଗୋବର୍ଦ୍ଧନ ପର୍ବତ ଓ ଭଗବାନଙ୍କ ଅଭିନ୍ନ ତନୁ ।" ତେଣୁ ସେ ଗୋବର୍ଦ୍ଧନଙ୍କୁ କାଶୀ ନେବାପାଇଁ ଆଉ ଆଗ୍ରହ ପ୍ରକାଶ କଲେ ନାହିଁ । ସେ ସେହିଠାରେ ସେହି ପର୍ବତରେ

ବାସକର ତପ ଆଚରଣ ପୂର୍ବକ ପରମପଦ ପ୍ରାପ୍ତି ହେଲେ । ସେହିଦନଠାରୁ ଗୋବର୍ଦ୍ଧନ ପର୍ବତ ବ୍ରଜରେ ବିରାଜମାନ କରି ଭଗବାନଙ୍କ ଅବତାରକୁ ପ୍ରତୀକ୍ଷା କରିଥିଲେ । ବ୍ରଜରେ ଅବତୀର୍ଣ୍ଣ ହୋଇ ଭଗବାନ ଶ୍ରୀକୃଷ୍ଣ ଏହାଙ୍କ ଉପରେ କ୍ରୀଡ଼ା କଲେ ଓ ଏହାଙ୍କୁ ନିଜର କାଣୀ ଆଙ୍ଗୁଠିରେ ଧାରଣ କଲେ । ସେଥିପାଇଁ ତାଙ୍କର ନାମ ଗିରିଧାରୀ ଓ ଗୋବର୍ଦ୍ଧନଧାରୀ । ଏହି ଲୀଳା ମୁଁ ଯଥା ସମୟରେ ପ୍ରସଙ୍ଗକ୍ରମେ ଆପଣମାନଙ୍କୁ କହିବି । ଭଗବାନ ଗୋବର୍ଦ୍ଧନଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କୁ ନିଜର ସ୍ୱରୂପ ପ୍ରଦାନ କରିଥିଲେ । ସେଥିପାଇଁ ଗୋବର୍ଦ୍ଧନଙ୍କୁ ଦର୍ଶନ କରିବା ଭଗବାନଙ୍କୁ ଦର୍ଶନ କରିବା ସହିତ ସମାନ ଫଳପ୍ରଦ । ନିଷ୍ଠାବାନ୍ ବୈଷ୍ଣବଗଣ ଏହି ପର୍ବତର ଶିଳା ଉପରେ ପଦ ରଖନ୍ତି ନାହିଁ ଓ ଏହାଙ୍କୁ ଭଗବନ୍ତ ଜ୍ଞାନରେ ପୂଜାର୍ଚ୍ଚନା କରନ୍ତି । ଏହା ଅତ୍ୟନ୍ତ ଶ୍ରେଷ୍ଠ ପର୍ବତଟିଏ ହୋଇଥିଲେ ମଧ୍ୟ, ଏଥିପାଇଁ ତାଙ୍କୁ ଗିରିରାଜ ଗୋବର୍ଦ୍ଧନ ବୋଲି କୁହାଯାଏ । ପର୍ବତ-ମାନଙ୍କ ମଧ୍ୟରେ ଏହାଙ୍କ ନାମ ଅଗ୍ରଗଣ୍ୟ । ଏହି ପର୍ବତ ସଂସାରରେ ଅତ୍ୟନ୍ତ ଭାଗ୍ୟଶାଳୀ । ଗୋପିକାଗଣ ଏହାଙ୍କର ମହିମା ସର୍ବଦା ଗାନ କରିଥାଆନ୍ତି ।"

ଏକଥା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆମ୍ଭମାନଙ୍କୁ ତ ଆପଣ ଗିରିରାଜ ଗୋବର୍ଦ୍ଧନଙ୍କ ଲୀଳା କଥା କହିଲେ, ଏବେ ଆପଣ ବେଣୁମାଧୁରୀ ରସ-ସରିତକୁ ଆଉ କେତେ ସମୟ ପର୍ଯ୍ୟନ୍ତ ପ୍ରବାହିତ କରିବେ ? ଆଗକୁ ଅନ୍ୟ କିଛି ପ୍ରସଙ୍ଗ କହିବେ ନା ଏହି ପ୍ରକାର ଉତ୍ପ୍ରେକ୍ଷା କରି ଚାଲିଥିବେ ?"

ସୂତ ସଙ୍ଗେ ସଙ୍ଗେ କହିଲେ—"ମହାରାଜ ! ଏହି ମାଧୁରୀ ରସର ତ କୌଣସି ଆଦିଅନ୍ତ ନାହିଁ । ଏହା ଅନନ୍ତ ରସାର୍ଣ୍ଣବ । ଏହା ବର୍ଣ୍ଣନା କରି କହିବା କାହାରି ପକ୍ଷେ ସମ୍ଭବ ନୁହେଁ । ଏବେ ମୁଁ ଏ ପ୍ରସଙ୍ଗକୁ ସମାପ୍ତ କରି ଅତ୍ୟନ୍ତ ସରସ 'ଚୀରହରଣ ଲୀଳା' ପ୍ରସଙ୍ଗ ବର୍ଣ୍ଣନା କରିବି ।"

ହଁ, ସେହି ଗୋପିକାଗଣ ନିଜ ନିଜ ମଧ୍ୟରେ ବେଣୁମାଧୁରୀ ବିଷୟ ଚର୍ଚ୍ଚା କରି କରି ମୂର୍ଚ୍ଛିତ ହୋଇ ଯାଇଥିଲେ । ସେମାନଙ୍କ ମୂର୍ଚ୍ଛାରେ ଔଷଧ ମଧ୍ୟ ଏହି ମାଧୁରୀ ଥିଲା । ଏଣୁ ଉପରୁ ଦୃଷ୍ଟିରୁ ଅନ୍ୟ କେତେକ ସଜାଗ ଥିବା ଗୋପୀକା କେତେକ କଥା ଅବଶ୍ୟ କହିଥିଲେ । କିଛି କହି ନ ଥିଲେ ତ ସମସ୍ତେ ସେହିପରି ମୂର୍ଚ୍ଛିତା ହୋଇ ପଡ଼ିଥାଆନ୍ତେ । ମୂର୍ଚ୍ଛିତାବସ୍ଥାରେ ମଧ୍ୟ ସେମାନେ ସବୁକିଛି ଶୁଣି ପାରୁଥିଲେ ଓ ଏହାଦ୍ୱାରା ସେମାନଙ୍କର ସନ୍ତପ୍ତ ହୃଦୟରେ ସେମାନେ ଶୀତଳତା ଅନୁଭବ କରୁଥିଲେ । ଯେତେବେଳେ ଏକ ଗୋପୀକା ଗୋବର୍ଦ୍ଧନଙ୍କ ମହିମା ଗାଇ ଗାଇ ମୂର୍ଚ୍ଛିତ ହୋଇ ପଡ଼ିଲା, ସେତେବେଳେ ଅନ୍ୟ ଜଣେ କହିଲେ—"ସଖି ! ଏ ବାଂଶୁରୀର ମହିମା ମୁଁ ଆଉ ଅଧିକ କହି ପାରୁନାହିଁ, ଏହା ତ ବ୍ରହ୍ମାଙ୍କ ବିଧାନକୁ ବିପରୀତ କରି ଦେଉଛି । ଯେତେବେଳେ ଶ୍ୟାମସୁନ୍ଦର ନିଜର

ବଡ଼ଭାଇ ବଳରାମ ତଥା ସମସ୍ତ ସାଥିମାନଙ୍କ ସହିତ ଗୋରୁମାନଙ୍କୁ ଆଗୁଆ କରି ଏକ ବନରୁ ଅନ୍ୟ ବନକୁ ଯାଉଥିଲେ, ସେତେବେଳେ ମଧୁରପଦାବଳୀଯୁକ୍ତ ଉଦାରବଂଶୀ ଧ୍ୱନିକୁ ଶ୍ରବଣ କରି ଚରାଚର ଜୀବଙ୍କର ବିଚିତ୍ର ଦଶା ହୋଇ ଯାଉଥିଲା । ସଚରମାନେ ତ ଅଚରମାନଙ୍କୁ ଦେଖି ପାରୁଥିଲେ; କିନ୍ତୁ ସଚରମାନେ ଅଚରରେ ପରିଣତ ହୋଇ ଯାଉଥିଲେ । ମନୁଷ୍ୟ, ପଶୁ, ପକ୍ଷୀ ଆଦି ଯେତେ ସଚର ପ୍ରାଣୀ ସମସ୍ତେ ବେଣୁନାଦ ଶ୍ରବଣ କରିବାମାତ୍ରେ ସ୍ତବ୍‌ଧ ଓ ସ୍ତମ୍ଭିଭୂତ ହୋଇ ଯାଉଥିଲେ ଏବଂ ବୃକ୍ଷ ଆଦି ଅଚରମାନଙ୍କର ଶରୀର ରୋମାଞ୍ଚିତ ହୋଇ ଯାଉଥିଲା ।" ଏହା କହୁ କହୁ ସେ ମଧ୍ୟ ମୂର୍ଚ୍ଛିତା ହୋଇଗଲା ।

କିଛି ସମୟ ପରେ ସମସ୍ତଙ୍କର ମୂର୍ଚ୍ଛାଭଙ୍ଗ ହେବାରୁ ସେମାନେ ଶ୍ୟାମସୁନ୍ଦରଙ୍କୁ ଗୋ-ଦୋହନ କରିବାକୁ ଉଦ୍ୟତ ହେଉଥିବାର ଦେଖିଲେ । ତାଙ୍କୁ ଦର୍ଶନ କରି ସମସ୍ତେ ଧନ୍ୟ ହୋଇଗଲେ । କେହି ଗୋ-ଦୋହନ କରିବାରେ ଲାଗିଗଲେ ତ କେହି କେହି ବାଛୁରୀମାନଙ୍କୁ ବାନ୍ଧିବାରେ ଲାଗିଲେ । ଅନ୍ୟାନ୍ୟ ଗୋପୀକାମାନେ ଶ୍ୟାମସୁନ୍ଦରଙ୍କୁ ଏଣୁତେଣୁ ବ୍ୟର୍ଥ କଥା ପଚାରିବାକୁ ଲାଗିଲେ । ଶ୍ୟାମସୁନ୍ଦର ସଖାମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ, ହସଖୁସି ହେବାକୁ ଯାଉଥିଲେ ଓ ମଝେ ମଝେ ଆଡ଼ ନୟନରେ ସେହି ଅନୁରାଗବତୀ ଗୋପିକାମାନଙ୍କୁ ଆଡ଼କୁ ଚାହୁଁଥିଲେ । ତାଙ୍କର ସେହି ପ୍ରେମପୂର୍ଣ୍ଣ ହୃଦୟ ହିଁ ବ୍ରଜାଙ୍ଗନାମାନଙ୍କର ଜୀବନର ଆଧାର । ସେହି ପ୍ରେମପୂର୍ଣ୍ଣ ଚାହିଁର ସହାୟତାରେ ତ ସେମାନେ ବଞ୍ଚି ରହିଥିଲେ ।

ଶ୍ରୀକୃଷ୍ଣ ଦୁଗ୍‌ଧ ଦୋହନ କରୁଥିବା ଗୋପୀକାମାନଙ୍କୁ କହୁଥିଲେ—"ବାଛୁରୀ-ମାନଙ୍କୁ ପ୍ରଥମେ ପେଟଭରି ଦୁଗ୍‌ଧ ପାନ କରିବାକୁ ଦିଅ ଓ ତାହା ପରେ ଦୋହନ କର ବାଛୁରୀମାନଙ୍କୁ ବାନ୍ଧି ସର୍ବଶେଷରେ ଗାଈମାନଙ୍କର ପଣ୍ଡାକୁ ଶୀତଳ ଜଳରେ ଧୋଇଦିଅ । ଦୁଗ୍‌ଧ ଦୋହନ ପାତ୍ର ଏପରି ସ୍ଥାନରେ ରଖ, ଯେପରି ଦୁଗ୍‌ଧ ଧାର ବାହାରେ ନ ପଡ଼େ । ଦୁଗ୍‌ଧ ଯେପରି ଭୂମି ଉପରେ ଢାଳି ହୋଇ ନ ଯାଏ । ଯେଉଁ ଗାଈ ଦୋହନ କାଳରେ ଡେଇଁବାକୁ ଚେଷ୍ଟା କରନ୍ତି, ସେମାନଙ୍କ ପଛ ଗୋଡ଼ରେ ଛନ୍ଦ ବାନ୍ଧି ଦୋହନ କର ।"

ଗୋପବାଳକମାନେ ହସି ହସି କହନ୍ତି—"ଆରେ କାହ୍ନୁଆ ଭାଇ ! ତୁ ତ ଏବେଠାରୁ ପଣ୍ଡିତ ହୋଇଗଲୁଣି, ସମସ୍ତଙ୍କୁ ଶିକ୍ଷା ଦେଲୁଣି । ଆମ ଆଗରେ ତ ତୁ ନଙ୍ଗଳା ହୋଇ ନାଚୁଥିଲୁ ।"

ଏହା ଶୁଣି ଶ୍ରୀକୃଷ୍ଣ କହନ୍ତି—"ଯାଅ—ଏଠୁ ପଳାଅ, କାହିଁ, କଣ ଟୋ ହୋଇଗଲି କି ? ଦେଖ, ମୁଁ ଏବେ ନଙ୍ଗଳା ହୋଇ ପଡ଼ୁଛି ।"

ସମସ୍ତେ ହସି ହସି କହନ୍ତି—"ଭାଇ ଦୟାକର ! ତୋ'ଠାରେ ତ କୌଣସି ଲଜ୍ଜା ସଙ୍କୋଚ ନାହିଁ । ତୁ ମହାନଙ୍ଗଳା ଓ ତୋର ମୁହଁ ଭଡ଼କ । ତୋ' ମନକୁ

ଯେତେବେଳେ ଯାହା ଆସୁଛି ତାହା କହି ପକାଉଛୁ । କେମିତି କଥା କହିବାକୁ ହୁଏ ତୋତେ ତ ଜଣା ନାହିଁ । ଯାହା ଇଚ୍ଛା ତାହା କହିଦେଉ । ତୋର କାହାକୁ ଲଜ୍ଜା ନାହିଁ କି ଘୃଣା ନାହିଁ । ତୋର କଏ କ'ଣ କରିବ ?" କଥାରେ ଅଛି—"ଯେ ନଙ୍ଗଳା, ସେ ପରମେଶ୍ୱରଙ୍କଠାରୁ ବି ବଡ଼ ।"

ଶ୍ରୀକୃଷ୍ଣ କହିଲେ—"ଭାଇ ! ମୁଁ ଯାହାକୁ ଆପଣାର କରିନିଏ, ତାକୁ ବି ନଙ୍ଗଳା ନ କରି ଛାଡ଼େ ନାହିଁ । ଯେ ନିଜର ସର୍ବସ୍ୱ ତ୍ୟାଗକରି ଯେ ପର୍ଯ୍ୟନ୍ତ ଧନହୀନ ନ ହୋଇଛି, ସେ ପର୍ଯ୍ୟନ୍ତ ମୁଁ କିପରି ତାକୁ ଆପଣାର କରିପାରିବି ? ଯେ ପର୍ଯ୍ୟନ୍ତ ମଝିରେ ବ୍ୟବଧାନ ରହିଥିବ, ଅନ୍ତର ରହିଥିବ, ସେ ପର୍ଯ୍ୟନ୍ତ ଏକଭାବ କିପରି ଆସିବ ?"

ସୂତ କହୁଛନ୍ତି—"ମୁନିଗଣ ! ଏହିପ୍ରକାର ହସି ଖେଳି ଶ୍ୟାମସୁନ୍ଦର ଗାଈମାନଙ୍କୁ ଦୋହନ କରି ଘରକୁ ଫେରନ୍ତି । ଗୋପିକାଗଣ ନିରନ୍ତର ଶ୍ୟାମସୁନ୍ଦରଙ୍କୁ ମନେ ମନେ ଚିନ୍ତାକରି ଗୃହକାର୍ଯ୍ୟରେ ଲାଗିଯାଆନ୍ତି ।"

### ଛପ୍ପୟ

ଗିରି ଗୋବରଧନ ଧନ୍ୟ ଶ୍ରେଷ୍ଠ ସବ ହରିଭଗତନିତେଂ ।
ଜା ପୈ ଶ୍ରୀହରି ଫିରେଂ ନିତ୍ୟ ନଂଗେ ଚରନନିତେଂ ॥
ହରଷେଂ ହିୟମହିଁ ନିରଖି ଗ୍ୱାଲ ଗୌଅନି ସଁଗ ନଟବର ।
ଦେତ ତୃନ, ଜଲ, ଫଲ, ମୂଲ କରୈ ସତ୍କାର ନିରନ୍ତର ॥
ହରି ମୁରଲୀ କୀ ତାନ ସୁନି, ହୋହିଁ ଅଚର ଚର, ଚର ଅଚର ।
ପାନ କରହିଁ ବେସୁଧି ବନହିଁ, ବେନୁମାଧୁରୀ ପରସ୍ପର ॥



## ବ୍ରଜକନ୍ୟାମାନଙ୍କର କାତ୍ୟାୟନୀ ବ୍ରତ

**ହେମନ୍ତେ ପ୍ରଥମେ ମାସି ନନ୍ଦବ୍ରଜକୁମାରିକାଃ ।**
**ଚେରୁର୍ହବିଷ୍ୟ ଭୁଞ୍ଜାନାଃ କାତ୍ୟାୟନ୍ୟର୍ଚ୍ଚନବ୍ରତମ୍ ॥**

(ଶ୍ରୀ ଭା ୧୦ ସ୍କ, ୨୨ ଅ, ୧ ଶ୍ଳୋକ)

## ଛପ୍‌ପୟ

କହେଂ ସୂତ—ମୁନି ! ସୁନହୁ କୁମାରନକୀ ଲୀଲା ଅବ ।
କୃଷ୍ଣପ୍ରେମ ମହଁ ପଗୀଂ କରେଂ ନିଲ ବ୍ରତ ଜପ ତପ ସବ ॥
ବ୍ରତ କାତକନେ । କହେଁ ପ୍ରେମତେଂ ଯମୁନା ନ୍ହାବେଂ ।
ନ୍ହାନ୍ହ ବାଲୁକାମୟୀ ଭଗବତୀ ମୂର୍ତ୍ତି ବନାବେଂ ॥
ମାଲ ଚନ୍ଦନ ଧୂପ ବର, ଅକ୍ଷତ ଦଲ ତାମ୍ବୂଲ ଫଲ ।
ପୂଜା ସବ ବିଧିବତ କରହୁଁ, ଅରପି ଅନ୍ନ ସୁସ୍ୱାଦୁ ଜଲ ॥

ରସଶାସ୍ତ୍ରରେ କୃଷ୍ଣପ୍ରିୟାଗଣଙ୍କର ଅନେକ ଭେଦ ବର୍ଣ୍ଣନା କରାଯାଇଛି । ବ୍ରଜରେ ଯେତେ କୃଷ୍ଣପ୍ରେମବତୀ ଗୋପୀକା ଅଛନ୍ତି ସେ ସମସ୍ତଙ୍କର ପୃଥକ୍ ପୃଥକ୍ ବିଲକ୍ଷଣ ଭାବ ପରିଲକ୍ଷିତ ହୁଏ । ସାଧାରଣତଃ ଅନୁରାଗବତୀ ଗୋପୀକାଗଣ ସିଦ୍ଧା ଓ ନିତ୍ୟସିଦ୍ଧା ଏହି ଦୁଇ ଭାଗରେ ବିଭକ୍ତ । ସହଚରୀଗଣ ତ ଶ୍ୟାମସୁନ୍ଦର ନିକଟରେ ସର୍ବଦା ରହନ୍ତି । ତାଙ୍କୁ କୃଷ୍ଣପ୍ରାପ୍ତି ପାଇଁ ପ୍ରୟାସ କରିବାକୁ ପଡ଼େ ନାହିଁ । ଯେଉଁମାନଙ୍କ ମନରେ ବହୁତ ମନୋରଥ, ଯେଉଁମାନେ ନାନାପ୍ରକାର ଉପାସନା କରନ୍ତି, ପୁନଶ୍ଚ ସେମାନଙ୍କୁ ଶ୍ରୀକୃଷ୍ଣଙ୍କ ପ୍ରସାଦ ପ୍ରାପ୍ତି ହୋଇଛି, ସେମାନେ ହେଉଛନ୍ତି ନିତ୍ୟ ସିଦ୍ଧା । ସେମାନଙ୍କ ମଧ୍ୟରେ ଊଢ଼ା, ଅନୂଢ଼ା, ମୁଗ୍‌ଧା, ପ୍ରମୁଗ୍‌ଧା ଆଦି ଅନେକ ଭେଦ ରହିଛି । ଯେଉଁମାନେ ଅବିବାହିତା, ସେମାନଙ୍କୁ ମୁଗ୍‌ଧା ଓ ଯେଉଁମାନେ ପତିପ୍ରେମ ଲାଭ କରିଛନ୍ତି ସେମାନଙ୍କୁ ପ୍ରମୁଗ୍‌ଧା କୁହାଯାଏ । ଗୋପିମାନଙ୍କ ମଧ୍ୟରେ କେହି କେହି ବେଦର 'ଋଚା' ଅଟନ୍ତି । ସେମାନେ ଇଚ୍ଛା କରିଥିଲେ ଯେ ଆମେ ଶ୍ରୀକୃଷ୍ଣଙ୍କ ପତ୍ନୀ ହେବୁ । ତେଣୁ ସେମାନେ ଏବେ ଗୋପୀକା ରୂପେ ଜନ୍ମ ନେଇଛନ୍ତି । କେହି କେହି ଦେବାଙ୍ଗନା ଅଟନ୍ତି । ସେମାନେ ଭଗବାନଙ୍କ ଆଜ୍ଞାରେ ବ୍ରଜରେ ଅବତୀର୍ଣ୍ଣ ହୋଇଛନ୍ତି । କେହି କେହି ମୁନିରୂପା ଅଟନ୍ତି । ଯେଉଁମାନେ କନ୍ୟା, ସେମାନେ ବାସ୍ତବରେ ସ୍ୱରୂପସିଦ୍ଧା ଅଟନ୍ତି । ଶ୍ରୀକୃଷ୍ଣଙ୍କ ଲୀଳାବିଳାସକୁ ବୃଦ୍ଧି କରିବାପାଇଁ ଏମାନେ ସାଧିକାମାନଙ୍କୁ ଅନୁକରଣ କରିଅଛନ୍ତି । ଶ୍ରୀକୃଷ୍ଣ ଆମ୍ଭମାନଙ୍କର ପତି ହୁଅନ୍ତୁ, ଏଥିପାଇଁ ସେମାନେ ଘୋର ସାଧନା କରିଅଛନ୍ତି । ଏ ଯେଉଁ ପୂର୍ବାନୁରାଗବତୀ କନ୍ୟାଗଣ ଜପ, ତପ, ବ୍ରତ ଅନୁଷ୍ଠାନ ଆଦି ଯାହା କିଛି କରୁଛନ୍ତି, ସେ ସମସ୍ତ ଏକମାତ୍ର ବ୍ରଜବଲ୍ଲଭ ନନ୍ଦନନ୍ଦନଙ୍କ ପ୍ରସନ୍ନତା ପାଇଁ ହିଁ କରୁଅଛନ୍ତି । ଯେଉଁ ଦେବତାଙ୍କୁ ସେମାନେ ପୂଜା କରନ୍ତି, ତାଙ୍କୁ ଏହି ବର ମାଗନ୍ତି ଯେ—"ଆମ୍ଭମାନଙ୍କୁ ଶ୍ରୀକୃଷ୍ଣ ପ୍ରେମ ପ୍ରାପ୍ତ ହେଉ ।" ଶ୍ୟାମସୁନ୍ଦର ତ ସେମାନଙ୍କର ସାଧ୍ୟ ଥିଲେ । ସାଧ୍ୟଙ୍କ ପ୍ରାପ୍ତି ପାଇଁ ଅନ୍ୟ ଦେବତାଙ୍କର ପୂଜା କେବଳ ସାଧନାର କାରଣମାତ୍ର ଥିଲା । ଶ୍ରୀକୃଷ୍ଣ ପ୍ରୀତ୍ୟର୍ଥେ ଯେଉଁ

କର୍ମ କରାଯାଏ, ତହିଁରେ ପ୍ରାରବ୍ଧ ସୃଷ୍ଟି ହୁଏନାହିଁ । ତାହା ସମସ୍ତ ସଞ୍ଚିତ ଶୁଭାଶୁଭ କର୍ମ ନାଶକରି ପ୍ରଭୁପ୍ରାପ୍ତି କରାଏ । ଏଥିରେ ପ୍ରଭୁ ପ୍ରସନ୍ନ ହୁଅନ୍ତି ଓ ବରଣ କରି ନିଅନ୍ତି ।"

ସୂତ କହୁଛନ୍ତି—"ମୁନିଗଣ ! ମୁଁ ପୂର୍ବରୁ ଶରଦ୍ ଋତୁ ପ୍ରସଙ୍ଗରେ ମହା-ଅନୁରାଗବତୀ ଗୋପିକାମାନଙ୍କର ପ୍ରେମ ସମ୍ବନ୍ଧରେ ସେମାନଙ୍କଦ୍ୱାରା ବର୍ଣ୍ଣିତ ବେଣୁମାଧୁରୀ ପ୍ରସଙ୍ଗ ଖୁବ୍ ସଂକ୍ଷେପରେ ଆପଣମାନଙ୍କୁ କହିଥିଲି । ଏବେ ମୁଁ ପୂର୍ବାନୁରାଗବତୀ କୁମାରୀକନ୍ୟା-ମାନଙ୍କର ପ୍ରେମର ଏକ ପ୍ରସଙ୍ଗ କହୁଅଛି, ଯେଉଁମାନଙ୍କର ହୃଦୟ ନିରନ୍ତର ନନ୍ଦନନ୍ଦନଙ୍କ ଠାରେ ହିଁ ଆସକ୍ତ ରହି ଥିଲା । ଶ୍ରୀକୃଷ୍ଣଙ୍କୁ ଆମ୍ଭେମାନେ ପତିରୂପେ ଲାଭ କରୁଁ, ଏହି ଅଭିଳାଷରେ ସେମାନେ ସମସ୍ତ ବ୍ରତ ଅନୁଷ୍ଠାନ କରୁଥିଲେ । ମୁନିଗଣ ! ମୁଁ ପୂର୍ବରୁ ଏହି କଥା ଅନେକଥର କହି ଅଛି, ଏବେ କହୁଛି ଓ ଆଗକୁ ମଧ୍ୟ ସର୍ବଦା କହିବି । କାରଣ ଶ୍ରୀକୃଷ୍ଣଙ୍କ ଲୀଳାଗୁଡ଼ିକୁ ପ୍ରାକୃତ ପୁରୁଷ ଲୀଳା ଭଳି ବୁଝି ପାଠ କଲେ କୌଣସି ପାରମାର୍ଥିକ ଲାଭ ହେବ ନାହିଁ । ତାହା ଲୌକିକ ପ୍ରେମର ଏକ ଧର୍ମବିରୋଧ ଘଟଣା ହୋଇଯିବ । ଏହା କିଛିକାଳ ପାଇଁ ବିଷୟୀମାନଙ୍କର ମନୋରଞ୍ଜନ କରେ; କିନ୍ତୁ ଜୀବର ଚରମ ଲକ୍ଷ୍ୟ ଶ୍ରୀକୃଷ୍ଣ ପ୍ରାପ୍ତି ଏଥିରେ ହୋଇପାରେ ନାହିଁ । ଯେତେବେଳେ ଶ୍ରୀକୃଷ୍ଣଙ୍କୁ ସର୍ବାନ୍ତର୍ଯାମୀ, ପ୍ରତିଘଟବାସୀ ପରାତ୍ପର ପ୍ରଭୁ ବୋଲି ଜାଣି ଗୋପୀମାନେ ତାଙ୍କଠାରୁ ଅଭିନ୍ନ, ଏହି ଜ୍ଞାନରେ ଶ୍ରଦ୍ଧାର ସହିତ ଏହି ଅତ୍ୟନ୍ତ ସରସ ମଧୁର ଭାବ ପୋଷକ ଲୀଳା ପାଠକରା ଯିବ, ସେତେବେଳେ କଲ୍ୟାଣ ହେବା ସୁନିଶ୍ଚିତ । ତେଣୁ କନ୍ୟାମାନଙ୍କର ସାଧନା ଓ ପୁନଶ୍ଚ ପ୍ରଭୁଙ୍କ ପ୍ରସାଦ କଥା ଗୁଡ଼ିକୁ କାମଦୃଷ୍ଟିରେ ନ ଦେଖି, ଉପାସନା ଦୃଷ୍ଟିରେ ଶ୍ରବଣ, ମନନ ଓ ପଠନ କରିବା ଉଚିତ ।"

ହଁ, ବ୍ରଜରେ ତ କେତେକ କନ୍ୟା ଥିଲେ । ସେମାନେ ଶ୍ରୀକୃଷ୍ଣଙ୍କର ରୂପମାଧୁରୀ କଥା ଶ୍ରବଣ କରିଥିଲେ । ଶ୍ରୀହରିଙ୍କର ଗୁଣ ଶ୍ରବଣମାତ୍ରେ ହିଁ ସେମାନଙ୍କର ମନରେ ମନମୋହନଙ୍କର ମନମୋହିନୀ ମୂର୍ତ୍ତି ଅଙ୍କିତ ହୋଇ ଯାଉଥିଲା । ସମସ୍ତଙ୍କର ଏକ ସଙ୍ଗେ ଏକ ସଂକଳ୍ପ ହେଲା, "ଶ୍ୟାମ-ସୁନ୍ଦର ଆମ୍ଭମାନଙ୍କର ପତି ହୁଅନ୍ତୁ, ସେ ଆମ୍ଭମାନଙ୍କୁ ନିଜର ଅନୁଚରୀ କିଙ୍କରୀ ରୂପରେ ବରଣ କରି ନେଲେ ବୋଲି ସ୍ୱୀକାର କରି ନିଅନ୍ତୁ । ଯଦି କୌଣସି ଏକ ପ୍ରାକୃତ ପୁରୁଷଙ୍କଠାରେ ଅନେକ କନ୍ୟାଙ୍କର ଅନୁରାଗ ଜାତ ହୁଏ ଓ ସେମାନେ ସମସ୍ତେ ତାଙ୍କୁ ଚାହାନ୍ତି, ତାହାହେଲେ ସେମାନଙ୍କ ମଧ୍ୟରେ ସପତ୍ନୀ ଭାବର ଆଶଙ୍କା କରାଯାଏ; କିନ୍ତୁ ସର୍ବେଶ୍ୱରଙ୍କ ସମ୍ବନ୍ଧରେ ଏହି କଳ୍ପନା ତ କେବେ କରାଯାଇ ନ ପାରେ । ସମସ୍ତଙ୍କର ସମାନ ଉଦ୍ଦେଶ୍ୟ ଥିବାରୁ ପରସ୍ପର ମଧ୍ୟରେ ଅତ୍ୟଧିକ ଅନୁରାଗ ହିଁ ଥିଲା । ସେମାନେ ଏକଜୁଟ ହୋଇ ସେମାନଙ୍କର ଇଷ୍ଟସିଦ୍ଧି ନିମିତ୍ତ ପ୍ରଯତ୍ନଶୀଳ ଥିଲେ । ସାମୂହିକ ସାଧନରେ ସର୍ବଦା ସଂଲଗ୍ନ ରହି ସେମାନେ ନିତ୍ୟ ନୂତନ ବ୍ରତ ଅନୁଷ୍ଠାନ କରୁଥିଲେ । ସେ ସମସ୍ତଙ୍କର ଫଳ

ସ୍ୱରୂପ ସେମାନେ ଏହା ହିଁ ପ୍ରାପ୍ତ ହେବାକୁ ଚାହୁଁଥିଲେ ଯେ, "ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ଆପଣାର କରି ନିଅନ୍ତୁ ।

କାର୍ତ୍ତିକମାସର ସ୍ନାନ ସ୍ତ୍ରୀ ଲୋକମାନଙ୍କ ପାଇଁ ଅତ୍ୟନ୍ତମାହାତ୍ମ୍ୟ ପୂର୍ଣ୍ଣ । ସ୍ତ୍ରୀ-ପୁରୁଷ ପ୍ରତ୍ୟେକଙ୍କ ପାଇଁ ସାଧାରଣତଃ କାର୍ତ୍ତିକ ସ୍ନାନ ପରମ ପୁଣ୍ୟଦାୟକ; କିନ୍ତୁ ସ୍ତ୍ରୀ ଲୋକମାନେ ଏହି ବ୍ରତକୁ ଅତ୍ୟଧିକ କରି ଥାଆନ୍ତି । ଯେଉଁ ରାଜ୍ୟରେ ପୂର୍ଣ୍ଣିମା ପରେ ପରେ ମାସ ଆରମ୍ଭ ହୁଏ. ସେ ରାଜ୍ୟରେ ଆଶ୍ୱିନର ଶରତ୍ ପୂର୍ଣ୍ଣିମାଠାରୁ ଏହି ସ୍ନାନ ଆରମ୍ଭ ହୋଇ କାର୍ତ୍ତିକ ପୂର୍ଣ୍ଣିମାକୁ ସମାପ୍ତ ହୁଏ । ଯେଉଁ ରାଜ୍ୟରେ ଅମାବାସ୍ୟା ପରେ ମାସର ଆରମ୍ଭ ହୁଏ, ସେ ରାଜ୍ୟରେ ଦୀପାବଳୀଠାରୁ ଆରମ୍ଭ ହୋଇ ମାର୍ଗଶୀର ଅମାବାସ୍ୟାକୁ ଏହି ସ୍ନାନ ସମାପ୍ତ ହୁଏ । ବ୍ରଜରେ ସୂର୍ଯ୍ୟୋଦୟର ଗୋଟିଏ ଘଣ୍ଟା ପୂର୍ବରୁ ସ୍ନାନାଦି ସମାପନ କରିବାକୁ ପଡ଼େ । ନିକଟରେ କୌଣସି ନଦୀ ଥିଲେ କିମ୍ବା ଜଳାଶୟ ଥିଲେ ତହିଁରେ ସ୍ନାନ କରାଯାଏ । ଏ ଉଭୟର ଅଭାବରେ କୂପଜଳରେ ମଧ୍ୟ ସ୍ନାନ କରାଯାଏ । ଦିନରେ ଥରେ ମାତ୍ର ହବିଷ୍ୟାନ୍ନ ଭୋଜନ କରାଯାଏ । ଲୁଣ ବ୍ୟବହାର କରାଯାଏ ନାହିଁ । ନିୟମାନୁସାରେ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ପଡ଼େ । ବ୍ରତର ସମସ୍ତ ନିୟମ ପାଳନ କରିବାକୁ ହୁଏ । ବୃନ୍ଦାଦେବୀ ତଥା ପାର୍ବତୀଙ୍କୁ ବିଧିବତ୍ ପୂଜାର୍ଚ୍ଚନା କରାଯାଏ, ଗୀତ ଗାଇବାକୁ ହୁଏ ଓ ଗ୍ରାମ ଅଥବା ଦେବମନ୍ଦିର ପରିକ୍ରମା କରିବାକୁ ହୁଏ । ଆହୁରି ମଧ୍ୟ ଏହିଭଳି ଅନେକ ନିୟମ ରହିଛି ।

ନନ୍ଦ ବ୍ରଜର କୁମାରୀ କନ୍ୟାମାନେ ଚିନ୍ତା କଲେ—"କାତ୍ୟାୟନୀ ଦେବୀ ସମସ୍ତ ଅଭୀଷ୍ଟ ପୂର୍ଣ୍ଣ କରନ୍ତି ବୋଲି ଶୁଣାଯାଏ ।" କୁମାରୀ କନ୍ୟାମାନଙ୍କର ଏହା ହିଁ ଏକମାତ୍ର ଆନ୍ତରିକ ଇଚ୍ଛା ଥିଲା ଯେ ଆମ୍ଭମାନଙ୍କୁ ସମସ୍ତ ସଦ୍‌ଗୁଣ ସମ୍ପନ୍ନ ପତି ପ୍ରାପ୍ତ ହୁଅନ୍ତୁ । ଶ୍ୟାମସୁନ୍ଦରଙ୍କଠାରୁ ବଳି ସର୍ବଗୁଣ ସମ୍ପନ୍ନ ପତି ଅନ୍ୟ କିଏ ଅବା ଅଛି ? ତେଣୁ ତାଙ୍କୁ ପାଇବା ପାଇଁ ଆମ୍ଭେମାନେ ବିଧି ବିଧାନରେ କାର୍ତ୍ତିକ ସ୍ନାନ କରି କାତ୍ୟାୟନୀ ଦେବୀଙ୍କୁ ପୂଜା କରିବା ଏହି ପ୍ରକାର ବିଚାର କରି ଏବଂ ପରସ୍ପର ମଧ୍ୟରେ ଏକମତ ହୋଇ ସମସ୍ତେ ଏକମାସ ବ୍ରତ ପାଳନ କରିବାପାଇଁ ସ୍ଥିର କଲେ । ଦୀପାବଳୀର ଦୀପ ଜଳାଇ ସେମାନେ ଏହି ବ୍ରତ ଆରମ୍ଭ କଲେ । ପ୍ରାତଃକାଳରେ ଅରୁଣୋଦୟରେ ଉଠି ସେମାନେ ଗୀତ ଗାଇ ଗାଇ ପ୍ରତ୍ୟେକଙ୍କ ଘରକୁ ଯାଇ ସାଙ୍ଗମାନଙ୍କୁ ଉଠାନ୍ତି ଓ ସେମାନଙ୍କର ନାମଧରି ଡାକନ୍ତି । କହନ୍ତି, ଆସ ସମସ୍ତେ ଯମୁନା ସ୍ନାନକୁ ଯିବା । ଦେଖ, ଅରୁଣୋଦୟରେ ସ୍ନାନ ନ କଲେ ଆମ୍ଭମାନଙ୍କର ବ୍ରତଭଙ୍ଗ ହେବ । ଏହିପ୍ରକାର ଡାକହାକରେ ଅରୁଣୋଦୟ ପୂର୍ବରୁ ବ୍ରଜବାସୀ-ମାନଙ୍କର ନିଦ ଭାଙ୍ଗିଯାଏ । ମାତାମାନେ ଦଧି ମନ୍ଥନ କରିବାକୁ ଆରମ୍ଭ କରନ୍ତି ଓ ନିଜର କୁମାରୀ କନ୍ୟାଙ୍କୁ ଯମୁନା ସ୍ନାନକୁ ଯିବା ପାଇଁ ସଖୀମାନଙ୍କ ସହିତ ପଠାଇ ଦିଅନ୍ତି । କନ୍ୟାମାନେ ରେଶମୀ ଶାଢ଼ୀ ପିନ୍ଧି ଯମୁନା ସ୍ନାନକୁ ବାହାରି ପଡ଼ନ୍ତି ।

ସମସ୍ତ କନ୍ୟା ଶ୍ରୀକୃଷ୍ଣଙ୍କ ଧ୍ୟାନ କରି ତାଙ୍କ ସୁଖଦ ସଙ୍ଗମ ଲାଳସାରେ ପ୍ରେମାଶ୍ରିତ ଶରୀରରେ ତାଙ୍କ ନାମ ଓ ଗୁଣ ଗାନ କରି ଯମୁନାକୁ ଯାଇ ହସି ଖେଳି ସ୍ନାନ କରନ୍ତି । ସ୍ନାନ ସାରି ବସ୍ତ୍ର ପରିଧାନ କରନ୍ତି ଓ କୂଳରେ କାତ୍ୟାୟନୀ ଦେବୀଙ୍କର ବାଲୁକା ମୂର୍ତ୍ତି ତିଆରି କରନ୍ତି । ସମସ୍ତେ ନିଜ ନିଜର ମୂର୍ତ୍ତିକୁ ସମ୍ମୁଖରେ ରଖି ବିଧିପୂର୍ବକ ଆବାହନ କରି ପାଦ୍ୟ, ଅର୍ଘ୍ୟ, ଆଦି ପ୍ରଦାନ ପୂର୍ବକ ତାଙ୍କୁ ପୂଜା କରନ୍ତି । ଶେଷରେ ଅତ୍ୟନ୍ତ ଭକ୍ତିରେ ହାତ ଯୋଡ଼ି ପ୍ରାର୍ଥନା କରନ୍ତି—"ହେ କାତ୍ୟାୟନୀ ! ମହାମାୟେ ! ହେ ଯୋଗିନି ! ହେ ଅଧୀଶ୍ୱରି ! ନନ୍ଦଗୋପକୁମାର ଶ୍ୟାମସୁନ୍ଦର ଆମ୍ଭମାନଙ୍କର ପତି ହୁଅନ୍ତୁ । ସେ ଆମ୍ଭମାନଙ୍କୁ ନିଜର ଅନୁଚରୀ ସ୍ୱୀକାର କରି ଆପଣାର କରି ନିଅନ୍ତୁ, ଆମ୍ଭମାନଙ୍କୁ ତୁମେ ଏହି ବର ପ୍ରଦାନ କର । ଆମ୍ଭେମାନେ ତୁମ ପାଦପଦ୍ମରେ ବାରମ୍ବାର ପ୍ରଣାମ କରୁଅଛୁ । ଏହି ଭାବ ଯୁକ୍ତ ମନ୍ତ୍ରରେ ସେମାନେ ପ୍ରାର୍ଥନା କରନ୍ତି ଓ ଏହି ଭାବଯୁକ୍ତ ମନ୍ତ୍ର ମଧ୍ୟ ଜପ କରନ୍ତି ।

ଶେଷରେ ଦେବୀଙ୍କ ପ୍ରତିମାକୁ ବିସର୍ଜନ କରନ୍ତି । ସେହି ବନର ଅଧିଷ୍ଠାତ୍ରୀ ଦେବୀ ବୃନ୍ଦାଙ୍କର ପୂଜନ କରନ୍ତି ଓ ତାଙ୍କୁ ପରିକ୍ରମା କରନ୍ତି । ତାଙ୍କ ସମ୍ମୁଖରେ ଦୀପ ଜାଳନ୍ତି ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ହିଁ କୃଷ୍ଣ-କୀର୍ତ୍ତନ କରି କରି ଘରକୁ ଫେରିଆସନ୍ତି । ଘରକୁ ଆସି ଶରୀରରେ ଗୃହକାର୍ଯ୍ୟ କରୁଥିଲେ ମଧ୍ୟ ସେମାନଙ୍କର ମନ ସର୍ବଦା ମନମୋହନଙ୍କର ରୂପମାଧୁରୀରେ ନିମଗ୍ନ ରହେ । ଘରକୁ ଆସି ସେମାନେ ଏକାନ୍ତରେ ଭଗବାନଙ୍କୁ ଭୋଗ ଲଗାଇ ବିନା ଲୁଣରେ ହବିଷ୍ୟାନ୍ନ ସେବନ କରନ୍ତି । ଏହିପ୍ରକାର ସେମାନେ ପ୍ରତ୍ୟେହ ଭାବରେ ମଜ୍ଜି "ନନ୍ଦନନ୍ଦନ ଆମ୍ଭମାନଙ୍କର ପତି ହୁଅନ୍ତୁ" ଏହି ସଂକଳ୍ପରେ ସ୍ନାନ କରନ୍ତି ଓ ଭଦ୍ରକାଳୀ ଦେବୀଙ୍କର ପୂଜା କରନ୍ତି । ଏହିପରି ଏକ ମାସ ବିତିଗଲା ।

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଙ୍କ ପାଇଁ ଯେ କେହି କିଛି ବା କିଛି କରେ, ତାଙ୍କୁ ସେ ପ୍ରେମକରେ ତାଙ୍କୁ କିଛି ଅଜଣା ରହେ ନାହିଁ । ଘଟ ଘଟରେ ରହୁଥିବା ଘନଶ୍ୟାମ ସମସ୍ତଙ୍କ ମନକଥା ଜାଣନ୍ତି ଓ ଭକ୍ତ ଉତ୍କଣ୍ଠା ହେଲେ ତାଙ୍କର ମନସ୍କାମନା ପୂର୍ଣ୍ଣ କରନ୍ତି । ଏହି କୁମାରୀଗଣ ଅତି କଷ୍ଟରେ ଶୀତରେ ଥରି ଥରି ପ୍ରତ୍ୟେହ ସ୍ନାନ କରିବାକୁ ଯାଆନ୍ତି । ଶ୍ରୀକୃଷ୍ଣ ସେମାନଙ୍କର ଅନ୍ତରଙ୍ଗ ପ୍ରେମକଥା ଜାଣି ଥାଆନ୍ତି । ତେଣୁ ସେମାନଙ୍କ ଇଚ୍ଛା ପୂର୍ଣ୍ଣ କରିବା ପାଇଁ ସେ ସ୍ଥିର କଲେ । ସେ ଯେପରି ସରସ ଖେଳ ଖେଳିଲେ, ସେ ସମ୍ବନ୍ଧରେ ମୁଁ ବର୍ଣ୍ଣନା କରୁଛି ।"

## ଛପ୍‌ପୟ

କରି ପୂଜା ସବ ନିୟମ କରେଂ ଦୁର୍ଗେ ! ଜଗଦମ୍ବେ ।
ନନ୍ଦନନ୍ଦନ ପତି ହୋହିଁ ଦେହୁ ବର କରଦେ ଅମ୍ବେ ॥

ତସ୍ମାଂ ହବିଷ୍ୟ କରି ଅସନ ନିୟମ ବ୍ରତକେ ସବ ସାଧେଂ ।
ଶ୍ରଦ୍ଧା ଭକ୍ତି ସମେତ ଭଗବତୀକୁଁ ଆରାଧେଂ ॥
ସୁଖଦ ସରସ ଲୀଳା କରୀ, ପ୍ରେମ ନିରଖି ନିଷ୍କପଟ ହରି ।
ଅପନାଇଂ ଚରସଙ୍ଗିନୀ, ସବ ଦୋଷନକୁଁ ଦୂର କରି ॥



# ଚୀରହରଣ ଲୀଳା

ଏବଂ ମାସଂ ବ୍ରତଂ ଚେରୁଃ କୁମାର୍ଯ୍ୟଃ କୃଷ୍ଣଚେତସଃ ।
ଭଦ୍ରକାଳୀ ସମାନର୍ଚ୍ଚୁର୍ଭୂୟାନ୍ନନ୍ଦସୁତଃ ପତିଃ ॥
(ଶ୍ରୀ ଭା ୧୦ ସ୍କ, ୨୨ ଅ, ୫ ଶ୍ଲୋକ)

## ଛପ୍ପୟ

ପଟ ଯମୁନା ତଟ ଧରେଂ ହ୍ନାୟୁ ନିତ ନଙ୍ଗୀ ଜଲମହଁ ।
କରନ କୃତାରଥ କୃଷ୍ଣ ଗୟେ ଛଲତେଂ ତହଁ ଥଲ ମହଁ ॥
ଜଲ ବିହାର ମିଷ କରେଂ ଉଲୀଚେଂ ସଲିଲ ପରସ୍ପର ।
ଲୈ ସବକେ ପଟ ଚଢ଼େ କଦଁବପେ ନାଗର ନଟବର ॥
ସଙ୍ଗ ସଖିନକେ ହଁସତ ହରି, ଧରି ଅଧରନି ପେ ବାଁସୁରୀ ।
ଡରତି ଲଜାତି ଥରଥର କଁପତି, ସବ ସୁକୁମାରୀ ସୁନ୍ଦରୀ ॥

ଜୀବ ଉନ୍ନତ କରିବାକୁ ଚାହେଁ; କିନ୍ତୁ ଜୀବନ ଛାଡ଼ିବାକୁ ଚାହେଁ ନାହିଁ । ମନୁଷ୍ୟ କୁଳୀନ ଓ ପ୍ରତିଷ୍ଠିତ ହେବାକୁ ଚାହେଁ; କିନ୍ତୁ ଏହି ଶରୀରକୁ ଛାଡ଼ି ଅନ୍ୟ ଶରୀର ଗ୍ରହଣ କରିବାକୁ ଚାହେଁ ନାହିଁ । ଯେଉଁ ଶରୀର ପ୍ରାପ୍ତ ହୋଇଛି ତାହାକୁ ଶ୍ରେଷ୍ଠ ବୋଲି କହି ତାହାର ପ୍ରଶଂସା କରେ । ସେହିପରି ସାଧକଗଣ ଆତ୍ମସମର୍ପଣ କରିବାକୁ ଚାହାନ୍ତି ସତ; କିନ୍ତୁ ନିଜ ନିଜର "ଅହଂତ୍ୱ"କୁ ବଜାୟ ରଖିବାକୁ ଚାହାନ୍ତି । ଦାତା ଧନ ଦାନ କରି ଦିଅନ୍ତି; କିନ୍ତୁ ସର୍ବସ୍ୱ ଦାନ କଲାପରେ ବି ଦାତାପଣିଆର ଅଭିମାନକୁ ବଜାୟ ରଖନ୍ତି ।

ତାହା ଦାନ କରିବା ସେ ଜାଣେ ବି ନାହିଁ ଓ ତାହାର ଉପରେ ଅଧିକାର ମଧ୍ୟ ନାହିଁ । ତ୍ରୁଟିତା ଦାତାପଣର ଅଭିମାନକୁ ଛାଡ଼ିପାରେ । ସେ ସମସ୍ତ ନେଇ ଅନାବୃତ୍ତ ନଗ୍ନ କରିପାରେ । ଯେ ପର୍ଯ୍ୟନ୍ତ ମଧ୍ୟ ଭାଗରେ ବସ୍ତ୍ରପଟରେ ପରଦା ରହିଥାଏ, ସେ ପର୍ଯ୍ୟନ୍ତ ଆତ୍ମ-ସମର୍ପଣର ପ୍ରଶ୍ନ ଉଠୁଛି କେଉଁଠି ? ପ୍ରେମ କଦାପି ବ୍ୟବଧାନ ସହେଁ ନାହିଁ । ପ୍ରେମୀ ଓ ପ୍ରିୟତମଙ୍କ ମଝିରେ କୁସୁମର ଏକ ମାଳାର ଅନ୍ତରାୟକୁ ବି ପ୍ରେମ ସହି ପାରେ ନାହିଁ । ଯାହାଙ୍କୁ ଆମେ ନିଜର ସର୍ବସ୍ୱ ସମର୍ପଣ କରିବାର କଥା, କାୟ, ମନ, ବାକ୍ୟ ଓ ଧନ ସବୁକିଛି ତାଙ୍କ ଚରଣରେ ସମର୍ପଣ କରିଦେବା ଉଚିତ । ଏକାନ୍ତରେ ପରସ୍ପର ମଧ୍ୟରେ ପରଦା ଟାଣିବା ମଧ୍ୟ ସମର୍ପଣର ସ୍ୱରୂପ ନୁହେଁ; କିନ୍ତୁ ଏହି ପରଦାକୁ ହଟାଇବା ସାଧକର ସାମର୍ଥ୍ୟ ବହିର୍ଭୂତ କଥା, ସେ ସ୍ୱେଚ୍ଛାରେ ନିରାବୃତ୍ତ ହୋଇ ନ ପାରେ । ଶ୍ୟାମସୁନ୍ଦର ଯଦି ତାଙ୍କ ବସ୍ତ୍ର ହଟାଇ ନିଅନ୍ତି ତଥା ତାଙ୍କୁ ବସନ ବିହୀନ କରି ଦିଅନ୍ତି, ତେବେ ଯାଇ ସର୍ବାତ୍ମ ସମର୍ପଣ ହୋଇପାରେ । ଶ୍ରୀକୃଷ୍ଣଙ୍କୁ ପତିରୂପେ ବରଣ କରି ଯଦି ଆବରଣ ହଟା ନ ଯାଏ, ତାହାହେଲେ ଯଥାର୍ଥ ପତିରୂପେ ବରଣ କଲେ ବୋଲି କୁହା ଯାଇ ନ ପାରେ ଓ ସେହି ମିଥ୍ୟା ଲଜ୍ଜାବତୀ ବାସ୍ତବ ସହଚରୀ ହୋଇ ନ ପାରନ୍ତି । ଶ୍ରୀକୃଷ୍ଣ ଯାହାକୁ ଆପଣାର କରନ୍ତି, ପ୍ରଥମେ ତାକୁ ବିବସ୍ତ୍ର କରି ଦିଅନ୍ତି । ପୁନଶ୍ଚ ସେହି ପଟକୁ (ବସ୍ତ୍ରକୁ) ପ୍ରସାଦରେ ପରିଣତ କରି ଫେରାଇ ଦିଅନ୍ତି । ପୁନଶ୍ଚ ସେଗୁଡ଼ିକ ନିଜର ପଟ ନ ହୋଇ ପୀତପଟଧାରୀଙ୍କର ପ୍ରସାଦ ପଟରେ ପରିଣତ ହୁଏ । ତାଙ୍କ ପ୍ରସାଦକୁ ପାଇ ଜୀବ କୃତାର୍ଥ ହୋଇ ଯାଏ ।

ସୂତ କହୁଛନ୍ତି—"ମୁନିଗଣ ! ସେହି କନ୍ୟାମାନେ ଶରଦ ଋତୁରେ ଅନ୍ୟ ଗୋପୀ-ମାନଙ୍କ ସହିତ ଏକାଠି ବସି ବନମାଳୀଙ୍କର ବେଣୁମାଧୁରୀ ପାନ କରୁଥିଲେ । ରୂପମାଧୁରୀକୁ ତ ପାନ କରୁଥାଅନ୍ତି । ଯେଉଁଦିନଠାରୁ ସେ ଜନ୍ମ ନେଇଛନ୍ତି, ସେଦିନୁ ନିରନ୍ତର ଲୀଳାମାଧୁରୀ ପାନ କରିବାଦ୍ୱାରା ସେମାନଙ୍କର କର୍ଣ୍ଣତୃପ୍ତ ହୋଇ ନ ଥାଏ । ବେଣୁମାଧୁରୀ ତ ସେମାନଙ୍କର କ୍ରମେ କ୍ରମେ ମାଦକତା ଭରିଦେଇଥାଏ । ସେମାନେ ଶ୍ରୀକୃଷ୍ଣଙ୍କୁ ଲାଭ କରିବା ପାଇଁ ବ୍ରତ ଅନୁଷ୍ଠାନ କରିବାରେ ଲାଗି ଥାଆନ୍ତି । ହେମନ୍ତ ଋତୁରେ ସେମାନେ ଅତି ପ୍ରତ୍ୟୁଷରୁ ସ୍ନାନ କରିବାକୁ ଯାଆନ୍ତି । ସମସ୍ତେ ଛୋଟ ବାଳିକା । ସେହି ପାପୀ ପ୍ରେମଟା ସେମାନଙ୍କର ଅନ୍ତଃକରଣରେ ଏକ ପ୍ରକାରର ଆନ୍ଦୋଳନ ସୃଷ୍ଟି କରି ଦେଇଥାଏ । ତାହା ନ ହୋଇଥିଲେ ତ ସେମାନେ ସାଂସାରିକ ଘଟଣା ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞଥିଲେ । ମାତାମାନେ ତାଙ୍କୁ କହୁଥିଲେ—ଝିଅ ! ରେଶମୀ ଶାଢ଼ୀ ପିନ୍ଧି ଭଲ ଚଦର ଘୋଡ଼ି ହୋଇ ଯାଅ । ଭଲ ଓ ରେଶମୀ ବସ୍ତ୍ରରେ ଛୁଆଁଛୁତ ବାରଣ ନାହିଁ । ସୂତାବସ୍ତ୍ର ତ ଥରେ ପିନ୍ଧିଲେ ତାକୁ ଧୋଇବାକୁ ହେବ । କିନ୍ତୁ ରେଶମୀ ଓ ପଶମ ବସ୍ତ୍ରକୁ ଯେତେଥର ଇଚ୍ଛା ସେତେଥର ପିନ୍ଧିଲେ ଧୋଇବା ଆବଶ୍ୟକ ନାହିଁ । ତାହା ନ ଧୋଇ ପିନ୍ଧିଲେ କିଛି ଦୋଷ ନାହିଁ । ତାହା

ପିଷ୍ଟକଶ ଭୋଜନ ମଧ୍ୟ କଗଯାଇ ପାରେ । ତାହା ପିଣ୍ଡ ଶୌଚ ମଧ୍ୟ କଶହୁଏ । ଶୀତ କାଳ, କନ୍ୟାମାନେ ରେଶମୀ ଧୋତ ପିଣ୍ଡ ଦେହରେ ପଶମ ଚଦର ଘୋଡ଼ି ହୋଇ ଯାଉଥିଲେ । ନଗ୍ନ ପଦରେ କୃଷ୍ଣକୀର୍ତ୍ତନ କର କର ଯାଇ ଯମୁନା କୂଳରେ ପହଞ୍ଚୁଥିଲେ । ସମସ୍ତେ ଏକ ବୟସର ଓ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ତଥା ଶୂଦ୍ର ପ୍ରତ୍ୟେକ ବର୍ଣ୍ଣର ବ୍ରଜକୁମାରୀ ଥିଲେ । କନ୍ତୁ ଅଧିକାଂଶ ଥିଲେ ଗୋପବାଳା । ଏ ସମସ୍ତେ ଯମୁନା କୂଳରେ ଥିବା ଘାଟରେ ନଜ ନଜର ବସ୍ତ୍ର ରଖି ଉଲଗ୍ନ ହୋଇ ଜଲରେ ପଶି ସ୍ନାନ କରୁଥିଲେ । ପରସ୍ପର ମଧ୍ୟରେ ହାତ ଧରାଧରି ହୋଇ ଗୀତ ଗାଉଥିଲେ, କ୍ରୀଡ଼ା କରୁଥିଲେ, ସନ୍ତରଣ କରୁଥିଲେ ଓ ପାଣିପକାପକ ହୋଇ ଆନନ୍ଦରେ ତନ୍ମୟ ହୋଇ ଯାଉଥିଲେ । ଯେତେବେଳେ ଅଧିକ ଶୀତ ହେଉଥିଲା, ସେତେବେଳେ ଉପରକୁ ଆସି ବସ୍ତ୍ର ପରଧାନ କରୁଥିଲେ ଓ ଦେବୀଙ୍କୁ ପୂଜା କର ସୂର୍ଯ୍ୟୋଦୟ ପୂର୍ବରୁ ନଜ ନଜର ଘରକୁ ଫେରି ଆସୁଥିଲେ ।

ସ୍ତ୍ରୀଲୋକମାନେ ସ୍ନାନ କରିବାପାଇଁ ପୃଥକ ଘାଟଥିଲା । ତେଣୁ ସେଠାରେ କୌଣସି ପୁରୁଷ ପଦାର୍ପଣ କରୁ ନ ଥିଲେ । ଏତେ ସକାଳୁ ସେଠାକୁ ବୟସ୍କା ଗୋପୀକାମାନେ ବି ଯାଉ ନ ଥିଲେ । ତେଣୁ ସେମାନେ ନଃସଙ୍କୋଚରେ ଖେଳ କୌତୁକ କରି ସ୍ନାନ କରୁଥିଲେ । କୁମାରବସ୍ଥାରେ ପୁଅମାନଙ୍କର ତ ପରସ୍ପର ମଧ୍ୟରେ ଶୀଲ ସଙ୍କୋଚ ରହିଥାଏ । କନ୍ତୁ ଝିଅମାନଙ୍କର ତାହା ନ ଥାଏ । ସେମାନେ ନଜ ନଜର ମନୋଗତ ଭାବକୁ ନଜ ନଜ ମଧ୍ୟରେ ବ୍ୟକ୍ତ କରିଥାଆନ୍ତି । ଏହିପରି ବିଧିବିଧାନ ପୂର୍ବକ ବ୍ରତ କରିବାରେ ସେମାନଙ୍କର ଏକ ମାସ ପୂର୍ଣ୍ଣ ହୋଇ ଆସିଲା । ସେମାନଙ୍କ ବ୍ରତରେ ଏକ ତ୍ରୁଟି ରହିଗଲା ଯେ, ସେମାନେ ପ୍ରତ୍ୟହ ଯାଇ ବରୁଣ ଦେବତାଙ୍କୁ ଅପମାନିତ କରୁଥିଲେ । ଏପରି ନିୟମ ଅଛି, ସ୍ନାନ କରିବାକୁ ଯିବା ସମୟରେ ପ୍ରଥମେ ବରୁଣ ଦେବତାଙ୍କୁ ସ୍ତୁତି କରିବାକୁ ହୁଏ । ତାଙ୍କଠାରୁ ସ୍ନାନ କରିବାର ଆଜ୍ଞା ନେବାକୁ ପଡ଼େ । ଧୀରେ ଧୀରେ ବସ୍ତ୍ର ପିନ୍ଧି ଜଲରେ ପଶିବାକୁ ହୁଏ ଓ ବୁଡ଼ ପକାଇ ବାହାରି ଆସିବାକୁ ହୁଏ । ପୁନଶ୍ଚ ଜଳର ପୂଜନ କରି ସନ୍ଧ୍ୟା ତର୍ପଣ କରିବାକୁ ହୁଏ; କନ୍ତୁ ଏମାନେ ଉଲଗ୍ନ ହୋଇ ଜଳରେ ପ୍ରବେଶ କରୁଥିଲେ । ଏହାଦ୍ୱାରା ସେମାନେ ବରୁଣ ଦେବଙ୍କୁ ଅପମାନିତ କରୁଲେ । ତେଣୁ ସେମାନଙ୍କର ବ୍ରତ ଅନୁଷ୍ଠାନ ଦୋଷଯୁକ୍ତ ଥିଲା ।

ଏହା ଶୁଣି ଶୌନକ ଚକିତ ହୋଇ ପଚାରିଲେ—"ସୂତ ! ବିଧିହୀନ କର୍ମ ତ ନିଷ୍ଫଳ ହୋଇଯାଏ ? ବିଧିହୀନ ଯଜ୍ଞକର୍ତ୍ତା ଶୀଘ୍ର ନାଶ ହୁଅନ୍ତି ? ବିଧିହୀନ ବ୍ରତ ଅନୁଷ୍ଠାନ ସବୁ ବ୍ୟର୍ଥ ହୁଏ ? ତାହାହେଲେ କ'ଣ ଏମାନଙ୍କର ବ୍ରତ ନିଷ୍ଫଳ ହେଲା ?

ସୂତ କହିଲେ—"ଭଗବନ୍ ! ଯେଉଁ ବ୍ୟକ୍ତି ସ୍ତ୍ରୀ, ଧନ, ପୁତ୍ର ତଥା ଅନ୍ୟାନ୍ୟ ସାଂସାରିକ ବସ୍ତୁପ୍ରାପ୍ତି ପାଇଁ ସକାମ କର୍ମ କରନ୍ତି, ଏପରି କର୍ମ ତ ବିଧିର ଅଧୀନ ହୋଇଥାଏ; କନ୍ତୁ ଯେଉଁ କର୍ମ କୃଷ୍ଣପ୍ରୀତ୍ୟର୍ଥ କେବଳ ଶ୍ରୀକୃଷ୍ଣଙ୍କୁ ପାଇବା ଇଚ୍ଛାରେ

କରାଯାଏ, ଏପରି ନିଷ୍କାମ କର୍ମ ଯେପରି କରାଯାଉ ନା କାହିଁକି, ତାହା କଦାପି ନିଷ୍ଫଳ ହୁଏନାହିଁ । ଶ୍ରୀକୃଷ୍ଣଙ୍କ ପ୍ରେମର ଯାଚଞ୍ଚା କରିବା, ତାଙ୍କୁ ପତିରୂପେ ବରଣ କରିବାକୁ ନିଶ୍ଚୟ କରିବା, ଏହା କୌଣସି ସାଂସାରିକ କର୍ମ ନୁହେଁ । ଏଥିରେ ଯଦି କୌଣସି ତ୍ରୁଟି ରହିଯାଏ, ତେବେ ଶ୍ୟାମସୁନ୍ଦର ତାହା ସ୍ୱୟଂ ପୂର୍ଣ୍ଣ କରିଦିଅନ୍ତି । ଶ୍ରେଷ୍ଠ ବାଳିକା ଯଦି ପିତାଙ୍କୁ ମାଳା ପିନ୍ଧାଇ ଦେବାକୁ ଯାଏ, ତାହାର ହାତ ପିତାଙ୍କ ଶିର ପର୍ଯ୍ୟନ୍ତ ପାଏନାହିଁ । ପିତା ସ୍ୱୟଂ ଶିର ନୁଆଁଇ ମାଳା ଗ୍ରହଣ କରନ୍ତି । ଶ୍ରୀକୃଷ୍ଣଙ୍କ ପାଇଁ କିଛି କରିବାକୁ ଇଚ୍ଛା କଲେ, ତାହା ସନ୍ତୋଷ ହେଉ ଅବା ଅସନ୍ତୋଷ ହେଉ ସୁବିଧା ହେଉ କିମ୍ବା ଅସୁବିଧା ହେଉ ଶେଷରେ ଶ୍ରୀକୃଷ୍ଣ ତାହା ସ୍ୱୀକାର କରି ନିଅନ୍ତି ।

ସେହି କନ୍ୟାମାନେ ପବିତ୍ର ହୃଦୟରେ ଶୁଭ ଲଗ୍ନରେ ଏକମାସ କାଳ ସ୍ନାନ ପୂଜନ କରିଥିଲେ । ଶ୍ରୀକୃଷ୍ଣ ତ ସେମାନଙ୍କ ମନ କଥା ଜାଣିଥିଲେ । ସେ ଯଦି ଚାହିଁ ଥାଆନ୍ତେ, ଯେଉଁଦିନ ସେମାନେ ସଂକଳ୍ପ କରିଥିଲେ ସେହିଦିନ ତ ସେମାନଙ୍କ ମନୋରଥ ପୂର୍ଣ୍ଣକରି ପାରିଥାଆନ୍ତେ; କିନ୍ତୁ ସେଥିରେ ଏତେଟା ସୁଖ ମିଳି ନ ଥାନ୍ତା । ଯେଉଁ ବସ୍ତୁ ଯେତେ ଅଧିକ ପ୍ରତୀକ୍ଷା ପରେ, ଅଧିକ ଉତ୍କଣ୍ଠା ପରେ ପ୍ରାପ୍ତ ହୁଏ, ସେଥିରେ ସେତେ ଅଧିକ ଆନନ୍ଦ ମିଳେ । ପୂର୍ବାନୁରାଗରେ ଯେତେ ନିଜ ପ୍ରିୟତମଙ୍କ ସ୍ମୃତି ଉତ୍କଟ ହୁଏ, ହୃଦୟ ସେତେ ସରସ ଓ କୋମଳ ହୁଏ । ନିରନ୍ତର ପ୍ରେମ କରିବାର ସ୍ମୃତି ସମସ୍ତ ଅଶୁଭ ନାଶ କରି ମନର ମଳିନ ବାସନାଗୁଡ଼ିକୁ ବାହାର କରିଦିଏ । ସେହି କନ୍ୟାମାନେ ରାତିଦିନ ଶୟନେ, ଜାଗରଣେ, ବିହରଣେ ସର୍ବଦା ଶ୍ରୀକୃଷ୍ଣଙ୍କ କଥା ଭାବୁଥିଲେ । ଏତେ ସାଧନା ପରେ ଶ୍ରୀକୃଷ୍ଣ ସେହି ସାଧନସିଦ୍ଧା ବ୍ରଜବାଳାଙ୍କ ଉପରେ କୃପା କରିବାକୁ ସ୍ଥିର କଲେ । ଯେଉଁଦିନ ବ୍ରତ ଉଦ୍‌ଯାପନ ହେବ, ସେଦିନ ଅତି ପ୍ରତ୍ୟୁଷରୁ ନିଜର କେତେକ ଅନ୍ତରଙ୍ଗ ସଖାଙ୍କୁ ନେଇ ଶ୍ୟାମସୁନ୍ଦର ସେହି ଯମୁନା ଘାଟକୁ ଗଲେ । ଗୋପକନ୍ୟାମାନଙ୍କ ମନରେ ସେଦିନ ଆନନ୍ଦର ସୀମା ନ ଥାଏ । କାରଣ ସେଦିନ ତାଙ୍କର ବ୍ରତ ପୂରଣ ହେବ । ପରଦିନଠାରୁ ଅନ୍ୟ କୌଣସି ବ୍ରତ ଆରମ୍ଭ କରିବେ । ଯେ ପର୍ଯ୍ୟନ୍ତ ଶ୍ୟାମସୁନ୍ଦର ସେମାନଙ୍କୁ ଆପଣାର କରି ନ ନେଇଛନ୍ତି, ସେ ପର୍ଯ୍ୟନ୍ତ ବ୍ରତ କରିବା ପାଇଁ ସେମାନେ ସଂକଳ୍ପବଦ୍ଧ । ଏଥିପାଇଁ ଯେତେ ଜନ୍ମ ବିତି ଯାଉଛି ଯାଉ, ସେଥିପାଇଁ ସେମାନଙ୍କର ଦୁଃଖ ନାହିଁ । ଏହି ବିଶ୍ବାସ ସେମାନଙ୍କ ମନରେ ବାରମ୍ବାର ଜାଗ୍ରତ ହେଉଥାଏ । ସବୁଦିନ ପରି ସେଦିନ ସେମାନେ କୂଳରେ ବସ୍ତ୍ର ରଖି ନଗ୍ନ ହୋଇ ଯମୁନା ଜଳରେ ପ୍ରବେଶ କଲେ ଓ ଅତି ଉଲ୍ଲାସର ସହିତ ହସି ହସି କ୍ରୀଡ଼ା କରିବାକୁ ଲାଗିଲେ ।

ଏହି ସମୟରେ ଶ୍ରୀକୃଷ୍ଣ ଲୁଚି ଲୁଚି ଯାଇ ସେମାନଙ୍କର ସମସ୍ତ ବସ୍ତ୍ର ଗୋଟାଇ ଆଣି ସେଠାରେ ଥିବା ଏକ କଦମ୍ବ ବୃକ୍ଷ ଉପରେ ଚଢ଼ିଗଲେ । ଗୋପକନ୍ୟାମାନେ ତ ଆନନ୍ଦ ବିଭୋର ହୋଇ ସ୍ନାନ କରୁଥାଆନ୍ତି । ସେମାନେ ତ ବ୍ରତ ଉଦ୍‌ଯାପନ ପାଇଁ ଆନନ୍ଦରେ

ମଜ୍ଜି ଯାଇ କ୍ରୀଡ଼ା କରୁଥାଆନ୍ତି । ଶ୍ରୀକୃଷ୍ଣ କେତେବେଳେ ସେମାନଙ୍କ ବସ୍ତ୍ର ଗୋଟାଇ ନେଇଛନ୍ତି ସେମାନେ ଜାଣନ୍ତେ ଅବା କପରି ? ଭଗବାନ ଶ୍ରୀକୃଷ୍ଣ ସେହି ବସ୍ତ୍ରକୁ ଗହଳ ପତ୍ର ଶାଖା ପ୍ରଶାଖା ବିଶିଷ୍ଟ କଦମ୍ବ ବୃକ୍ଷର ଡାଳରେ ସେମାନଙ୍କ ଶାଢ଼ୀକୁ ଲଟକାଇ ଦେଇଥାଆନ୍ତି । ସେହି ରଙ୍ଗ ବେରଙ୍ଗୀ ରେଶମୀ ଶାଢ଼ୀ ବୃକ୍ଷ ଡାଳରେ ଝୁଲୁ ହୋଇ ଅତ୍ୟନ୍ତ ସୁନ୍ଦର ଦିଶୁଥାଏ ।

ସମସ୍ତ ଗୋପବାଳକ ତଳେ ଠିଆ ହୋଇ ହସିବାକୁ ଲାଗିଲେ । ଭଗବାନଙ୍କର ତ ସହସ୍ର ସଖା ଥିଲେ; କିନ୍ତୁ ସେମାନଙ୍କ ମଧ୍ୟରେ ବାରଜଣ ପ୍ରଧାନ ସଖା ଥିଲେ । ସେମାନଙ୍କର ନାମ—ଶ୍ରୀଦାମା, ସୁଦାମା, ବସୁଦାମା, ସୁବଳ, ସୁପାର୍ଶ୍ୱ, ସୁଭଦ୍ର, ସୁନ୍ଦର, ଚନ୍ଦ୍ରଭାନୁ, ବୀରଭାନୁ, ବସୁଭାନୁ ଓ ରତ୍ନଭାନୁ ଥିଲେ । ଭଗବାନଙ୍କର କୌଣସି କଥା ଏମାନଙ୍କୁ ଅଜଣା ନ ଥିଲା । ଏମାନେ ଅନ୍ତରଙ୍ଗ ସଖା ଥିବାରୁ କାହା ସହିତ ଗୁପ୍ତ ରହିବା ଭଳି ଭଗବାନଙ୍କ ସଙ୍ଗରେ ରହୁଥିଲେ ।

ସୁଦାମା ତଳେ ଥାଇ କହିଲା—"ଆହା ! ଏ ବୃନ୍ଦାବନର ଶୋଭା କି ଅନୁପମ, ଏଠାରେ ଏକରୁ ଆରେକ ବିଚିତ୍ର ଘଟଣାମାନ ଘଟି ଯାଉଛି ।"

ଏହାଶୁଣି ବସୁଦାମା କହିଲା—"ତୁ ଏଠାରେ ଏପରି କି ବିଚିତ୍ର ଘଟଣା ଦେଖିଲୁ କରେ ?"

ଶ୍ରୀଦାମା କହିଲା—"ଆରେ, ଭାଇ ! ତୁ କ'ଣ ଦେଖିପାରୁ ନାହୁଁ ? କଦମ୍ବ ବୃକ୍ଷରେ ପୁଷ୍ପ ଓ ଫଳ ତ ସବୁଦିନ ଦେଖାଯାଏ । ଏଠାରେ ପ୍ରତି ଡାଳରେ ରେଶମୀ ଶାଢ଼ୀ ସବୁ କପରି ଝୁଲୁଛି ଦେଖିଲୁଣି ନା । ଏବେ ଆଉ ଆମକୁ କୋରସ୍ପୌଁ ଯିବାକୁ ଆବଶ୍ୟକ ପଡ଼ିବ ନାହିଁ; କିନ୍ତୁ ଏ କଦମ୍ବ ଗଛ ତ ସମସ୍ତ ଲୁଗା ରଖି ପକ୍ଷପାତିତା କରୁଛି । ଏଥିରେ ଯେତେ ବସ୍ତ୍ର ଝୁଲୁଛି, ସେ ସମସ୍ତ ବୋଧହୁଏ କୌଣସି ଲୁଗା ବାଲାର । ଯଦି ଏହା କୌଣସି ଲୋକଙ୍କ ପାଇଁ ଝୁଲୁଥାଏ, ତାହାହେଲେ ତ ଆନନ୍ଦର କଥା । ମୁଁ ତ ନିତ୍ୟ ଧୋତି ବଦଳାଇ ପିନ୍ଧିବ ।"

ଏହା ଶୁଣି ଚନ୍ଦ୍ରଭାନୁ କହିଲା—"ଅରେ ତୁ ଗୋଟାଏ ବୋକାଟାଏ । ଅରେ କଦମ୍ବ ଗଛରେ କେଉଁଠି କେବେ ବସ୍ତ୍ର ଝୁଲୁଛି । ଏହା ବୋଧହୁଏ କୌଣସି ଧୋବା ସଫା କରି ଶୁଖାଇଛି । ଦେଖ୍ ଏ ଗଛରେ ପତ୍ର ଗହଳରେ ଏକ କଳାବର୍ଣ୍ଣର ଧୋବା କପରି ବସିଛି ।"

"ଏହାଶୁଣି ସମସ୍ତେ ତାଳମାରି ଧୋବା ଧୋବା ବୋଲି ଚିତ୍କାର କରିବାକୁ ଲାଗିଲେ ।"

ଶ୍ରୀକୃଷ୍ଣ ମଧ୍ୟ ଠୋ ଠୋ କରି ତାଳି ମାରୁଥାଆନ୍ତି ଓ ବଂଶୀ ବଜାଇ ଥାଆନ୍ତି । ଗୋପବାଳକମାନଙ୍କର ହସ ଓ ମୁରଲୀର ମଧୁର ଧ୍ୱନି ଶୁଣି ଗୋପବାଳିକାଗଣଙ୍କର ଧ୍ୟାନ ସେହିଆଡ଼େ ଆକର୍ଷିତ ହେଲା । ସେମାନେ ନିଜ ନିଜର ବସ୍ତ୍ର କଦମ୍ବ ଗଛରେ ଝୁଲୁଥିବାର ଦେଖିଲେ । କୂଳ ଆଡ଼କୁ ଚାହିଁଦେଖିଲେ ଯେ, ଯେଉଁଠାରେ ବସ୍ତ୍ର ରଖିଥିଲେ ସେଠାରେ ତାହା ନାହିଁ । କଦମ୍ବ ଗଛରେଏଣେ ମାଧବ ବସି ମନ୍ଦମନ୍ଦ ହସୁଥାଆନ୍ତି ଓ ମଧୁର ସ୍ୱରରେ ମୁରଲୀ ବଜାଇ ଥାଆନ୍ତି । ଗୋପବାଳକଗଣ ହସି ହସି ବେଦମ ହେଉଥାଆନ୍ତି । ଏବେ ଗୋପବାଳାମାନେ ସମସ୍ତ ରହସ୍ୟ ବୁଝି ଯାଇଥାଆନ୍ତି ଯେ, ଶ୍ୟାମସୁନ୍ଦର ଆମ୍ଭମାନଙ୍କ ସହିତ ବିନୋଦ କରୁଅଛନ୍ତି । ସେ ଆମ୍ଭମାନଙ୍କର ମନୋଗତ ଭାବ କ'ଣ ଜାଣୁ ନାହାନ୍ତି ? ସେ କ'ଣ ଆମକୁ ଅତି ଭଲ ପାଆନ୍ତି ନାହିଁ ? ଅତ୍ୟନ୍ତ ଭଲ ପାଉ ନ ଥିଲେ କେହି କେବେ ଏତେ ସୁନ୍ଦର ଖେଳ ଖେଳି ପାରନ୍ତି ନାହିଁ । ମନରେ ଏହି ଭାବ ଆସିବାମାତେ ସମସ୍ତଙ୍କ ଲୋମ ଟାଙ୍କୁରି ଉଠିଲା ; କିନ୍ତୁ ସେମାନେ ଏବେ କରିବେ ଅବା କ'ଣ ? ସମସ୍ତେ ହସି ହସି ବଡ଼ ପାଟିରେ କହୁଥାଆନ୍ତି—"ଭଲ କଥା ହେଲା, ଏ ଆମକୁ ବିବସନା କରିଦେଲେ ।"

ଭିତରେ ତ ସେମାନେ ଆନନ୍ଦରେ ଅଧୀର ହେଉଥାଆନ୍ତି; କିନ୍ତୁ ବାହାରକୁ ପ୍ରେମର କୋପ ପ୍ରକାଶ କରି କହୁଥାଆନ୍ତି—"ଶ୍ୟାମସୁନ୍ଦର ! ଏ କଥା ଭଲ ହେଉ ନାହିଁ । ଏ ପ୍ରକାର ହାସ ପରିହାସ ଶୋଭନୀୟ ନୁହେଁ । ଆମ ବସ୍ତ୍ରଗୁଡ଼ିକୁ ଯେଉଁଠାରୁ ଉଠାଇଛ, ସେହିଠାରେ ଆଣି ରଖିଦିଅ ।"

ଶ୍ରୀକୃଷ୍ଣ ହସି ହସି କହିଲେ—"ମୁଁ ତୁମ୍ଭମାନଙ୍କର ଚାକର ନୁହେଁ ଯେ ତୁମ୍ଭମାନଙ୍କର ବୋଲମାନ ବେଠି ଖଟିବି । ଯଦି ତୁମ୍ଭମାନଙ୍କର ଲୁଗା ଆବଶ୍ୟକ ତେବେ ଏଠାକୁ ଆସି ନେଇଯାଅ ।"

ଗୋପକନ୍ୟାମାନେ କହିଲେ—"ତୁମେ ଚାକର ନୁହେଁ, ଚୋର । ଲୁଚି ଲୁଚି ଆସି ଆମ୍ଭମାନଙ୍କ ବସ୍ତ୍ର ହରଣ କରି ନେଇଛ । ଏହା ଭଲ କଥା ନୁହେଁ ।"

ଶ୍ରୀକୃଷ୍ଣ କହିଲେ—"ଏ ଯୁଗ ବଡ଼ ଖରାପ । କାହାର ଯଦି ଉପକାର କରିବ, ତାହାହେଲେ ସେ ଓଲଟା ଉପକାରୀକୁ ହିଁ ଅପରାଧୀରେ ପରିଣତ କରିବ । ଯଦି ମୁଁ ଚୋର, ତେବେ ଚୋରି କରି ତ ନେଇ ପଳାଇ ଥାଆନ୍ତି, ଏଠାରେ ବସି ବଂଶୀ ବଜାଇ ଥାଆନ୍ତି କାହିଁକି ? ମୁଁ ଭାବିଲି—"ଏଠାରେ ତୁମ ବସ୍ତ୍ରଗୁଡ଼ିକ ବାଲି ଉପରେ ଥୁଆ ହୋଇଛି, ଏତେ ସୁନ୍ଦର ବସ୍ତ୍ର ମଇଳା ହୋଇଯିବ, ତେଣୁ ଏଠାରେ ଆଣି ଯତ୍ନରେ ଝୁଲାଇ ଦେଲି । ସେଥିପାଇଁ ମୋତେ ଧନ୍ୟବାଦ ଦେବା କଥା, ତାହା ପରିବର୍ତ୍ତେ ତୁମ୍ଭେମାନେ ମୋତେ ଚୋରବୋଲି କହି ପାରିଲଣି ।"

ଗୋପକନ୍ୟାମାନେ କହିଲେ—"ଆମର ଧୂଳିରେ ରହିଲେ ଭଲ, ଯେଉଁଠି ଥିଲା ସେହିଠାରେ ଆଣି ରଖିଦିଅ ।"

ଶ୍ରୀକୃଷ୍ଣ କହିଲେ—"ମୁଁ ଯେଉଁ ବସ୍ତୁକୁ ଥରେ ଉଠାଇ ନିଏ, ପୁନଶ୍ଚ ତାହା ସେଠାରେ ସେହି ରୂପରେ ରଖେନାହିଁ । ଯାଚଞ୍ଚାକାରୀଙ୍କୁ ପ୍ରସାଦ ରୂପରେ ତାହା ପ୍ରଦାନ କରେ । ତୁମ୍ଭେମାନେ ଯଦି ପ୍ରସାଦ ଚାହଁ, ତାହାହେଲେ ମୋ' ନିକଟକୁ ଆସି ନିଜ ନିଜର ବସ୍ତ୍ରକୁ ନେଇଯାଅ ।"

ଗୋପକନ୍ୟାମାନେ କହିଲେ—"ଶ୍ୟାମସୁନ୍ଦର, ଦେଖ ! ସବୁ କଥା ଅତିମାତ୍ରା ଭଲ ନୁହେଁ । ଥଟ୍ଟାମଜା ଅତିମାତ୍ରାରେ ହୋଇଗଲା, ଏଣିକି ଆମ୍ଭମାନଙ୍କ ନେତ୍ରରୁ ଯେପରି ଅଶ୍ରୁ ବିସର୍ଜନ ନ ହୁଏ । ବହୁତ ହସଖୁସି ହୋଇଗଲା । ଏବେ ଆମ୍ଭମାନଙ୍କ ବସ୍ତ୍ର ଆମ୍ଭମାନଙ୍କୁ ଦେଇ ଦିଅ ।"

ଭଗବାନ ଗମ୍ଭୀର ହୋଇ କହିଲେ—"ହସିଲି କପରି ? ମୁଁ ତ ଆଦୌ ହସି ଜାଣେନାହିଁ । ମୁଁ ହସୁନାହିଁ । ତୁମ୍ଭମାନଙ୍କୁ ସତ କଥା କହୁଅଛି । ତୁମେ ଡେରି ନ କରି, ଅଧିକ ସମୟ ପାଣି ଭିତରେ ନ ରହି, ଏଠାକୁ ଆସି ନିଜ ନିଜର ବସ୍ତ୍ର ନେଇଯାଅ । କାରଣ ଏ ଶୀତ ଦିନ, ପାଣି ଭିତରେ ଅଧିକ ସମୟ ରହିବା ଯୋଗୁଁ ତୁମ୍ଭେମାନେ ଶୀତରେ ଥରିଲଣି, ସମସ୍ତଙ୍କର ଦାନ୍ତରେ ଦାନ୍ତ ବାଜିଲାଣି ।"

ଗୋପକନ୍ୟାମାନେ ଏଥିରେ ରାଗିଯାଇ କହିଲେ—"ଘୋର ସାଧାରଣ ସୁଧୀର ବିଚଗ୍ର ! ମିଥ୍ୟାବାଦୀ କେଉଁଠିକାର ! ଏବେ ତୁମେ ଆମ୍ଭମାନଙ୍କୁ ଆଉ ଅଧିକ ରଗାଅ ନାହିଁ । ଚୁପ୍‌ଚାପ ହୋଇ ଆମ୍ଭମାନଙ୍କ ବସ୍ତ୍ର ଦେଇଦିଅ କହୁଛୁ ।"

ଶ୍ରୀକୃଷ୍ଣ କହିଲେ—"ବ୍ରଜବାଳାଗଣ ! ତୁମେ ସବୁ ମୋ' କଥା ବିଶ୍ୱାସ କରୁନାହଁ । ତେବେ ମୋର ଏହି ସଖାମାନଙ୍କୁ ପଚାର । କିଏ କହୁ ଦେଖି ମୁଁ କେବେ ଏ ପର୍ଯ୍ୟନ୍ତ କାହାକୁ ମିଛ କଥା କହିଛି । ମୁଁ ଭୁଲ୍‌ରେ ବି କେବେ ମିଛ କହେନାହିଁ । ପୂର୍ବରୁ କେବେ କହି ନାହିଁ କି ଏବେ ବି କହୁନାହିଁ । ତୁମେ ଜଣ ଜଣ ହୋଇ ମୋ ନିକଟକୁ ଆସି ବସ୍ତ୍ର ନେଇଯାଅ । ଜଣ ଜଣ ହୋଇ ଆସିବାରେ ଯଦି ଅସୁବିଧା ହେବ ବୋଲି ଭାବୁଅଛ, ତେବେ ସମସ୍ତେ ଏକ ସଙ୍ଗେ ଆସି ବସ୍ତ୍ର ନେଇଯାଅ । ମୁଁ ଏହିଠାରେ ବସି ସମସ୍ତଙ୍କୁ ବସ୍ତ୍ର ଦେଇଦେବି; କିନ୍ତୁ ତୁମ୍ଭମାନଙ୍କୁ ପାଣିରୁ ଉଠି ଏଠାକୁ ଆସିବାକୁ ପଡ଼ିବ ।"

ସୂତ କହୁଛନ୍ତି—"ମୁନିଗଣ ! ଗୋପକୁମାରୀଗଣ ଦେଖିଲେ ଯେ ଶ୍ରୀକୃଷ୍ଣ ନିଜ କଥାରେ ଅଟଳ ରହୁଛନ୍ତି, ସେ ହସି ହସି ମନା କରି ଦେଉଛନ୍ତି । ତାଙ୍କ ବଚନରେ ଦୃଢ଼ତା ରହିଛି, ସେ କୌଣସି କଥା ଶୁଣୁନାହାନ୍ତି । ଆମ୍ଭମାନଙ୍କୁ ନଗ୍ନାବସ୍ଥାରେ ଦେଖିବାକୁ

ସ୍ନାହୁଁ ଛନ୍ତି ; କିନ୍ତୁ ଆମ୍ଭେମାନେ ସ୍ତ୍ରୀ ହୋଇ ପୁରୁଷ ସମ୍ମୁଖରେ କିପରି ଅନାବୃତ ହୋଇଯାଇ ଠିଆହୋଇ ପାରିବୁ । ତାଙ୍କ ସମ୍ମୁଖକୁ ବିନାବସ୍ତ୍ରରେ କ'ଣ ଯିବାକୁ ପଡ଼ିବ ! ଏହି ଚିନ୍ତା କରିବାମାତ୍ରେ ସେମାନଙ୍କ ଦେହ ଶିହରି ଉଠିଲା, ଲୋମ ଟାଙ୍କୁରି ଉଠିଲା । ଏଭଳି ସରସ ବିନୋଦର ସ୍ମରଣରେ ସେମାନେ ପ୍ରେମସାଗରରେ ନିମଗ୍ନ ହୋଇଗଲେ । ପରସ୍ପର ପରସ୍ପରଙ୍କୁ ଚାହିଁ ହସିବାକୁ ଲାଗିଲେ । ଜଳରେ ଅର୍ଦ୍ଧମଗ୍ନ ହୋଇ ସେହିପରି ରହିଥାଆନ୍ତି; କିନ୍ତୁ ଉପରକୁ ଉଠିବାକୁ ସେମାନଙ୍କର ସାହସ ହେଉ ନ ଥାଏ । ଭଗବାନ କ୍ରୋଧ କରୁ ନ ଥାନ୍ତି କିମ୍ବା ଗମ୍ଭୀର ହୋଇ ରହୁ ନ ଥାନ୍ତି । ହସି ହସି ପ୍ରେମପୂର୍ବକ କୃପା କଟାକ୍ଷରେ ଚାହିଁ କେବଳ ଯାହା କିଛି କହୁଥାଆନ୍ତି । ଏହାଦ୍ୱାରା ସେମାନଙ୍କ ମନ ତାଙ୍କ ଆଡ଼କୁ ଅଧିକ ଆକର୍ଷିତ ହେଉଥାଏ । ଉଭୟ ଆଡ଼ୁ ଯେତେବେଳେ ପ୍ରେମାକର୍ଷଣ ହୁଏ, ସେତେବେଳେ ସେଥିରେ ଏକ ଅଦ୍ଭୁତ ବିବଶତା ଅନୁଭବ ହେଲାଭଳି ଲାଗେ । ଏକେ ତ ଶୀତ ଦିନ ଥିଲା । କଣ୍ଠ ପର୍ଯ୍ୟନ୍ତ ବୁଡ଼ି ଗୋପକନ୍ୟାମାନେ ପାଣିରେ ଠିଆ ହୋଇଥିଲେ । ଶୀତକୁ ଜଳ ଉପରକୁ ବାହାର କରି ପାରୁ ନ ଥିଲେ । କେବଳ ସେମାନଙ୍କର କେଶପାଶ ଓ କମଳ ଭଳି ପ୍ରସ୍ଫୁଟିତ ମୁଖମଣ୍ଡଳ ହିଁ ବାହାରକୁ ଦେଖା ଯାଉଥିଲା । ସତେ ଯେପରି କମଳ ଉପରେ କୃଷ୍ଣଶୈବାଳ ଲହଡ଼ି ଖେଳୁଥିଲା । ସେମାନେ ଥରି ଥରି ଶ୍ରୀକୃଷ୍ଣଙ୍କୁ ଅଉ କିଛି କହିବାକୁ ଉଦ୍ୟତ ହେଉଥିଲେ ।''

## ଛପ୍‌ପୟ

ସବ ବୋଲ ବ୍ରଜବାଲ—ଲାଲ ମତ ପାପ କମାଓ ।
ହେଂ ହମ ନଙ୍ଗୀ ଜାଇ ନ ଏସୀ ହୁଁସୀ ଉଡ଼ାଓ ॥
କଁପତ ନୀରମହଁ ଖଡ଼ୀ ଦୟା ହମ ସବପେ କୀଜେ ।
ଉଭରି କଦବତେଁ କୂଁବର ବସନ ହମ ସବକେ ଦିଜେ ॥
କହେଂ କୃଷ୍ଣ-ଜଲତେଂ ନିକରି, ଅପନେ ଅପନେ ଲେଉ ପଟ ।
ସୁମୁଖି ! ସୁନହୁ ସାଖୀ ସଖା, କରହୁଁ କବହୁଁ ନହିଁ ଛଲ କପଟ ॥



# ବ୍ରଜବାଳାଙ୍କ ବ୍ରତର ସଫଳତା

ଦୃଢ଼ଂ ପ୍ରଲବ୍ଧାସ୍ତ୍ରପୟା ଚ ହାପିତାଃ
ପ୍ରସ୍ତୋଭିତାଃ କ୍ରୀଡ଼ନବଚ୍ଚ କାରିତାଃ ।

ବସ୍ତ୍ରାଣି ଚୈବାପହୃତାନ୍ୟଥାପ୍ୟମୁମ୍
ତା ନାଭ୍ୟସୂୟନ୍ ପ୍ରିୟସଂଗନିର୍ବୃତାଃ ॥

(ଶ୍ରୀ ଭା ୧୦ସ୍କ. ୨୨ଅ, ୨୨ ଶ୍ଳୋ)

## ଛପ୍‌ପୟ

ସୁନୀ ଶ୍ୟାମକୀ ସରସ ରହସମୟ ଅନୁପମ ବାନୀ ।
ଏକ-ଏକକୀ ଓର କରଖି ମନମହଁ ମୁସକାନୀ ॥
ପୁନ ବୋଲ—ଘନଶ୍ୟାମ ! କପଟ ହମ ଦାସୀ ତୁମରୀ ।
ଅରପନ ସରବସୁ କରେଁ ଲଜ ଲେଓ ମତ ହମରୀ ॥
କହହିଁ ଶ୍ୟାମ—ସୁନ୍ଦର ! ସୁନହୁ, ଯଦ ଦାସୀ ତୋ ଚୈପୀ ଂଭ୍ରବୋ ।
ଜୈସୋ ଜୋ କଛୁ କହହୁଁ ହୈାଁ, ତୁମ ତୈସୋ ନିର୍ଭୟ କବୋ ॥

ଭଗବାନଙ୍କ ପ୍ରାପ୍ତିରେ ଲଜ୍ଜା, ସଙ୍କୋଚ ଓ ଭୟ ଏହାହିଁ ଅନ୍ତରାୟ ଅଟେ। ଜୀବ ଯେ ପର୍ଯ୍ୟନ୍ତ ଲୋକଲଜ୍ଜା ଓ ସାଂସାରିକ ସଙ୍କୋଚର ଅଧୀନ ହୋଇଥାଏ, ସେ ପର୍ଯ୍ୟନ୍ତ ତାକୁ ଏହି ଚିନ୍ତା ବ୍ୟଥିତ କରେ ଯେ—"କାଲେ କିଏ କ'ଣ କହିଦେବ କି ?" ସେ ପର୍ଯ୍ୟନ୍ତ ତାକୁ ଭଗବତ୍ ପ୍ରାପ୍ତି ହୁଏ ନାହିଁ । ଯେ କୌଣସି ଭେଦଭାବ ରଖି ଭଗବାନଙ୍କ ଶରଣ ନିଏ, ଭଗବାନ ତାକୁ ସମ୍ପୂର୍ଣ୍ଣ ଆପଣାର କରନ୍ତି ନାହିଁ । ଯାହାଙ୍କ ମନରେ କୌଣସି ଦୁର୍ଭାବନା ସ୍ଥାନ ପାଇଥାଏ, ଭଗବାନ ସେଠାରେ କିପରି ରହିବେ ? ଯେ ନିଷ୍କପଟ ଭାବରେ ସର୍ବାତ୍ମନ ଶ୍ୟାମସୁନ୍ଦରଙ୍କ ଶରଣ ନିଏ, ନିଜକୁ ସମ୍ପୂର୍ଣ୍ଣରୂପେ ସମର୍ପଣ କରିଦିଏ, ଭଗବାନ ତା'ଇଚ୍ଛା ପୂର୍ଣ୍ଣକରନ୍ତି । ସେ ଅଭିଷ୍ଟବର ଭଗବାନଙ୍କଠାରୁ ପ୍ରାପ୍ତହୁଏ । ଭଗବାନ ତାକୁ ଆପଣାର କରିନିଅନ୍ତି ଓ ନିଜର ମଧୁରାତି ମଧୁରଲୀଳାରେ ତାଙ୍କୁ ସମ୍ମିଳିତ କରି ନିଅନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ଶ୍ରୀକୃଷ୍ଣଲୀଳା ପ୍ରସଙ୍ଗରେ ମୁଁ ଗୋଟିଏ କଥାକୁ ବାରମ୍ବାର କହିବ । ତାହାକୁ ଆପଣମାନେ ପୁନରୁକ୍ତି ଦୋଷଯୁକ୍ତ ବୋଲି ଭାବିବେ ନାହିଁ । ଗୋପାଙ୍ଗନାମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ ଲୀଳାପ୍ରସଙ୍ଗ ଅତ୍ୟନ୍ତ ସରସ । ଏଥିରେ ପ୍ରାକୃତ କାମର ପ୍ରଶ୍ନ ବି ନାହିଁ । ଏଥିପାଇଁ ମୋତେ ବାରମ୍ବାର ଚେତାବନୀ ଦେବାର ଆବଶ୍ୟକତା ପ୍ରତୀତ ହେଉଛି । ବାହାରୁ ଦେଖିଲେ ତ ଏ ପ୍ରସଙ୍ଗ ସାଧାରଣ ସ୍ତ୍ରୀ-ପୁରୁଷଙ୍କ ପ୍ରେମ ପ୍ରସଙ୍ଗ ଭଳି ପ୍ରତୀତ ହୁଏ । କିନ୍ତୁ ଏହା ତ ଭଗବାନଙ୍କର ପ୍ରକୃତ ବହିର୍ଭୂତ ଦିବ୍ୟ ଚିନ୍ମୟୀ ଲୀଳା ଅଟେ । ଏହା ତ ଆତ୍ମା ଓ ବୃତ୍ତି ସମୂହର କ୍ରୀଡ଼ା । ଆତ୍ମାରୂପୀ ଶ୍ରୀକୃଷ୍ଣ ନିଜେ ନିଜ ସହିତ

ଯେତେବେଳେ କ୍ରୀଡ଼ା କରନ୍ତି, ସେତେବେଳେ ତାକୁ ଆତ୍ମକ୍ରୀଡ଼ା ବୋଲି କୁହାଯାଏ । ଯେତେବେଳେ ସେ ନିଜର ଅଭିନ୍ନ ସ୍ୱରୂପରେ ରମଣ କରନ୍ତି, ସେତେବେଳେ ତାକୁ ଆତ୍ମରତି ବୋଲି କୁହାଯାଏ । ସାଧକ ଯେତେବେଳେ ନିଜଠାରେ ତାଙ୍କ ସ୍ପର୍ଶ ଲାଭକରେ, ସେତେବେଳେ ସେ କୃତାର୍ଥ ହୋଇଯାଏ । ତେଣୁ ଏହା ଅନନ୍ୟ ସାଧନା ପ୍ରକୃତ ଅତି ସରସ ଲୀଳା ।

ଶ୍ରୀକୃଷ୍ଣ ସେମାନଙ୍କର ସର୍ବସ୍ୱ ଅପହରଣ କରି କଦମ୍ବ ବୃକ୍ଷରେ ବସି ହସୁଥାଆନ୍ତି । ଗୋପକନ୍ୟାମାନେ ପାଣି ଭିତରେ ରହି ଆନନ୍ଦରେ ବହ୍ୱଳ ହେଉଥାଆନ୍ତି । କିନ୍ତୁ ଲଜ୍ଜାବଶତଃ ସେମାନେ ଜଳ ମଧ୍ୟରୁ ଉପରକୁ ବାହାରି ଆସିବାକୁ ଚାହୁଁ ନ ଥାନ୍ତି । ଶ୍ରୀକୃଷ୍ଣ ସେମାନଙ୍କର ଏହି ଲଜ୍ଜା ଦୂର କରିବା ପାଇଁ ତତ୍ପର । ସେ ମଝିରେ ବ୍ୟବଧାନ ରଖିବାକୁ ଚାହାନ୍ତି ନାହିଁ । ଗୋପକନ୍ୟାମାନେ ଅତ୍ୟନ୍ତ ପ୍ରସନ୍ନ ଥିଲେ ଓ ପ୍ରେମ ସାଗରରେ ବୁଡ଼ି ରହିଥିଲେ । ସେମାନେ ବିନୟ ସହକାରେ କହିଲେ—"ପ୍ରାଣବଲ୍ଲଭ ! ଦେଖ, ଏପରି ଅନ୍ୟାୟ କର ନାହିଁ । ତୁମେ ଆମ୍ଭମାନଙ୍କୁ ଯଦି ଏପରି ଉଲଗ୍ନ ଅବସ୍ଥାରେ ରଖିବ, ତେବେ ତୁମକୁ କଣ ମିଳିବ ? ଏ କଥା ତୁମପକ୍ଷେ ଶୋଭନୀୟ ନୁହେଁ । ତୁମେ ବ୍ରଜରାଜ ନନ୍ଦନନ୍ଦନ, ତୁମର ଯଶ କୀର୍ତ୍ତି ତ୍ରିପୁର ବ୍ୟାପ୍ତ । ତୁମ ମନରେ ଟିକିଏ ହେଲେ ଦୟା ଆସୁ ନାହିଁ ? ଦେଖ ଶୀତରେ ଆମ୍ଭମାନଙ୍କର ଦେହ କିପରି ଥରୁଛି ।"

ଭଗବାନ କହିଲେ—"ତୁମ୍ଭେମାନେ ଇଚ୍ଛାକରି ନିଜେ ନିଜେ କମ୍ପୁଅଛ, ମୁଁ ବସ୍ତ୍ର ଦେବାକୁ ହେଲେ ମନା କରନ୍ତି, ତେବେ ତୁମ୍ଭମାନଙ୍କୁ ଏହା ଦୋଷ ଦେବାକୁ ହୁଅନ୍ତା । ମୁଁ ତ ତୁମ୍ଭମାନଙ୍କୁ ବସ୍ତ୍ର ଦେବାକୁ ପ୍ରସ୍ତୁତ ଅଛି । କିନ୍ତୁ ତୁମ୍ଭେମାନେ ମୋ ନିକଟକୁ ଆସିବାକୁ ଚାହୁଁ ନାହଁ । ତୃଷାର୍ତ୍ତ କୂପ ନିକଟକୁ ଯାଏ, କୂପ କଦାପି ତୃଷାର୍ତ୍ତ ନିକଟକୁ ଯାଇ ବଳେ ବଳେ ପାଣି ପିଇବାକୁ କହେ ନାହିଁ ।"

ଏହି କନ୍ୟାମାନେ ଚତୁର୍ବର୍ଣ୍ଣର ଥିଲେ । ଶୂଦ୍ର କାହାରିକୁ ବଶ କରିବାକୁ ଚାହିଁଲେ ସେବାଦ୍ୱାରା ବଶ କରେ, ବିନୟ ଦ୍ୱାରା ବଶ କରେ ଓ ଦାସବୃତ୍ତିଦ୍ୱାରା ବଶ କରିପାରେ । ତେଣୁ ଯେଉଁମାନେ ଶୂଦ୍ରକନ୍ୟା ଥିଲେ, ସେମାନେ କୃଷ୍ଣଙ୍କୁ ବସ୍ତ୍ର ପ୍ରାପ୍ତି ଆଶାରେ କହିଲେ— "ଶ୍ୟାମସୁନ୍ଦର ! ଦେଖ, ଆମେ ସବୁ ତୁମର ଦାସୀ ଅଟୁଁ । ଦୟା କର ଆମ ବସ୍ତ୍ରକୁ ଆମକୁ ଦେଇ ଦିଅ । ଆଉ ଅଧିକ କନ୍ଦାଅ ନାହିଁ ।"

ଏହା ଶୁଣି ଶ୍ୟାମସୁନ୍ଦର କିଛି କହିଲେ ନାହିଁ କେବଳ ନିଷେଧ ସଙ୍କେତ ଦେଇ ଶିର ହଲାଇ ଦେଲେ । ସେମାନଙ୍କ ଭିତରେ ଯେଉଁମାନେ ବୈଶ୍ୟ କନ୍ୟା ଥିଲେ, ସେମାନେ ଅନୁନୟ ବିନୟ କରିବାକୁ ଲାଗିଲେ । ବର୍ଣ୍ଣାଶ୍ରମୀ ପ୍ରଜାମାନଙ୍କ ମଧ୍ୟରେ ବୈଶ୍ୟଙ୍କୁ ସର୍ବଶ୍ରେଷ୍ଠ ପ୍ରଜା ବୋଲି କୁହାଯାଏ । ସେଥିପାଇଁ ସେମାନଙ୍କ ସଂଜ୍ଞା ଶ୍ରେଷ୍ଠ ବା ସେଠ

ରଖାଯାଇଥାଏ । ବର୍ଣ୍ଣାଶ୍ରମ ଧର୍ମରେ କ୍ଷତ୍ରିୟ ତ ଜନ୍ମରୁ ଶାସକ ଶ୍ରେଣୀଭୁକ୍ତ । ବ୍ରାହ୍ମଣମାନେ ବର୍ଣ୍ଣାଶ୍ରମରେ ପୂଜ୍ୟ ହୋଇଥିବାରୁ ସେମାନଙ୍କୁ ପ୍ରଜା ମଧ୍ୟରେ ଗଣନା କରାଯାଏ ନାହିଁ । ପ୍ରଜା କୁହାଯାଇଥିବା ବୈଶ୍ୟ ଓ ଶୂଦ୍ର ଏ ଦୁଇ ବର୍ଣ୍ଣାଶ୍ରମୀ ରହିଲେ । ଉଭୟଙ୍କ ମଧ୍ୟରେ ବୈଶ୍ୟ ଶ୍ରେଷ୍ଠ । ଏହାଙ୍କର ମୁଖ୍ୟ କାର୍ଯ୍ୟ ବ୍ୟାପାର ବାଣିଜ୍ୟ । କ୍ରୋଧ କଲେ ବ୍ୟାପାର ବିଗିଡ଼ି ଯାଏ । ସେଥିପାଇଁ ବ୍ୟାପାରୀ କ୍ରୋଧ କରିବା ଉଚିତ ନୁହେଁ । ଯାହାଙ୍କ ଦ୍ୱାରା ନିଜର ସ୍ୱାର୍ଥ ସାଧିତ ହେବ ତାଙ୍କ ପ୍ରତି ଅନୁକୂଳ ହେବା ଉଚିତ୍, ମଧୁର ବଚନ କହି ତାଙ୍କଠାରୁ ନିଜ କାର୍ଯ୍ୟ ହାସଲ କରିନେବା ଉଚିତ୍ । ଏଥିପାଇଁ କଥିତ ଅଛି—"ବନିୟା ଗୁଡ଼ ନ ଦେଗା ଗୁଡ଼ ସେ ମିଠୀ ବାତ୍ କହ ଦେଗା ।" ତେଣୁ ଯେଉଁମାନେ ବୈଶ୍ୟ କନ୍ୟା ଥିଲେ, ସେମାନେ କହିବାକୁ ଲାଗିଲେ—"ବ୍ରଜଚନ୍ଦ୍ର ! ଦେଖନ୍ତୁ, ଯଦି ଆପଣ ଆମ୍ଭମାନଙ୍କ ବସ୍ତ୍ର ଦେଇ ଦିଅନ୍ତି, ତାହାହେଲେ ଆପଣ ଯାହା କହିବେ, ଆମ୍ଭେମାନେ ତାହା କରିବୁ ।"

ଶ୍ରୀକୃଷ୍ଣ ଏହା ଶୁଣି ହସି ଉଠିଲେ; କିନ୍ତୁ କିଛି କହିଲେ ନାହିଁ । ତାଙ୍କ ହସିବାର ଭାବ ଥିଲା, ତୁମ୍ଭେମାନେ ଯେତେବେଳେ ମୋର ସବୁ କଥା ମାନିବାକୁ ତତ୍ପର, ତାହାହେଲେ ଜଳରୁ ବାହାରି ଆସୁ ନାହଁ କାହିଁକି ?"

ସେହି କନ୍ୟାମାନଙ୍କ ମଧ୍ୟରେ ଯେଉଁମାନେ କ୍ଷତ୍ରିୟ କନ୍ୟା ଥିଲେ, ସେମାନଙ୍କର ଆଖି ଲାଲ ହୋଇଗଲା । କ୍ଷତ୍ରିୟ ଜାତିର ସ୍ୱଭାବ ହେଉଛି, ସେମାନେ ନିଜର ପ୍ରତିକୂଳ ଆଚରଣ ଦେଖି ପାରନ୍ତି ନାହିଁ । ତେଣୁ ସେମାନେ କହିବାକୁ ଲାଗିଲେ—"ଦେଖ, ଶ୍ୟାମସୁନ୍ଦର ! ଏହା ଭଲ କଥା ହେଉନାହିଁ । ଆମ୍ଭମାନଙ୍କର ବସ୍ତ୍ର ଯେଉଁଠାରେ ଥିଲା, ଆପଣ ସେହିଠାରେ ସିଧା ଆଣି ରଖି ଦିଅନ୍ତୁ । ଏବେ ଆମେ ବିନମ୍ର ପୂର୍ବକ ଏହା ସଫା ସଫା କହି ଦେଉଛୁ । ଯଦି ଆପଣ ଭଲରେ ନ ଶୁଣନ୍ତି, ତାହାହେଲେ ଆମେ ଯାଇ ଆପଣଙ୍କ ବାପାଙ୍କୁ ସବୁ କଥା କହି ଦେବୁ । ସେ ଯଦି ନ ଶୁଣନ୍ତି, ତେବେ ସେ ଯାହାଙ୍କ ଅଧୀନ, ସେହି ମହାରାଜ କଂସଙ୍କ ଆଗରେ ଏ କଥା ଜଣାଇବୁ । ସେତେବେଳେ ଆପଣଙ୍କର ସବୁ ଔଦ୍ଧତ୍ୟପୂର୍ଣ୍ଣ ଛାଡ଼ିଯିବ ।"

ଶ୍ୟାମସୁନ୍ଦର ହସି ହସି କହିଲେ—"ଏ ଜଳରେ ତୁମ୍ଭେମାନେ ଥିବା ଅବସ୍ଥାରେ ଏଠାକୁ ମୋର ବାପା କିମ୍ବା କଂସ ରାଜା ତୁମ୍ଭମାନଙ୍କୁ ପଚାରିବାକୁ ଆସିବେ ନାହିଁ । ତୁମ୍ଭେମାନେ ଗଲେ ତ ତାଙ୍କ ପାଖକୁ ପୁଣି ଯିବ, ତେଣୁ ଏତେ ଦୂର ଯାଇ ଲାଭ କଣ ? ମୁଁ ତ ବସ୍ତ୍ର ଦେବାକୁ ମନା କରୁ ନାହିଁ । ଯେ ପର୍ଯ୍ୟନ୍ତ ତୁମ୍ଭେମାନେ ମୋର ଅତି ନିକଟକୁ ନ ଆସିବ, ସେ ପର୍ଯ୍ୟନ୍ତ ତୁମ୍ଭମାନଙ୍କୁ ପ୍ରସାଦୀ ବସ୍ତ୍ର ପ୍ରାପ୍ତ ହୋଇ ପାରିବ ନାହିଁ ।"

ସେମାନଙ୍କ ମଧ୍ୟରେ ଯେଉଁମାନେ ବ୍ରାହ୍ମଣ କନ୍ୟା ଥିଲେ, ସେମାନେ ଧର୍ମଭୟ ଦେଖାଇ କହିବାକୁ ଲାଗିଲେ । ସାଧାରଣତଃ ଯାହାଦ୍ୱାରା କୌଣସି କାର୍ଯ୍ୟାନୁଷ୍ଠାନ

କରାଇବାକୁ ପଡ଼େ ବ୍ରାହ୍ମଣମାନେ ତାଙ୍କୁ ଧର୍ମଭୟ ଦେଖାନ୍ତି । କେହି ଯଦି ଅନ୍ୟାୟ କରେ, ତାହାହେଲେ ତାକୁ ଧର୍ମଦ୍ୱାରା ଦେଇ ସେଥିରୁ ନିବୃତ୍ତ କରନ୍ତି । ସେମାନଙ୍କର ଆଜୀବିକା କେବଳ ଧର୍ମ ଉପରେ ପ୍ରତିଷ୍ଠିତ । ତେଣୁ ବ୍ରାହ୍ମଣ କନ୍ୟାମାନେ କହିଲେ—"ହେ ନନ୍ଦନନ୍ଦନ ! ତୁମେ ତ ଧର୍ମ କ'ଣ ତାହା ଭଲଭାବେ ଜାଣ । ଏବେ ତୁମେ ଯାହା କରୁଛ, ତାହା ଅଧର୍ମ । ନଗ୍ନ ସ୍ତ୍ରୀ ଲୋକମାନଙ୍କୁ ଦର୍ଶନ କରିବା ନିଷେଧ । ତେଣୁ ତୁମେ ଧର୍ମର ମର୍ଯ୍ୟାଦାକୁ ଛିନ୍ନ ଭିନ୍ନ ନ କରି ଆମ୍ଭମାନଙ୍କର ବସ୍ତ୍ର ଆମ୍ଭମାନଙ୍କୁ ଦେଇ ଦିଅ । ଆମ୍ଭେମାନେ ତ ତୁମର ଅଧୀନ ହୋଇ ଯାଇଛୁ । ଆମ୍ଭେମାନେ ତ ତୁମ କିଂକରୀ ଅଟୁ । ତୁମ ସେବା ପ୍ରାପ୍ତ ହେବାପାଇଁ ତ ଆମ୍ଭେମାନେ ପୂଜାର୍ଚ୍ଚନା କରୁଅଛୁ ।

ଏହା ଶୁଣି ନନ୍ଦନନ୍ଦନ କହିଲେ—"ଅଚ୍ଛା ତୁମ୍ଭେମାନେ ଯଦି ମୋର ଅଧୀନ, ମୋର ଦାସୀ ଓ ମୋ ଆଜ୍ଞା ପାଳନ କରିବା ପାଇଁ ତତ୍ପର, ତାହାହେଲେ ମୁଁ ଆଜ୍ଞା ଦେଉଛି, ମୋ ନିକଟକୁ ଆସି ନିଜ ନିଜର ବସ୍ତ୍ର ନେଇ ଯାଅ ।"

ଏବେ କୁମାରୀମାନଙ୍କର ଅଉ ଉପାୟ କ'ଣ ? ଏଣେ ଶୀତରେ ସେମାନଙ୍କ ଦେହ ଥର ଥର ହୋଇ କମ୍ପୁଛି, ତେଣେ ସୂର୍ଯ୍ୟଦେବ ନିଜର ପ୍ରିୟା ପ୍ରାତଃକାଳୀନ ସନ୍ଧ୍ୟାର ଅଞ୍ଚଳ ମଧ୍ୟରୁ ବାହାରି ଆସିବାର ଉପକ୍ରମ କରୁଛନ୍ତି । କନ୍ୟାମାନେ ଚିନ୍ତା କଲେ— "ବିଳମ୍ବ ହେଲେ ସବୁ ଗୁଡ଼ ଗୋବର ହୋଇଯିବ । ଏବେ ଶ୍ରୀକୃଷ୍ଣଙ୍କ କଥା ମାନିବା । ଏହା ଚିନ୍ତା କରି ସେମାନେ ନିଜ ନିଜ ହାତରେ ଲଜ୍ଜା ନିବାରଣ କରି ଜଳ ମଧ୍ୟରୁ ବାହାରି ଆସିଲେ ଓ କଦମ୍ବ ମୂଳରେ ଠିଆ ହୋଇ କହିଲେ—"ଶ୍ୟାମସୁନ୍ଦର ! ଏବେ ବହୁତ ହୋଇଗଲା, ଏବେ ଅମ୍ଭମାନଙ୍କ ବସ୍ତ୍ର ଦେଇଦିଅ । ଆମ୍ଭେମାନେ ତୁମ ଆଜ୍ଞା ପାଳନ କଲୁ ।"

ନିକଟରେ ଯେଉଁ ସଖାମାନେ ଠିଆ ହୋଇଥିଲେ, ଭଗବାନ୍ ସେମାନଙ୍କୁ କହିଲେ—"ଦେଖ, ଏମାନଙ୍କର ଯେଉଁ ନୈବେଦ୍ୟ ରଖା ଯାଇଛି, ତାହା ନେଇ ଏକାନ୍ତରେ ଭୋଗ ଲଗାଅ ।"

ଗୋପବାଳକମାନେ କହିଲେ—"ହଉ ଭାଇ, ଆମ୍ଭେମାନେ ଯାଉଛୁ, ତୁ ତୋ କାମ କର । ଏହା କହି ଗୋପବାଳକମାନେ ଦୂରକୁ ଚାଲିଗଲେ ।"

ଭଗବାନ ସେମାନଙ୍କର ଶୁଦ୍ଧ ଭାବ ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବୃକ୍ଷ ଶାଖାମାନଙ୍କରୁ ବସ୍ତ୍ରବସ୍ତ୍ର ଆଣି ନିଜ କାନ୍ଧ ଉପରେ ରଖିଲେ ।

କନ୍ୟାମାନେ କହିଲେ—"ହାୟ ! ତୁମେ କଣ କଲ ଶ୍ୟାମସୁନ୍ଦର ! ସ୍ତ୍ରୀ ଲୋକ-ମାନଙ୍କର ପାଲଟା ଲୁଗାକୁ ନେଇ ନିଜ କାନ୍ଧ ଉପରେ ରଖିଲ ? କି ଅନ୍ୟାୟ କଥା ।"

ଭଗବାନ କହିଲେ—"ଯେ ମୋର ନିଜର ହୋଇ ଯାଏ, ତାଙ୍କଠାରେ ସ୍ତ୍ରୀ-ପୁରୁଷ ଭେଦ ମୁଁ ଦେଖେ ନାହିଁ । ଏତ ବସ୍ତ୍ର କଣ ମୁଁ ସେମାନଙ୍କର ଚରଣ ଧୂଳିକୁ ନେଇ ନେତ୍ରରେ ଅଞ୍ଜନ କରି ଲଗାଏଁ ।"

ଗୋପବାଳଗଣ ତ ଏ ପକ୍‌କା ପ୍ରେମିକଙ୍କର ମଧୁର ବଚନ ଶୁଣି ଶୀହରି ଉଠିଲେ । ସେମାନେ ଗଦ୍‌ଗଦ କଣ୍ଠରେ କହିଲେ—"ପ୍ରାଣବଲ୍ଲଭ ! ଆଉ ଆମ୍ଭମାନଙ୍କୁ ଅଧିକ ଲଜ୍ଜିତ କର ନାହିଁ । ଆମ୍ଭମାନଙ୍କ ବସ୍ତ୍ର ଆମ୍ଭମାନଙ୍କୁ ଦେଇ ଦିଅ ।"

ଭଗବାନ ମନ୍ଦ ମନ୍ଦ ହସି କହିଲେ—"ଦେଇ ତ ଦେବି; କିନ୍ତୁ ଏବେ ମଧ୍ୟ ଗୋଟିଏ ତ୍ରୁଟି ରହି ଯାଇଛି । ଗୋପକନ୍ୟାମାନେ ପଚାରିଲେ—"ତାହା ପୁଣି କ'ଣ ?"

ଭଗବାନ କହିଲେ—"ତୁମ୍ଭମାନଙ୍କର ସବୁଠାରୁ ଗୋଟିଏ ବଡ଼ ଅପରାଧ ହୋଇଗଲା । ତୁମ୍ଭମାନଙ୍କର ଏତେ ଦିନର ବ୍ରତ ବୃଥା ହୋଇଗଲା । ଜଳରେ ବରୁଣ ଦେବତା ରହନ୍ତି । ତେଣୁ ସେଥିରେ ଉଲଗ୍ନ ହୋଇ ଗାଧୋଇବା ନିଷେଧ । ଏବେ ତ ଉଲଗ୍ନ ହୋଇ ଗାଧୋଇବା ଉଚିତ୍ ନୁହେଁ । ଦ୍ୱିତୀୟରେ ତୁମ୍ଭେମାନେ ବ୍ରତ ଅନୁଷ୍ଠାନ କରିଛ । ତୁମ୍ଭେମାନେ ମାସ ସାରା ଉଲଗ୍ନ ହୋଇ ସ୍ନାନ କରିଥିବାରୁ ବରୁଣ ଦେବଙ୍କ ନିକଟରେ ତୁମ୍ଭେମାନେ ଘୋର ଅପରାଧ କରିଅଛ । ସେଥିପାଇଁ ତ ତୁମ୍ଭେମାନେ ପ୍ରାୟଶ୍ଚିତ୍ତ କରି ନାହିଁ ?"

ଏ କଥା ଶୁଣି କନ୍ୟାମାନେ ଡରିଗଲେ । ସେମାନେ ତ ସହଜେ ଅତ୍ୟନ୍ତ ଧର୍ମଭୀରୁ ଥିଲେ । ସେମାନଙ୍କର ଏ କଥା ଉପରେ ଆଦୌ ଧ୍ୟାନ ଦେଇ ନ ଥିଲେ । ସେମାନେ ଚିନ୍ତିତ ହୋଇ କହିଲେ—"ହଁ ପ୍ରାଣବଲ୍ଲଭ ! ଆମ୍ଭେମାନେ ବଡ଼ ଅପରାଧ କରିଛୁ । କିନ୍ତୁ ଆମ୍ଭେମାନେ ଜାଣିଶୁଣି ଏହା କରି ନାହୁଁ । ନ ଜାଣି ଏ ଅପରାଧ କରି ପକାଇଛୁ । ଏଥିପାଇଁ କଣ ପ୍ରାୟଶ୍ଚିତ୍ତ କରିବାକୁ ହେବ ? ଆପଣ ତ ସର୍ବଜ୍ଞ ଅଟନ୍ତି, ଆମ୍ଭମାନଙ୍କୁ କି ପ୍ରାୟଶ୍ଚିତ୍ତ କରିବାକୁ ହେବ କହନ୍ତୁ ।"

ଭଗବାନ୍ କହିଲେ—"ଦେଖ, ପାପ ଦୁଇ ପ୍ରକାର ହୋଇଥାଏ । ଗୋଟିଏ ଶୁଷ୍କ ଓ ଅନ୍ୟଟି ଆର୍ଦ୍ର । ଯେ ଜାଣିଶୁଣି ନିଜର କାମନା ଚରିତାର୍ଥ କରିବାକୁ ପାପ କରେ, ତାହା ଆର୍ଦ୍ର ପାପ । ତହିଁରେ ମଧ୍ୟ ଶ୍ରେଷ୍ଠ ବଡ଼ ଭେଦ ଅଛି । ବଡ଼ ପାପ ପାଇଁ ଗରମ (ଆଉଟା) କାଚ ପିଇ ପ୍ରାଣତ୍ୟାଗ କରିବା, ପର୍ବତ ଉପରୁ ଡେଇଁବା, ଅଗ୍ନିରେ ଝାସ ଦେବା ଓ ଉପବାସ କରି ପ୍ରାଣ ଛାଡ଼ିବା ଏହି ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ । କମ୍ ପାପ ପାଇଁ କୃଚ୍ଛ୍ର ଚାନ୍ଦ୍ରାୟଣାଦି ବ୍ରତ, ଜପ, ତପ, ଅନୁଷ୍ଠାନ ଆଦି କରାଯିବାର ବିଧି ଅଛି । ଅଜ୍ଞାନରେ ତଥା ନ ଜାଣି ଯେଉଁ ପାପ କରାଯାଏ, ତାହା ହେଉଛି ଶୁଷ୍କ ପାପ । ତାହା ପାଇଁ ମଧ୍ୟ କେତେକ ପ୍ରାୟଶ୍ଚିତ୍ତର ବିଧାନ ଅଛି । ଯଥା—କେହି କୌଣସି ନ ଦେଖିବା ବସ୍ତୁକୁ ଦେଖି ଦେଲା, ନ ଛୁଇଁବା ବସ୍ତୁକୁ ଛୁଇଁ ଦେଲା, ସେଥିପାଇଁ ସଚୈଲ ସ୍ନାନ (ବସ୍ତ୍ର ପରିଧାନ କରି ସ୍ନାନ କରିବା) କିମ୍ବା ସୂର୍ଯ୍ୟଦେବଙ୍କୁ ଚାହିଁ ତାଙ୍କୁ ପ୍ରଣାମ କରିବା । ଏତିକି ମାତ୍ର ପ୍ରାୟଶ୍ଚିତ୍ତ ପର୍ଯ୍ୟାପ୍ତ ଅଟେ । ମୁଖ୍ୟ ପ୍ରାୟଶ୍ଚିତ୍ତ ତ ହେଉଛି ପଶ୍ଚାତ୍ତାପ । ପାପ କରି ଯେ ଅନୁତାପ ନ କରିଛି, ତାହାର ସମସ୍ତ ପ୍ରକାର ପ୍ରାୟଶ୍ଚିତ୍ତ ବ୍ୟର୍ଥ । କିନ୍ତୁ ଯେ ପାପ କଲାପରେ ପଶ୍ଚାତ୍ତାପ କରେ, ଯାହାର ମନ ସନ୍ତାପିତ ହୁଏ, ତାହା ହିଁ ପଶ୍ଚାତ୍ତାପ ବା ଅନୁତାପ । ଯାହାର ପାପ କରିବା ସ୍ୱଭାବ,

ସେ ପୁରୁଷ ହେଉ ଅବା ସ୍ତ୍ରୀ ହେଉ, ସେ ନିତ୍ୟ ପାପ କରୁଥିଲେ ବି ଆଦୌ ପଶ୍ଚାତାପ କରେ ନାହିଁ । ତାହାର ପ୍ରାୟଶ୍ଚିତ୍ତ ତ ଯମରାଜ କରାଇବେ । ନରକ କୁଣ୍ଡରେ ତାକୁ ପକାଇ ତ ସେ ଚିରକାଳ ଯାତନା ଦେବେ । ତୁମ୍ଭେମାନେ ତ ଭୁଲ୍ ବଶତଃ ପାପ କରି ପକାଇଛ, ତାହାର୍ ଏହି ପ୍ରାୟଶ୍ଚିତ ଯେ, ତୁମ୍ଭେମାନେ ଭକ୍ତିଭାବରେ ସୂର୍ଯ୍ୟଙ୍କୁ ନମସ୍କାର କର ଓ "ନମୋ ବିବସ୍ୱତେ ବ୍ରହ୍ମନ ଭାସ୍ୱତେ ବିଷ୍ଣୁ ତେଜସେ । ଜଗତ୍ର ପବିତ୍ରେ ଶୁଚୟେ ନମସ୍ତେ କର୍ମସାକ୍ଷିଣେ ।" ଏହି ମନ୍ତ୍ର ପାଠ କରି ପବିତ୍ର ହେବାପାଇଁ ତାଙ୍କୁ ପ୍ରାର୍ଥନା କର ।

କୁମାରୀମାନେ ଶ୍ରଦ୍ଧା ଓ ଭକ୍ତି ପୂର୍ବକ ପୂର୍ବଦିଗକୁ ଚାହିଁ ଯଥାନିତ କରି ସୂର୍ଯ୍ୟଙ୍କୁ ପ୍ରଣାମ କଲେ । ଭଗବାନ ହସି ହସି କହିଲେ—"ଏବେ ବି ତ୍ରୁଟି ରହିଗଲା ।"

କୁମାରୀମାନେ ନମ୍ରତାର ସହ ପଚାରିଲେ—"ଏବେ କି ତ୍ରୁଟି ରହିଲା, ଶ୍ୟାମସୁନ୍ଦର !"

ଭଗବାନ କହିଲେ—"ଏ ପ୍ରକାର ପ୍ରଣାମ କରିବା ବିଧି ନୁହେଁ, ଗୋଟିଏ ହାତରେ ଲଜ୍ଜା ନିବାରଣ କରି ଅନ୍ୟ ହାତରେ ପ୍ରଣାମ କରିବା ଭାରତୀୟ ସଂସ୍କୃତି ନୁହେ । ବଡ଼ ଲୋକଙ୍କୁ ପ୍ରଣାମ କରିବାକୁ ହେଲେ ଦୁଇହାତ ଯୋଡ଼ି ପ୍ରଣାମ କରିବାକୁ ହୁଏ । ଯୋଡ଼-ହସ୍ତକୁ ଶିର ପାଖକୁ ନେଇ ନିଜର ନାମ ଗୋତ୍ର ପ୍ରକାଶ କରି ତାଙ୍କ ଚରଣରେ ଶିର ରଖି ଅଭିବାଦନ କରାଯାଏ । ତୁମମାନଙ୍କର ପ୍ରଣାମ ମଧ୍ୟ ପୂର୍ଣ୍ଣ ହେଲା ନାହିଁ ।"

ଏହାଶୁଣି ସେମାନଙ୍କର ଚୈତନ୍ୟ ଉଦୟ ହେଲା । ସେମାନେ ଚିନ୍ତାକଲେ— "ଯେତେବେଳେ ଆମ୍ଭେମାନେ କୃଷ୍ଣଙ୍କୁ ପତିରୂପେ ବରଣ କରିବାକୁ ବ୍ରତ କରିଥାଇଁ ଓ ସେ ଆମ୍ଭମାନଙ୍କୁ ଆପଣାର କରି ନେବାକୁ ଉଦ୍ୟତ, ତେଣୁ ତାଙ୍କ ନିକଟରେ ଆମ୍ଭମାନଙ୍କର ଲଜ୍ଜା କରିବାର କ'ଣ ଅଛି ।" ସେମାନଙ୍କ ହୃଦୟର ଅନ୍ଧକାର ଦୂର ହୋଇଗଲା । ସେମାନେ ସବୁ କିଛି ଶ୍ୟାମସୁନ୍ଦରଙ୍କୁ ଅର୍ପଣ କରି ଦେଲେ । ସେମାନେ ଭାବିଲେ— "ଆମ୍ଭେମାନେ ଯେତେବେଳେ ତାଙ୍କୁ ସବୁକିଛି ଅର୍ପଣ କରିଦେଇ ଥାଇଁ, ସେତେବେଳେ ତ ତାଙ୍କୁ ମୁଖ ଦେଖାଉ ଥାଇଁ, ତେବେ ଅନ୍ୟ ଅଙ୍ଗଟି ଲୁଚାଇ ରଖିବା କ'ଣ ଭେଦ ଭାବ ନୁହେଁ । ଏପରି ଭେଦଭାବ ନିଜ ଆତ୍ମା ସହିତ ରଖାଯାଏ ନାହିଁ । ନିକେ ନିକେ ଉଲଗ୍ନ ରହିବାରେ କୌଣସି ସଙ୍କୋଚ କରିବା ବୃଥା । ସେ ତ ପୁଣି ଆମ ଆତ୍ମାର ସ୍ୱାମୀ ଅଟନ୍ତି ।" ଏହି ବିଚାର କରିବାକ୍ଷଣି ସେମାନଙ୍କର ସମସ୍ତ ସଙ୍କୋଚ ଦୂର ହୋଇଗଲା । ଭଗବାନଙ୍କ କଥାକୁ ସେମାନେ ଶ୍ରଦ୍ଧା ଓ ଭକ୍ତିପୂର୍ବକ ବିଶ୍ୱାସ କଲେ ଯେ, ସେମାନେ ବସ୍ତ୍ରହୀନା ହୋଇ ସ୍ନାନ କରିବାଦ୍ୱାରା ନିଶ୍ଚିତ ଭାବରେ ସେମାନଙ୍କ ବ୍ରତ ଖଣ୍ଡିତ ହୋଇଛି । ବ୍ରତ ଖଣ୍ଡିତ ହୋଇଥିବାରୁ ମନୋରଥ ପୂର୍ଣ୍ଣ ହେବାରେ ବିଳମ୍ବ ଘଟୁଛି । ତେଣୁ ବ୍ରତରୁ ବ୍ରତକୁ ନିର୍ବିଘ୍ନରେ ପୂର୍ଣ୍ଣ କରିବା ପାଇଁ ସେମାନେ ସମସ୍ତ କର୍ମର ସାକ୍ଷୀ ଭଗବାନ ନନ୍ଦନନ୍ଦନଙ୍କୁ ପ୍ରଣାମ

କଲେ । କାରଣ ସେମାନଙ୍କ ଦୃଷ୍ଟିରେ ତ ସେ ହିଁ ସମସ୍ତ ପାପ ଖଣ୍ଡନକାରୀ ଅଟନ୍ତି । ତାଙ୍କୁ ପ୍ରଣାମ କଲାପରେ ତାଙ୍କ ଆଜ୍ଞାରେ ସୂର୍ଯ୍ୟଙ୍କୁ ମଧ୍ୟ ସେମାନେ ପ୍ରଣାମ କଲେ ।

ଭଗବାନ୍ ଯେତେବେଳେ ଦେଖିଲେ—ସେମାନଙ୍କ ମନରେ ଆଉ କୌଣସି ପ୍ରକାର ଭେଦଭାବ ନାହିଁ ଓ ତାଙ୍କ ଆଜ୍ଞା ଅନୁସାରେ ସବୁକିଛି କରିବା ପାଇଁ ସେମାନେ ଉଦ୍ୟତ, ସେତେବେଳେ ସେ ପ୍ରେମପୂର୍ବକ ସେମାନଙ୍କ ବସ୍ତ୍ର ପ୍ରଦାନ କଲେ । ବସ୍ତ୍ର ପରିଧାନ କରି ସେମାନେ ଲଜ୍ଜାରେ ଶିର ଅବନତ କରି ହାତଯୋଡ଼ି ଶ୍ୟାମସୁନ୍ଦରଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ ।

ସୂତ କହୁଛନ୍ତି—"ମୁନିଗଣ ! ଆପଣମାନେ ଏହି ଗୋପକନ୍ୟାମାନଙ୍କ ପ୍ରେମକୁ ତ ଦେଖିଲେ । ସେମାନଙ୍କର କଠୋର ସାଧନା ଆଡ଼କୁ ଦୃଷ୍ଟିପାତ କରନ୍ତୁ ତ । ସଂସାରରେ ଜଣେ ଅନ୍ୟ ଜଣକୁ ପ୍ରେମ କରେ, ଯାହାକୁ କେହି ପ୍ରେମ କରେ, ଯଦି ସେ ତାହାର ଅନୁକୂଳ ବ୍ୟବହାର ନ କରେ, ତାହାହେଲେ ପ୍ରେମ ଦ୍ୱେଷରେ ପରିଣତ ହୁଏ । ଏହା ପ୍ରେମ ନୁହେଁ, ସ୍ୱାର୍ଥ । ବାସନା ପୂରଣ କରିବାର ଲାଳସା । ଶ୍ରୀକୃଷ୍ଣ ସେମାନଙ୍କ ସହିତ କିପରି ଛଳ କପଟପୂର୍ଣ୍ଣ କଥାବାର୍ତ୍ତା ହେଲେ ଆପଣମାନେ ତ ଜାଣିଲେ । ସେମାନେ ପ୍ରସନ୍ନତା ପୂର୍ବକ ସ୍ନାନ କରୁଥିଲେ, ସେ ଲୁଚି ଲୁଚି ଆସି ସେମାନଙ୍କ ବସ୍ତ୍ର ଚୋରିକରି ନେଇଗଲେ । ବହୁତ ସମୟ ପର୍ଯ୍ୟନ୍ତ ସେମାନଙ୍କ ସହିତ ହସ ବିନୋଦ କରିବାରେ ସମୟ ଅତିବାହିତ କଲେ । ସ୍ତ୍ରୀଲୋକମାନଙ୍କ ପକ୍ଷେ ଯେଉଁ ଲଜ୍ଜା ପରିତ୍ୟାଗ କରିବା କଷ୍ଟକର, ତାହା ସେମାନଙ୍କଠାରୁ ଛଡ଼ାଇଲେ । ନଗ୍ନାବସ୍ଥାରେ ସେମାନଙ୍କୁ ଜଳରୁ ବାହାରକୁ ଆଣାଇଲେ । କଣ୍ଢେଇ ନଚାଇବା ବାଳି । ଯେପରି କାଠ ପୁତୁଳିକୁ ନଚାଏ, ସେହିପରି ସେମାନଙ୍କୁ ନଚାଇଲେ । କିନ୍ତୁ ସେ ଗୋପକନ୍ୟାଗଣ ବାଧ୍ୟ ହୋଇ ସବୁ କିଛି କଲେ । ଏ ଘଟଣାରେ ରୁଷ୍ଟ ହୋଇ ଅବଶ୍ୟ କେତେକ କନ୍ୟା କିଛି କହି ପକାଇ ଥିଲେ, ତଥାପି ପ୍ରତି କଥାରେ ସେମାନଙ୍କ ହୃଦୟ ପ୍ରେମରେ ପରିପୂର୍ଣ୍ଣ ହୋଇ ଯାଉଥିଲା । ସେମାନେ ପ୍ରିୟତମଙ୍କର ପ୍ରତ୍ୟେକ ଚେଷ୍ଟାର ଦିବ୍ୟ ସରସତା ଅନୁଭବ କରୁଥିଲେ । ସେମାନଙ୍କର ହୃଦୟ କମଳର କଳିକା ପ୍ରସ୍ଫୁଟିତ ହୋଇ ଉଠୁଥିଲା । ସେମାନେ ପ୍ରେମରେ ବିଭୋର ହୋଇ ଶ୍ୟାମସୁନ୍ଦରଙ୍କର ପ୍ରତ୍ୟେକଟି ଚେଷ୍ଟାକୁ ସଫଳ କରୁଥିଲେ, ନିଜର ସର୍ବସ୍ୱ ବୋଲି ଭାବୁଥିଲେ । ଏପରି ପ୍ରେମର ଅଲୌକିକ ଉଦାହରଣ ଅନ୍ୟତ୍ର ଦେଖାଯିବା ଅସମ୍ଭବ । ସେମାନେ ତ ନିତ୍ୟସିଦ୍ଧା ଥିଲେ, ତେଣୁ ଏ ପ୍ରକାର ପ୍ରଗାଢ଼ ପ୍ରେମ କରିବାରେ ସମର୍ଥ ହୋଇ ପାରିଥିଲେ । ଅନ୍ୟ କାହାରି ପକ୍ଷେ ଏହା ସମ୍ଭବ ହୋଇ ନ ଥାନ୍ତା ।"

### ଛପ୍‌ପଯ୍ୟ

ଜାନି ବବଶତା ନକର ବାରତେଂ ବାଲ ଅଇଂ ।
ଗୁହ୍ୟ ଅଙ୍ଗ କର ଦାଁକ ଘହମି ସବରୀଂ ସକୁଚଇଂ ॥
ହର ବୋଲେ—ଅପରାଧ ବରୁନକୋ କୀଯ୍ୟୋ ତୁମ ସବ ।
ହ୍ଲାଇ ନଙ୍ଗୀ କରହୁ ବନଯ୍ୟୁ କରପୁଟ ସିରଧର ଅବ ॥
ନଜ ବ୍ରତକୁଁ ଖଣ୍ଡିତ ସମୁଝି, ଧର୍ମଭୀରୁ ସବ ଡର ଗଇଂ ।
ପାପ ପ୍ରନାଶକ ପ୍ରଭୁ, ଚରନ, କମଲମାଁହୁଁ ପ୍ରନମତ ଭଇଁ ॥



## ବ୍ରଜବାଳାଙ୍କର ବର ପ୍ରାପ୍ତି

ଯ୍ୟାତାବଲ୍ ବ୍ରଜଂ ସିଦ୍ଧା ମୟେମା ରଂସ୍ୟଥ କ୍ଷପାଃ ।
ୟଦୁଦ୍ଦିଶ୍ୟ ବ୍ରତମିଦଂ ଚେରୁରାର୍ଯ୍ୟାର୍ଚ୍ଚନଂ ସତୀଃ ॥

(ଶ୍ରୀ ଭା ୧୦ ସ୍କ, ୨୨ ଅ, ୨୭, ଶ୍ଳୋକ)

### ଛପ୍‌ପଯ୍ୟ

ପ୍ରଭୁ ପ୍ରସନ୍ନ ହ୍ୱୈ ଗୟେ ତୁରତ ପଟ ସବକେ ଦୀୟେ ।
ପାଇ ବସନ ପ୍ରିୟ ପରସ ପହ୍ନନ ନଜ ନଜ ତନ ଲୀୟେ ॥
ପ୍ରେମ ବବଶ ବନ ଗଇଂ ସକୁଚତେଂ ଶ୍ୟାମ ନହାରେଂ ।
ପୂଜନ ଚାହେଂ ଚରନ ନ ମୁଖତେଂ ବଚନ ଉଚାରେଂ ॥
ଜାନ ମନୋଗତ ଭାବ ହର, ବୋଲେ-ବାଲ ଡରହୁ ମତ ।
ଶରଦ ନଶିନମହଁ ରମନ ମମ, ସଂଗ କରେଗୀ ସୁଖଦ ଅତ ॥

ଗୋଟିଏ କାହାଣୀ ଅଛି—"ଦୁଇ ଜଣ ତପସ୍ୱୀ ତପ କରୁଥିଲେ । ଜଣେ ଥିଲେ କଞ୍ଚା ଓ ଅନ୍ୟ ଜଣେ ଥିଲେ ପକ୍‌କା । କଞ୍ଚା ଜଣକ ତପସ୍ୟାକୁ ଗୁଡ଼ ଖଣ୍ଡ ବୋଲି ମନେ କରୁଥିଲେ । ସେ ଭାବୁଥିଲେ ପାଞ୍ଚ ଦଶଦିନ ତପସ୍ୟା କରି ଦେଲେ ଭଗବାନ ମିଳିଯିବେ । ସେ ସୁଖ ସାମଗ୍ରୀର ବର ପାଇ ଆନନ୍ଦରେ ଉଡ଼ାଇବେ ? ବଂଶୀ ବଜାଇବେ । ତେଣୁ ସେ

ଦେଖାଦେଖି ତପସ୍ୟା କରିବା ପାଇଁ ଏକ ପିପ୍‌ପଳ (ଅଶ୍ୱତ୍ଥ) ବୃକ୍ଷମୂଳେ ବସିଗଲେ । ଅନ୍ୟ ସାଧକ ଜଣକ ବାସ୍ତବ ସାଧକ ଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା—ଭଗବାନଙ୍କୁ ପାଇବା । ପ୍ରଭୁ ପ୍ରାପ୍ତି ପାଇଁ ତାଙ୍କ ହୃଦୟରେ ଅତ୍ୟନ୍ତ ଅଭିଳାଷ ଥିଲା । ନିଜର ସମସ୍ତ ସୁଖରେ ଜଳାଞ୍ଜଳି ଦେଇ ସେ ଗୋଟିଏ ତନ୍ତୁଳି ଗଛ ମୂଳରେ ବସି ତପ କରୁଥିଲେ । ଉଭୟେ ଏହିପରି ତପସ୍ୟା କରୁ ଥାଆନ୍ତି । ଯେ ତନ୍ତୁଳି ଗଛ ମୂଳରେ ତପସ୍ୟା କରୁଥିଲେ ସେ ବହୁ ପୂର୍ବରୁ ତପସ୍ୟା ଆରମ୍ଭ କରିଥିଲେ । ତାଙ୍କ ଦେଖାଦେଖି ଅଶ୍ୱତ୍ଥ ବୃକ୍ଷ ମୂଳର ତପସ୍ୱୀ ତପସ୍ୟା ଆରମ୍ଭ କଲେ । କିଛିଦିନ ପରେ ବୀଣା ବଜାଇ ହରି ଗୁଣଗାନ କରି କରି ନାରଦ ସେଠାରେ ଆସି ପହଞ୍ଚିଲେ । ବାସ୍ତବ ସାଧକ ଜଣକ ଉଠି ତାଙ୍କୁ ପ୍ରଣାମ କଲେ ଓ ବିନମ୍ର ଭାବରେ କହିଲେ—"ଭଗବନ୍ ! ଆପଣ ସର୍ବଦା ବିଷ୍ଣୁ ଲୋକକୁ ଯାତାୟତ କରୁଛନ୍ତି, ଦୟାକରି ଭଗବାନଙ୍କୁ ପଚାରିବେ—ସେ ମୋତେ କେବେ ଦର୍ଶନ ଦେବେ ? ଏହି ସମୟରେ ଅନ୍ୟ ଜଣକ ପଚାରିଲେ "ମହାରାଜ ! ମୋ ପାଇଁ ମଧ୍ୟ ସେହି କଥା ଭଗବାନଙ୍କୁ ପଚାରିବେ ।"

ନାରଦ କହିଲେ—"ଆଚ୍ଛା ଠିକ୍ ଅଛି, ମୁଁ ଏବେ ବିଷ୍ଣୁ ଲୋକକୁ ଯାଉଛି, ବିଷ୍ଣୁଙ୍କୁ ପଚାରି ତୁମ ଦୁଇ ଜଣଙ୍କୁ ଆସି କହିବି । ଏହା କହି ସେ ବୈକୁଣ୍ଠକୁ ଚାଲିଗଲେ । ବୈକୁଣ୍ଠରେ ପହଞ୍ଚି ସେ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କଲେ । ପୁନଶ୍ଚ ପ୍ରସଙ୍ଗାନୁସାରେ ସେହି ଦୁଇ ତପସ୍ୱୀଙ୍କ କଥା ବିଷ୍ଣୁଙ୍କୁ ପଚାରିଲେ । ଭଗବାନ ବିଷ୍ଣୁ ହସିଲେ ଓ କହିଲେ— "ତୁମେ ସେ ଦୁଇଜଣଙ୍କୁ କହିଦେବ, ସେ ଦୁହେଁ ଯେଉଁ ବୃକ୍ଷ ମୂଳରେ ବସି ତପସ୍ୟା କରୁଛନ୍ତି, ସେଥିରେ ଯେତେ ଯେତେ ପତ୍ର ଅଛି ସେତେ ସେତେ ଜନ୍ମ ପରେ ସେ ଦୁହେଁ ମୋତେ ପାଇବେ ।"

ଏହାଶୁଣି ନାରଦ ଆସି ପ୍ରଥମେ ଅଶ୍ୱତ୍ଥ ବୃକ୍ଷ ମୂଳେ ବସି ତପସ୍ୟା କରୁଥିବା ତପସ୍ୱୀଙ୍କୁ କହିଲେ—"ଭାଇ ! ଭଗବାନ କହିଲେ ଏ ଅଶ୍ୱତ୍ଥ ବୃକ୍ଷରେ ଯେତେ ପତ୍ର ଅଛି ସେତେ ଜନ୍ମ ପରେ ତୁମେ ତାଙ୍କ ଦର୍ଶନ ପାଇବ ।" ଏହାଶୁଣି ସେ ବଡ଼ ନିରାଶ ହେଲେ ଓ ଚିନ୍ତା କଲେ—"ଏତେ ଦିନ କିଏ ଅପେକ୍ଷା କରିବ, ଯିବା ଘରେ ରହି ସେ ପର୍ଯ୍ୟନ୍ତ ସଂସାରର ସୁଖ ଭୋଗ କରିବା, ପରେ ଯାହା ହେବ ଦେଖାଯିବ ।" ଏହା ସ୍ଥିର କରି ସେ ତପସ୍ୟା ଛାଡ଼ି ଚାଲିଗଲେ ।

ତାହା ପରେ ନାରଦ ତନ୍ତୁଳି ଗଛ ମୂଳେ ବସି ତପସ୍ୟା କରୁଥିବା ତପସ୍ୱୀଙ୍କ ନିକଟକୁ ଯାଇ ଭଗବାନ ବିଷ୍ଣୁ କହିଥିବା କଥା କହିଲେ । ଏହା ଶୁଣିବା କ୍ଷଣି ସେହି ତପସ୍ୱୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ବାରମ୍ବାର ନାରଦଙ୍କୁ ପଚାରିଲେ—ସତ କହନ୍ତୁ ନାରଦ ! ଭଗବାନ୍ ସ୍ୱୟଂ ଏ କଥା କହିଛନ୍ତି ?" ନାରଦଙ୍କ ଆଶ୍ୱାସନା ବାଣୀ ଶୁଣି ସେ ତପସ୍ୟାଛାଡ଼ି ହସି ହସି ଆନନ୍ଦରେ ନାଚିବାକୁ ଲାଗିଲେ ।

ନାରଦ ପଚାରିଲେ—"ଭାଇ ! ତୁମେ କାହିଁକି ଏତେ ଆନନ୍ଦିତ ହେଉଛ ?"

ତପସ୍ୱୀ କହିଲେ—"ଭଗବନ୍ ! ଏବେ ମୁଁ ନିଶ୍ଚିତ ହୋଇଗଲି । ଏହା ତ ବିଶ୍ୱାସ ହେଲା ଯେ ମୁଁ ଭଗବାନଙ୍କୁ ନିଶ୍ଚୟ ପାଇବି । ତେନ୍ତୁଳି ଗଛର ପତ୍ର ଅନୁପାତରେ ସେତିକି ଜନ୍ମ କଟାଇବା ମୋ ପକ୍ଷେ ଆଦୌ କଷ୍ଟକର ହେବ ନାହିଁ । ମୁଁ ତାହା ପରେ ତ ଭଗବାନଙ୍କୁ ପାଇବି । ଏ ସମସ୍ତ ସମୟକୁ ମୁଁ ତାଙ୍କର ପ୍ରତୀକ୍ଷାରେ ଆନନ୍ଦରେ କଟାଇବି ।" ତାଙ୍କର ଦୃଢ଼ ବିଶ୍ୱାସ ଓ ଉତ୍କଣ୍ଠା ଦେଖି ଭଗବାନ୍ ସଙ୍ଗେ ସଙ୍ଗେ ସେଠାରେ ଆବିର୍ଭୂତ ହୋଇ ଭକ୍ତଙ୍କ ମନୋବାଞ୍ଛା ପୂର୍ଣ୍ଣ କଲେ ।

ଏଠାରେ ଏହି କଥା କହିବାର ଅଭିପ୍ରାୟ ଏହି ଯେ, ସାଧକ ଜପ, ତପ, ଅନୁଷ୍ଠାନ, ଭଜନ, ପୂଜନ ତଥା ଅନ୍ୟାନ୍ୟ ସାଧନ ସେ ପର୍ଯ୍ୟନ୍ତ କରି ଆଆନ୍ତି, ଯେ ପର୍ଯ୍ୟନ୍ତ ତାଙ୍କୁ ଭଗବାନ ପ୍ରାପ୍ତି ହେବାର ଆଶ୍ୱାସନା ନ ମିଳିଥାଏ । ସମୟର ସୀମା ଏଥିରେ ନ ଥାଏ । ଦୃଢ଼ ଆଶ୍ୱାସନା ମିଳିଯିବା ପରେ, ସମୟର ଜ୍ଞାନ ହେବା ପରେ ସେମାନଙ୍କର ସମସ୍ତ ସାଧନ ସମାପ୍ତ ହୁଏ । ତାହାପରେ ସେମାନେ କେବଳ ଦିନ ଗଣି ପ୍ରିୟତମଙ୍କ ପ୍ରତୀକ୍ଷାରେ କାଳଯାପନ କରନ୍ତି । ପ୍ରିୟଜନଙ୍କର ପ୍ରତୀକ୍ଷାରେ ପ୍ରତିଟି ମୁହୂର୍ତ୍ତ ଅତ୍ୟନ୍ତ ସୁଖଦ ପ୍ରତୀତ ହୁଏ । ଦିନ ଗଣି ଗଣି, ଅନେକ ଆଶା ପୋଷଣ କରୁ କରୁ ସମୟ ବିତିଯାଏ । କୌଣସି ମୁହୂର୍ତ୍ତ, କ୍ଷଣ ଏପରି କଟେ ନାହିଁ । ଯେଉଁଥିରେ କି ନିଜ ପ୍ରିୟତମଙ୍କର ଉତ୍କଟ ସ୍ମୃତି ଦିନୁ ଦିନ ଅତି ଉତ୍କଟ ନ ହୁଏ । ପୂର୍ବାନୁରାଗ ପରେ ମିଳନ ହେବା ସମୟର ସୀମା ଜାଣିଗଲା ପରେ ଯେଉଁ ଉତ୍କଣ୍ଠା ଜାତ ହୁଏ, ସେଥିରେ ଅତ୍ୟନ୍ତ ମାଧୁରିମା, ଅବର୍ଣ୍ଣନୀୟ ତନ୍ମୟତା ରହିଥାଏ । ତାହା ବିନା ଅନୁଭବରେ କାହାର ପକ୍ଷେ ବୁଝିବା ସମ୍ଭବ ନୁହେଁ ।

ସୂତ କହୁଛନ୍ତି—"ମୁନିଗଣ ! ଭଗବାନ ତ ଗୋପକନ୍ୟାମାନଙ୍କ ବସ୍ତ୍ର ଦେଇ ଦେଲେ । ବସ୍ତ୍ର ଦେବାପରେ ମଦନମୋହନଙ୍କ ମନ ହରି ନେଲେ । ସେମାନେ ନତମସ୍ତକ ହୋଇ ଶ୍ୟାମସୁନ୍ଦରଙ୍କ ଆଡ଼କୁ ଲଜ୍ଜା ଓ ସଙ୍କୋଚ ଦୃଷ୍ଟିରେ ଚାହିଁ ରହିଲେ । ସେମାନେ ଅତ୍ୟନ୍ତ ବିବଶତା ଅନୁଭବ କରୁ ଥିଲେ, ସେମାନଙ୍କର ଲୋମେ ଲୋମେ ଅନୁରାଗ ଭରି ଉଠୁଥିଲା । ସେମାନଙ୍କର ପ୍ରସ୍ଫୁଟିତ କମଳ ସଦୃଶ ମୁଖମଣ୍ଡଳ ପ୍ରିୟ ଦର୍ଶନରେ ଅଧିକ ଉଦ୍ଭାସିତ ହୋଇ ଉଠୁଥିଲା । ସେମାନେ ବାରମ୍ବାର ଇଚ୍ଛା କରୁଥିଲେ, କିପରି ପ୍ରିୟଙ୍କର ଚରଣକୁ ନେଇ ନିଜ ହୃଦୟରେ ସ୍ଥାପନ କରିବେ । ପ୍ରିୟତମ କିପରି ତାଙ୍କ ଚରଣକୁ ହୃଦୟର ସ୍ପନ୍ଦନ ସ୍ଥାନରେ ସ୍ଥାପନ କରିବେ । ସେମାନେ ତାଙ୍କ ଚରଣକୁ ଅଧିକ ଜୋର୍‌ରେ ଦାବି ଦେଇ ବସି ଯିବେ । ତାଙ୍କୁ ବିଧିବତ୍ ପୂଜା କରିବେ, କିନ୍ତୁ ଏପରି କରିବାକୁ ସେମାନଙ୍କର ସାହସ ହେଉ ନ ଥିଲା । ସେମାନେ ତ ସହଜେ ଅବଳା । ପୁରୁଷଙ୍କର ସ୍ୱୀକୃତି ବିନା ନାରୀମାନଙ୍କର ପୁରୁଷଙ୍କୁ ସ୍ପର୍ଶ କରିବାର ସାହସ ନ ଥାଏ । କାରଣ ବିଧାତା ପୁରୁଷମାନଙ୍କ ଅପେକ୍ଷା ଆଠଗୁଣ ଲଜ୍ଜା ସ୍ତ୍ରୀମାନଙ୍କ ହୃଦୟରେ ଭରି ଦେଇଛନ୍ତି । ସେହି କୁମାରୀଗଣ ବସ୍ତ୍ର

ପରିଧାନ କରି ସେହିଠାରେ ଠିଆ ହୋଇ ରହିଥିଲେ । ସେଠାରୁ ଯଦି ଚ ଚାଲି ଯିବାକୁ ଇଚ୍ଛା ହେଉଥିଲା, ତଥାପି ଶ୍ରୀକୃଷ୍ଣଙ୍କ ମଧୁର ମଧୁର କଥା ସେମାନଙ୍କର ଚରିବନରେ ପ୍ରବେଶ କରି ଚରିଙ୍କୁ ଏପରି ହରି ନେଇ ଥିଲା ଯେ, ପ୍ରିୟତମଙ୍କୁ ଛାଡ଼ି ସେମାନେ ପାଦେ ହେଲେ ଆଗକୁ ଯାଇ ପାରୁ ନ ଥିଲେ । ପ୍ରିୟତମଙ୍କ ସ୍ପର୍ଶରେ ଆସିଥିବା ସେମାନଙ୍କର ଚରି ତାଙ୍କଠାରେ ଏତେ ଅନୁରକ୍ତ ହୋଇଥିଲା ଯେ, ସେମାନେ ସେଠାରେ ଠିଆ ହୋଇ ରହିବାକୁ ବାଧ୍ୟ ହୋଇ ଥିଲେ ଏବଂ ଲଜୁଆ ଚାହାଣିରେ ତାଙ୍କ ଆଡ଼କୁ ଚାହୁଁ ଥିଲେ ।

ଭଗବାନଙ୍କୁ ଆହୁରି କିଛି ସମୟ ପ୍ରତୀକ୍ଷା କରିବାକୁ ପଡ଼ିଲା । ସେ ଦେଖିଲେ ଯେ ଏମାନଙ୍କ ମନରେ ଏବେ ବି କାମଭାବ ଅଛି । ଭଗବାନ ଯାହାକୁ ଆପଣାର କରି ନିଅନ୍ତି ଓ ତା' ମନରେ ଯଦି କାମଭାବ ଦେଖନ୍ତି, ତାହାହେଲେ ସ୍ୱୟଂ କାମୁକଙ୍କ ଭଳି ଛଳନା କରି ତାହାର କାମ ଭାବକୁ ଆହୁରି ବଢ଼ାଇ ଦିଅନ୍ତି । ଯେତେବେଳେ ତାହାର କାମଭାବ ଉତ୍କଟ ହୋଇ ଯାଏ, ପ୍ରତୀକ୍ଷା କରି କରି ମନରୁ ମଳିନ ବାସନାଗୁଡ଼ିକ ବିଦୂରିତ ହୋଇଯାଏ, ଅନ୍ତଃକରଣ ବିଶୁଦ୍ଧ ହୋଇଯାଏ, କାମ ସ୍ଥାନରେ ହୃଦୟରେ ପ୍ରେମ ପରିପୂର୍ଣ୍ଣ ହୋଇଯାଏ, ସେତେବେଳେ ଭଗବାନ ସବୁଦିନ ପାଇଁ ତାକୁ ଆପଣାର କରି ନିଅନ୍ତି । ପ୍ରଥମେ କାମକୁ ଉଦ୍ରେକିତ କରି ଦିଅନ୍ତି ଯାହାର ସ୍ପନ୍ଦନରେ କି ସମସ୍ତ ଅଶୁଭ ନଷ୍ଟ ହୋଇଯାଏ । ସେ ବୁଝି ପାରିଲେ ଏହି ବ୍ରତଶୀଳା କୁମାରୀମାନଙ୍କର କାତ୍ୟାୟନୀ ପୂଜାର ସଂକଳ୍ପ ମୋ'ର ଚରଣସ୍ପର୍ଶ କାମନାରେ ହିଁ ହୋଇ ଅଛି । ତେଣୁ ଏକ ଆଧାରରୂପ ବଳ ଯେଉଁ ଅବଳାମାନଙ୍କର ସ୍ୱୟଂ ବାସୁଦେବ, ସେ ସେମାନଙ୍କୁ କହିଲେ—"ସାଧ୍ୱୀଗଣ ! କୁମାରୀଗଣ ! ବ୍ରତଶୀଳାଗଣ ! ଦେଖ, ମୁଁ ତୁମ୍ଭମାନଙ୍କର ସଂକଳ୍ପ କଥା ଜାଣେ । ତୁମ୍ଭେମାନେ ମୋତେ ଏପରି ଭାବ ନାହିଁ ଯେ, ମୁଁ କାହାରି ମନ କଥା ଜାଣିପାରୁ ନାହିଁ । ତୁମ୍ଭମାନଙ୍କର ଯାହା ଇଚ୍ଛା, ତାହା ମୋତେ ଜଣାଅଛି । ତୁମ୍ଭେମାନେ ମୋତେ ପତିରୂପେ ପାଇବାକୁ ଚାହୁଁଛ ନା ? ତାହା ଖୁବ୍ ଭଲ କଥା । ମୁଁ ତ ପ୍ରାଣୀମାନଙ୍କର ପତି ଅଟେ । ତୁମ୍ଭମାନଙ୍କର ସଂକଳ୍ପର ସମର୍ଥନ ଓ ଅନୁମୋଦନ ମୁଁ କରୁଅଛି । ତୁମର ସଂକଳ୍ପ ଅବଶ୍ୟ ସତ୍ୟ ହେବ । ତୁମ୍ଭେମାନେ ମୋତେ ପାଇବ ।"

"କେବେ ହେବ ପ୍ରାଣବଲ୍ଲଭ ! ଆମ୍ଭେମାନେ ତ ମରୁଅଛୁ । ଏ ପ୍ରକାର ବିବଶତା ତ ଭଲ ନୁହେଁ ।" ନିରାଶା ଓ ଦୁଃଖ ସ୍ୱରରେ ସେହି ଗୋପବାଳମାନେ ପ୍ରକାଶ କଲେ ।"

ଭଗବାନ କହିଲେ—"ଦେଖ, ନିରାଶ ହେବାର କୌଣସି କାରଣ ନାହିଁ । ଯେ ପର୍ଯ୍ୟନ୍ତ ଶରୀର ଅଛି, ସେ ପର୍ଯ୍ୟନ୍ତ ସେଥିରେ କାମ, କ୍ରୋଧ ଆଦି ରହିବ ହିଁ ରହିବ । ସଂସାରସକ୍ତ ପୁରୁଷଙ୍କ ହୃଦୟରେ କାମଭାବ ଉତ୍ପନ୍ନ ହୁଏ ଓ ଭକ୍ତଙ୍କ ହୃଦୟରେ ବି ଉତ୍ପନ୍ନ ହୁଏ । ମାତ୍ର ଏତିକି ପ୍ରଭେଦ ଯେ, ସଂସାରୀ ଲୋକଙ୍କ ମନରେ ଯେଉଁ କାମଭାବ ଉଦ୍ରେକ ହୁଏ, ତାହା ସାଂସାରିକ ବିଷୟ ଭୋଗ କରିବାକୁ ଚାହେଁ ଏବଂ ଭକ୍ତମାନଙ୍କ ହୃଦୟର

କାମନାର ବିଷୟ ମୁଁ ଜାଣେ । ସେମାନେ ନିଜ ନିଜର କାମଭାବକୁ ମୋତେ ସମର୍ପଣ କରି ଦିଅନ୍ତି । ସେମାନଙ୍କ କାମଭାବକୁ ମୁଁ ନିଜ ମହିମା ପ୍ରଭାବରେ ଭସ୍ମସାତ୍ କରିଦିଏ ।"

ଗୋପକନ୍ୟାମାନେ କହିଲେ—"ଶ୍ୟାମସୁନ୍ଦର ! ତୁମେ ତ ଅତି ଗୂଢ଼ ରହସ୍ୟ କଥା କହୁଅଛ, ଏହି କଥା ଆମ ଏ ଅବଳାମାନଙ୍କ ପକ୍ଷେ ସହଜରେ ବୋଧଗମ୍ୟ ହେଉ ନାହିଁ ।"

ଭଗବାନ କହିଲେ—"ଆଚ୍ଛା, ତେବେ କୁହ ତ ଦେଖି, କାମ କେଉଁଠି ସମ୍ଭବ ହୁଏ ?"

ଗୋପକନ୍ୟାମାନେ କହିଲେ—"ମହାରାଜ ! ଏହା ତ ସଂକଳ୍ପ ଦ୍ୱାରା ଅନ୍ତଃକରଣରେ ହୁଏ ।"

ଭଗବାନ କହିଲେ—"ହଁ, ଏହା ଯଥାର୍ଥ ଅଟେ । ସଂକଳ୍ପରୁ ହିଁ କାମ ଜାତହୁଏ । ମନୁଷ୍ୟ ଯେପରି ଯେଉଁ କର୍ମ କରେ, ତାହାର ପାପ ବା ପୁଣ୍ୟ ଫଳ ନିଶ୍ଚିତ ଭାବରେ ଭୋଗ କରେ । ତାହା ସଞ୍ଚିତ ଫଳରୂପେ ମିଳିଯାଏ । ତହିଁରୁ ପ୍ରାରବ୍ଧ ସୃଷ୍ଟି ହୁଏ । ଜନ୍ମ ମୃତ୍ୟୁ ଚକ୍ରରେ ସେ ପଡ଼େ; କିନ୍ତୁ ମୋ ପାଇଁ ଯେଉଁ କର୍ମ କରାଯାଏ, ତହିଁରୁ କର୍ମବନ୍ଧନ ରୂପକ ବୀଜ ଉତ୍ପନ୍ନ ହୁଏ ନାହିଁ ।"

ଗୋପକନ୍ୟାମାନେ କହିଲେ—"ଭଗବନ ! ଏହା ସମ୍ଭବ କିପରି ହୋଇପାରେ ଯେ, ବୀଜକୁ ଭୂମିରେ ବୁଣାଯାଇ ଅନୁକୂଳ ସାର ଓ ଜଳ ଦିଆଯାଉଥିଲେ ମଧ ତହିଁରୁ ଅଙ୍କୁର ଉଦ୍‌ଗମ ହେବ ନାହିଁ ? କର୍ମ କଲେ ତ ତାହାର କୌଣସି ନା କୌଣସି ଫଳ ଅବଶ୍ୟ ମିଳିବ ।"

ଭଗବାନ କହିଲେ—"ତାହା ସେପରି କଥା ନୁହେଁ । ବୀଜକୁ ତୁମେ ବିଶୁଷ୍କ କରି ବା ସିଦ୍ଧ କରି ଭୂମିରେ ବୁଣ, ପୁନଶ୍ଚ ତହିଁରେ ଯେତେ ଇଚ୍ଛା ସେତେ ସାର ଓ ଜଳ ଦିଅ, ତହିଁରୁ ଅଙ୍କୁର ଉଦ୍‌ଗମ ହେବ ନାହିଁ । ସେହିପରି ଯେଉଁ କର୍ମ ମୋ ନିମିତ୍ତ କରାଯିବ, ସେଥିରେ ବନ୍ଧନଯୋଗ ନାହିଁ ଏବଂ ତାହା ପ୍ରାରବ୍ଧ ସୃଷ୍ଟି କରିବ ନାହିଁ । ମୋତେ ନିରନ୍ତର ଚିନ୍ତା କରିବାଦ୍ୱାରା ସମସ୍ତ ଅଶୁଭ ବୃତ୍ତି ନାଶ ହୋଇଥାଏ । ମୋ ଭକ୍ତ ହୃଦୟରେ ସହଜେ କାମ ଉତ୍ପନ୍ନ ତ ହୁଏ ନାହିଁ । ଯଦି ହୁଏ, ତାହାହେଲେ ତାହା ଅଚିରେ ନଷ୍ଟ ହୋଇଯାଏ, ଯେପରିକି ଦୀପ ଲିଭିଲବେଳକୁ ଅଧିକ ଜଳିଉଠି ଲିଭିଯାଏ ।"

ଗୋପକୁମାରୀମାନେ କହିଲେ—"ତାହାହେଲେ ବର୍ତ୍ତମାନ ଆମର ଉପାୟ କ'ଣ ? ଅମ୍ଭେମାନେ ତ ବ୍ୟାକୁଳିତ, ଆଉ କେତେ ସମୟ ପ୍ରତୀକ୍ଷା କରିବୁ ?"

ଭଗବାନ କହିଲେ—"ବର୍ତ୍ତମାନ ତ ଆମେ ସମସ୍ତେ ନିଜ ନିଜ ଘରକୁ ଫେରିଯିବା । ତୁମ୍ଭମାନଙ୍କର ବ୍ରତ ତ ପୂର୍ଣ୍ଣ ହୋଇଛି । ଆଉ ତୁମ୍ଭମାନଙ୍କର କୌଣସି ବ୍ରତ

ଅନୁଷ୍ଠାନ କରିବାର ଆବଶ୍ୟକତା ନାହିଁ । ତେଣୁ ତୁମ୍ଭେମାନେ ମୋ ସହିତ ମିଳନ ହେବା ସମୟକୁ ପ୍ରତୀକ୍ଷା କର ।”

ଗୋପକନ୍ୟାମାନେ ନିରାଶା ଓ ବେଦନାଯୁକ୍ତ ସ୍ୱରରେ ପଚାରିଲେ—“କେତେଦିନ ପ୍ରତୀକ୍ଷା କରିବୁ ପ୍ରାଣବଲ୍ଲଭ ?”

ଭଗବାନ କହିଲେ—“ଅଧିକ ଦିନ ନୁହେଁ, ଆଉ ଦଶମାସ ପ୍ରତୀକ୍ଷା କର । ଆଶ୍ୱିନ ପୂର୍ଣ୍ଣିମା ବେଳକୁ ସେହି ଶରଦର ସୁନିର୍ମଳ ରଜନୀରେ ତୁମ୍ଭେମାନେ ମୋ ସହିତ ମିଳିତ ହେବ ।”

ସୂତ କହୁଛନ୍ତି—“ମୁନିଗଣ ! ଭଗବାନଙ୍କର ଏହି ପ୍ରକାର ଆଜ୍ଞା ପାଇବାମାତ୍ରେ ସେହି ବ୍ରଜବାଳାଗଣଙ୍କର ଦଶା ସୁଖ ଓ ଦୁଃଖ, ଆଶା ଓ ନିରାଶା ମଧ୍ୟରେ ରଞ୍ଜିତ ହୋଇଗଲା । ଏହି କାରଣରୁ ସେମାନେ ଆଶାନ୍ୱିତ ହୋଇଥିଲେ ଯେ, ଦଶମାସ ପରେ ସେମାନଙ୍କର ଶ୍ୟାମସୁନ୍ଦରଙ୍କର ସଙ୍ଗଲାଭ ହେବ; କିନ୍ତୁ ନିରାଶାର କାରଣ ହେଲା— ସେମାନେ ଯେଉଁ ଆଶା ପୋଷଣ କରିଥିଲେ ଯେ, ଆଜି ନିଜ ବକ୍ଷସ୍ଥଳରେ ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦ ସ୍ଥାପନା କରି ନିଜ ନିଜର କାମ-ସନ୍ତାପକୁ ଶାନ୍ତ କରିବେ, ତାହା ଶ୍ୟାମସୁନ୍ଦର ସ୍ୱୀକାର କଲେ ନାହିଁ । ସୁଖଲାଭ ତ ଶ୍ୟାମସୁନ୍ଦରଙ୍କର ସ୍ୱୀକୃତି ଉପରେ ନିର୍ଭର କରୁଥିଲା; କିନ୍ତୁ ଦୁଃଖ ଥିଲା ତାଙ୍କ ବିଚ୍ଛେଦ ଦୁଃଖ । ସେମାନେ ଶ୍ୟାମସୁନ୍ଦରଙ୍କୁ ଛାଡ଼ିବାକୁ ଚାହୁଁ ନ ଥିଲେ, ମାତ୍ର ଶ୍ୟାମସୁନ୍ଦର ଯିବାପାଇଁ ଚଞ୍ଚଳ ହେଉଥିଲେ । ଯଦିଓ ସେମାନଙ୍କର ପ୍ରିୟମିଳନର ଉତ୍କଣ୍ଠା କିଛିଅଂଶ ପରିମାଣରେ ସଫଳ ହେଲା, ତଥାପି ତାଙ୍କର ବିଚ୍ଛେଦ ଯୋଗୁ ମିଳନର ଉତ୍କଣ୍ଠା ଆହୁରି ବୃଦ୍ଧି ପାଇଲା । ସେଥିପାଇଁ ସେମାନେ ଚିତ୍ତଚୋର ଶ୍ରୀକୃଷ୍ଣଙ୍କର ଚରଣଚିନ୍ତା କରି କରି ବ୍ରଜକୁ ଫେରି ଆସିଲେ ଓ ସେହି ଶାରଦୀୟ ପୂର୍ଣ୍ଣିମା ରାତିକୁ ପ୍ରତୀକ୍ଷା କରିବାକୁ ଲାଗିଲେ । ଦିନ ଗଣି ଗଣି ଶ୍ୟାମସୁନ୍ଦରଙ୍କ ଚିନ୍ତାରେ କାଳଯାପନ କରିବାକୁ ଲାଗିଲେ ।

ଏହାଶୁଣି ଶୌନକ କହିଲେ—“ହେ ସୂତ ! ଏହି ଲୀଳା ତ କୌଣସି ଅବଶ୍ୟକତାଠାରୁ ଅଧିକ ସରସ ହୋଇଗଲା । ଏଥିରେ କେତେକ ଅଶ୍ଳୀଳତା ରହିଗଲା । ଏପରି କରିବା ଭଗବାନଙ୍କର ଉଚିତ ନ ଥିଲା ।”

ସୂତ ଗମ୍ଭୀର ହୋଇ କହିଲେ—“ନାହିଁନା, ମହାରାଜ ! ଏଥିରେ ଅଶ୍ଳୀଳତାର ତ କୌଣସି ବିନ୍ଦୁ ବିସର୍ଗ ନାହିଁ । ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ସର୍ବାନ୍ତର୍ଯାମୀ ପରାତ୍ପର ପ୍ରଭୁ, ତେଣୁ ତାଙ୍କଠାରେ ତ କୌଣସି କଥା ଗୋପନୀୟ ରହିବାର ନୁହେ । ନିଜେ ନିଜ ଠାରେ କେହି କେବେ ସଙ୍କୋଚ କରେ କି ? ଏହି ଶରୀର ପଞ୍ଚଭୂତରେ ଗଠିତ । ଏଥିରେ ସର୍ବତ୍ର ପଞ୍ଚଭୂତ ହିଁ ବ୍ୟାପ୍ତ । ଆମ୍ଭେମାନେ କହିଥାଉ ଯେ ଆମ୍ଭମାନଙ୍କର ମୁଖକୁ ପୃଥିବୀ, ଜଳ, ବାୟୁ ଓ ଆକାଶ ଦେଖୁଛନ୍ତି, ମାତ୍ର ମଳମୂତ୍ରକୁ ଦେଖୁନାହାନ୍ତି, ଏହା ତ’ଣ

କେବେ ସମ୍ଭବ ହୋଇପାରେ ? ପଞ୍ଚଭୂତ ବିନା ଶରୀରର ସ୍ଥିତି ନାହିଁ । ଭଗବାନ ତ ସମଭାବରେ ସର୍ବତ୍ର ବ୍ୟାପ୍ତ, ତାଙ୍କ ନିକଟରେ ଅଶ୍ଳୀଳତା କ'ଣ ଯେଉଁ ଜଳରେ ନିଜକୁ ମଗ୍ନ କରି ଗୋପକନ୍ୟାମାନେ ଥିଲେ, ସେଠାରେ କ'ଣ ଶ୍ୟାମସୁନ୍ଦର ନ ଥିଲେ ? ପୁନଶ୍ଚ ସେମାନେ ଜଳରୁ ବାହାରି ଆକାଶକୁ ଆସିଲେ, ଏଥିରେ ଅଶ୍ଳୀଳତାର କାରଣ କେଉଁଠି ରହିଲା ?''

ଦ୍ୱିତୀୟ କଥା ହେଲା—ସେମାନେ ସମସ୍ତେ ଯେତେବେଳେ ତାଙ୍କୁ ପତିରୂପେ ପାଇବାକୁ ଚାହୁଁଥିଲେ, ପତିଙ୍କ ନିକଟରେ ତ କୌଣସି କଥା ଗୋପନ ରଖିବାର ନୁହେଁ ।

ତୃତୀୟରେ ଭଗବାନଙ୍କର ସମସ୍ତ ଲୀଳା ତ ଭକ୍ତମାନଙ୍କୁ ସୁଖ ଦେବାପାଇଁ ଉଦ୍ଦିଷ୍ଟ । ଭଗବାନ କୃଷ୍ଣଙ୍କ ଘରେ ଲବଣୀର ତ ଅଭାବ ନ ଥିଲା ? କିନ୍ତୁ ଗୋପାଙ୍ଗନାମାନେ ଚାହୁଁଥିଲେ ଯେ ଶ୍ୟାମସୁନ୍ଦର ଆମ ଘରକୁ ଆସି ଲବଣୀ ଚୋରି କରନ୍ତୁ । ତେଣୁ ସେ ସେମାନଙ୍କୁ ସୁଖ ଦେବାପାଇଁ ଲବଣୀ ଚୋରି କରିବାକୁ ଯାଉଥିଲେ । ଏ ଗୋପକନ୍ୟା-ମାନଙ୍କର ଆନ୍ତରିକ ଇଚ୍ଛା ଥିଲା, ନନ୍ଦନନ୍ଦନ ଆମ୍ଭମାନଙ୍କର ଲଜ୍ଜାର ଆବରଣକୁ ହଟାଇ ଦିଅନ୍ତୁ, ତେଣୁ ଭଗବାନ ସେମାନଙ୍କର ଇଚ୍ଛା ପୂର୍ତ୍ତି କଲେ ।

ଚତୁର୍ଥତଃ ସେ ଲୋକମର୍ଯ୍ୟାଦା ସ୍ଥାପିତ କରିବାର ଥିଲା । ତେଣୁ ଉଲଗ୍ନ ହୋଇ ଗାଧୋଇବା ଉଚିତ ନୁହେଁ ବୋଲି କହିବାକୁ ଯାଇ ଲଳିତଲୀଳା ରଚନା କରିଥିଲେ । ସାଧାରଣ ଭାବରେ ଯଦି କହିଥାଆନ୍ତେ ଯେ ଉଲଗ୍ନ ହୋଇ ଗାଧୋଇବା ଉଚିତ୍ ନୁହେଁ, ତାହାହେଲେ ସେମାନଙ୍କ ଉପରେ ଏତେଟା ପ୍ରଭାବ ପଡ଼ି ନ ଥାନ୍ତା । ପ୍ରତ୍ୟକ୍ଷ କରି ଦେଖାଇ ଦେବାଦ୍ୱାରା ତାହାର ପ୍ରଭାବ ଅଧିକ ପଡ଼ିଥାଏ ।

ପଞ୍ଚମରେ ବ୍ରଜବାଳାମାନଙ୍କୁ ସେମାନଙ୍କର ପ୍ରଗାଢ଼ ପ୍ରେମର ସ୍ୱୀକୃତି ଦେବାର ଥିଲା । ସେମାନଙ୍କ ହୃଦୟରେ ସରସତା ସଞ୍ଚାର କରିବାର ଥିଲା ଓ ଲୌକିକ କାମକୁ ନଷ୍ଟକରି ସେମାନଙ୍କୁ ପ୍ରେମପ୍ରଦାନ କରିବାର ଥିଲା । ସେଥିପାଇଁ ମଧ୍ୟ ସେ ଲୀଳା ରଚନା କରିଥିଲେ । ତାଙ୍କର ସମସ୍ତ ଲୀଳା ହିଁ ଲଳିତ ଲୀଳା । ସେ ଯାହା ବି କରନ୍ତୁ ନା କାହିଁକି, ତାହା ଉତ୍ତମରୂପେ କରନ୍ତି ।

ଯେଉଁ ଲୋକ ଭଗବାନଙ୍କୁ ଈଶ୍ୱର ବୋଲି ନ ମାନନ୍ତି, ତାଙ୍କ ପାଇଁ ଶଙ୍କାର ତ ସ୍ଥାନ ନାହିଁ । ଭଗବାନଙ୍କର ବୟସ ସେତେବେଳେ ମାତ୍ର ଆଠ, ସାଢ଼େ ଆଠବର୍ଷ ହୋଇଥାଏ । ଆଜିକାଲିକାର କଥା ଛାଡ଼ି ଦିଅନ୍ତୁ, ପ୍ରଥମେ ସାତ ଆଠବର୍ଷର ପୁଅ ଝିଅ ଲଙ୍ଗଳା ହୋଇ ବୁଲୁଥିଲେ ଓ ଲଙ୍ଗଳା ହୋଇ ଗାଧୋଉ ଥିଲେ । ଏ ଅବସ୍ଥାରେ ସେମାନଙ୍କ ମନରେ କୌଣସି ଦୂଷିତ ବସ୍ତୁର ଆଦୌ ସ୍ଥାନ ପାଇ ନ ପାରେ । ତେଣୁ ଅଶ୍ଳୀଳତାର ପ୍ରଶ୍ନ ଉଠୁନାହିଁ । ମହାରାଜ ! ସଙ୍କୋଚ ତ ଦ୍ୱୈଧୀ ଭାବରେ ହୁଏ । ହୃଦୟ ଯାହାକୁ ଥରେ ନିଜର ବୋଲି ମାନି ନିଏ, ସେଠାରୁ ସଙ୍କୋଚ ଦୂରେଇ ଯାଏ ।

ଶୌନକ କହିଲେ—"ହେ ସୂତ ! ଆପଣ ଯାହା କହିଲେ, ତାହା ଯଥାର୍ଥ । କିନ୍ତୁ ଲୋକ ଦୃଷ୍ଟିରେ ଏହା ଅତେଟି ସୁନ୍ଦର ନୁହେଁ ।"

ସୂତ କହିଲେ—"ମହାରାଜ ! ଏହା ତ ଲୌକିକଲୀଳା ନୁହେଁ । ଏହା ହେଉଛି ଦିବ୍ୟ, ଚିନ୍ମୟ ତଥା ଅପ୍ରାକୃତ ଲୀଳା । ଏହା ହେଉଛି ପ୍ରେମର ପରାକାଷ୍ଠା । ଜୀବ ଯେପରି ପ୍ରେମପାଇଁ ପାଗଳ ହୁଏ, ପ୍ରେମ ଅନ୍ୱେଷଣରେ ବ୍ୟାକୁଳ ହୁଏ, ଭଗବାନ ମଧ୍ୟ ସେହିପରି ପ୍ରେମପାଇଁ ବ୍ୟାକୁଳ ହୁଅନ୍ତି । ଜୀବ ତାଙ୍କ ଆଡ଼କୁ ଏକପାଦ ଆଗେଇଲେ ସେ ୯୯ ପାଦ ଜୀବଆଡ଼କୁ ଆଗେଇ ଆସି ତାକୁ ନିଜ ଗ୍ରୀବାରେ ଜାବୁଡ଼ି ଧରନ୍ତି । ଭଗବାନ ଯେଉଁ ବନରେ, ଗୋଷ୍ଠରେ, ଗ୍ରାମରେ ଗୋଗୋଷ୍ଠ ଓ ଗୋପାଙ୍ଗନାଙ୍କ ପଛେ ପଛେ ବୁଲନ୍ତି, ସେ ସେଠାରେ କେବଳ ପ୍ରେମୀଙ୍କ ଅନ୍ୱେଷଣରେ ହିଁ ବୁଲୁ ଥାଆନ୍ତି । ଯେ ତାଙ୍କୁ ପ୍ରେମ କରନ୍ତି, ସେ ଯେତେ ଦୂରରେ ଥିଲେ ବି, ଭଗବାନ ତାଙ୍କୁ ପାଖକୁ ଆଣି ଆପଣାର କରି ନିଅନ୍ତି । ଦର୍ଶନ ଦେଇ କୃତାର୍ଥ କରନ୍ତି । ଦେଖନ୍ତୁ, ମଥୁରାର ବ୍ରାହ୍ମଣମାନଙ୍କର ପତ୍ନୀମାନଙ୍କ ମନୋରଥ ସେ କିପରି ପୂର୍ଣ୍ଣ କଲେ ।"

ଶୌନକ ପଚାରିଲେ—"ସୂତଜୀ ! ମଥୁରାର ବିପ୍ରପତ୍ନୀଗଣଙ୍କର ମନୋରଥ କ'ଣ ଥିଲା ଓ ଭଗବାନ ତାହା କିପରି ପୂର୍ଣ୍ଣ କଲେ, କୃପାକରି ସେ କଥା ଆମ୍ଭମାନଙ୍କୁ ଶୁଣାନ୍ତୁ । ଭଗବାନଙ୍କର ପ୍ରେମ ସମ୍ବନ୍ଧୀୟ କଥା ଶ୍ରବଣ କରିବାରେ ଅତ୍ୟନ୍ତ ଆନନ୍ଦ ଲାଭହୁଏ ।"

ସୂତ କହିଲେ—"ଆଚ୍ଛା, ଠିକ୍ ଅଛି ମହାରାଜ ! ଭଗବାନ ଯେପରି ଭାବରେ ମଥୁରାର ବିପ୍ରପତ୍ନୀଗଣଙ୍କ ଉପରେ କୃପାବାରି ବର୍ଷଣ କରିଥିଲେ; ସେହି ପ୍ରେମ ପ୍ରସଙ୍ଗ ମୁଁ ଆପଣମାନଙ୍କୁ ଶୁଣାଉଛି, ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ସୁନତ ଶ୍ୟାମ କର ବଚନ ଭୟୋ ସୁଖ ଦୁଃଖ ସଁଗ ମନମହିଁ ।
ହରି ଆୟସୁ ସିର ଧାରି ଚଲୀଂ ସବ ହଂବଶ ବ୍ରଜମହି ॥
ଆଇ ନୟମ ବ୍ରତ ଭୂଲି ପ୍ରତୀକ୍ଷା କରହିଁ ସଦାହୀଂ ।
କବ ମନମୋହନ ମୋଦ ଭରେଂ ସବକେ ମନମାହୀଂ ॥
ଇତ ବ୍ରଜବାସି ବ୍ରଜ ଗଇଁ, ଶ୍ୟାମ ସଖନି ସଁଗ ବନ ଗୟେ ।
ନିରଖି ସଫଲ ପୁଷ୍ପିତ ଦ୍ରୁମନି, ତିନହୁଁ ସଂତ ସମୁଝତ ଭୟେ ॥



ମୁଦ୍ରଣ :—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର କଟକ-୨